# ମୁଁ ଯେତେବେଳେ ମିଲିଟାରିରେ ଥିଲି ....

ମାୟାଧର ସିଂହ



# ମୁଁ ଯେତେବେଳେ ମିଲିଟାରୀରେ ଥିଲି

ଶ୍ରୀ ମାୟାଧର ସିଂହ

ପ୍ରକାଶକ :

ପୂର୍ଣ୍ଣିମା ପ୍ରକାଶନୀ
ଗୋଲବଜାର, ସମ୍ବଲପୁର

ପରିବେଶକ :

ସାରସ୍ୱତ ପୁସ୍ତକ ଭଣ୍ଡାର
ଗୋଲବଜାର, ସମ୍ବଲପୁର ।

ପ୍ରଚ୍ଛଦ ଶିଳ୍ପୀ :

ଭୋଲନାଥ ନାୟକ
ସମ୍ବଲପୁର ।

ମୁଦ୍ରଣ :

କଳିଙ୍ଗ ମୁଦ୍ରଣୀ
୫ଏ, ନୁରମହମ୍ମଦ୍ ଲେନ୍
କଲକତା-୯

ଆତ୍ମପ୍ରକାଶ :

ମେ—୧୯୭୫

ମୂଲ୍ୟ :

Rs 7 2· 00

ଶ୍ରୀଯୁକ୍ତ ସିଂହଙ୍କ "ମୁଁ ଯେତେବେଳେ ମିଲିଟାରୀରେ ଥିଲି" ଧାରାବାହିକ ଭାବରେ ପ୍ରକାଶ ପାଇଥିଲା ଝଙ୍କାରରେ। ଝଙ୍କାରରେ ମୁଁ ପ୍ରତ୍ୟେକଟି ସଂଖ୍ୟା ନପାଇ ଯେତେବେଳେ ପାଇଛି ବିକ୍ଷିପ୍ତ ଭାବରେ ଲେଖାଟିକୁ ପଢ଼ିଛି। ସେତେବେଳଠାରୁହିଁ ମୁଁ ଲେଖାଟି ପଢ଼ି ଏତେ ମୁଗ୍ଧ ହୋଇଥିଲି ଯେ ତାକୁ ପୁସ୍ତକ ଆକାରରେ ପ୍ରକାଶ କରିବା ପାଇଁ ଯେତେବେଳେ ସିଂହଜୀଙ୍କୁ ଦେଖିଛି ଅନୁରୋଧ କରିଛି। ତେଣୁ ମୋ ଭଳି ଯେଉଁମାନେ ପୁସ୍ତକାକାରରେ ଏହାକୁ ପାଇବାର ବାସନା ଏଯାଏ ପୋଷଣ କରି ରଖିଛନ୍ତି ସେମାନେ ବହିଟିର ପ୍ରକାଶନରେ ନିଶ୍ଚୟ ଆଶ୍ୱସ୍ତ ହେବେ। ବହିଟିର ପ୍ରକାଶ ପାଇଁ ସାରସ୍ୱତ ପୁସ୍ତକ ଭଣ୍ଡାରର ସତ୍ତ୍ୱାଧିକାରୀ ମୋର ବ୍ୟକ୍ତିଗତ ବନ୍ଧୁ ନିର୍ମଳଚନ୍ଦ୍ର ପାତ୍ରୀ ନିଶ୍ଚୟ ଧନ୍ୟବାଦାର୍ହ। ମୁଁ ଅଭିମତ ଲେଖୁନାହିଁ ବା ସିଂହଜୀଙ୍କ ଲେଖା ଉପରେ ଅଭିମତ ଦେବାର ଧୃଷ୍ଟତା ମୋର ନାହିଁ ତଥାପି ଯଦି କିଛି ନକୁହେ ତେବେ କୃତଘ୍ନତା ହେବ।

"ମୁଁ ଯେତେବେଳେ ମିଲିଟାରୀରେ ଥିଲି" ପାଣ୍ଡୁଲିପିଟି ଆମୂଳଚୂଳ ପଢ଼ିଲି ପ୍ରାୟ ଏକା ନିଶ୍ୱାସରେ ନୋଟାଏ ଗଭରେ କହିଲେ ଚଳେ। ସେଦିନ ଆବେଗ ଆଉ ଉତ୍କଣ୍ଠାରେ ଭଲ ଭାବରେ ଖାଇ ପାରିନି,... ଆଖିର ପଲକବି ପଡ଼ିନି। ମୁଁ ସ୍ପଷ୍ଟଭାବରେ କହୁଛି ଡିଟେକ୍ଟିଭ ଗଳ୍ପ ପଢ଼ିବାର ନିଶା ମୋର ନାହିଁ ତେବେ ମୁଁ ଯୋର ଦେଇ କହିବି ସିଂହଜୀଙ୍କ ମିଲିଟାରୀ ଜୀବନର ରୋମାଞ୍ଚକର କଥା ଯେ କୌଣସି ପ୍ରଥମଶ୍ରେଣୀ ଡିଟେକ୍ଟିଭ ଗଳ୍ପର ଆନନ୍ଦ ଆଉ ବିସ୍ମୟ ପରିବେଷଣ କରିବାରେ ସମର୍ଥ।

ସିଂହଜୀଙ୍କର ସବୁଠୁ ବଡ଼ ସଫଳତା ହେଲା ତାଙ୍କର ପ୍ରକାଶଭଙ୍ଗୀ । ଆମ ସାଧାରଣ ଜୀବନର ଘଷା ହିଁ ସେ କାଗଜ ଉପରେ ଥୋଇ ଦେଇଛନ୍ତି ଅବିକଳ । ସେଥିରେ ଗୂଢ଼ତ୍ୱ ନାହିଁ, ନାହିଁ ଛଳନା । ଶବ୍ଦାଡ଼ମ୍ବର ବା ଅଳଙ୍କାରର ପ୍ରାଚୁର୍ଯ୍ୟ ଲେଖାଟିରେ ଆଦୌ ନାହିଁ ଅଛି ଏକ ସରଳ ଆଉ ସରସ ମନର ନିରାଡ଼ମ୍ବର ପ୍ରକାଶ । ଅବଶ୍ୟ ଏହା ସିଂହଜୀଙ୍କ ସ୍ୱକୀୟ, ନିଜସ୍ୱ ବାହାବୁଝା ।

ଆମ ସାହିତ୍ୟରେ ଏହି ବିଭାବଟି ଶୂନ୍ୟ କହିଲେ ଚଳେ । ତେଣୁ ସିଂହଜୀଙ୍କର ଏହି ପ୍ରଚେଷ୍ଟା ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ସମ୍ପୂର୍ଣ୍ଣ ନୂତନ । ମୁଁ ଯେତେବେଳେ ମିଲିଟାରୀରେ ଥିଲି ଉପନ୍ୟାସ ନହେଇବି ଉପନ୍ୟାସ ଭଳି ସୁଖପାଠ୍ୟ । ଦ୍ୱିତୀୟ ମହାଯୁଦ୍ଧର ଘନଘଟା ଭିତରେ ନୈତିକ ଅଧପତନ, I. N. A.ର ଅଭ୍ୟୁଦୟ, ସୁବାସ ବୋଷଙ୍କ ସ୍ୱପ୍ନ ଓ ନେତୃତ୍ୱ ପୁଣି ଅର୍ଥନୈତିକ ପରିସ୍ଥିତି ବିଶ୍ଳେଷଣ ସିଂହଜୀ ବିଚକ୍ଷଣତାର ସହିତ କରି ପାରିଛନ୍ତି ।

ଏହି ବହିଟି ଯେ ପାଠକମାନଙ୍କ ଅକୁଣ୍ଠ ପ୍ରଶଂସା ଲାଭ କରିବ ଏଥିରେ ଦ୍ୱିରୁକ୍ତି ନାହିଁ ।

ଜୟହିନ୍ଦ୍

ସମ୍ବଲପୁର
ତା ୮ । ୨ । ୭୪

ଉମାଶଙ୍କର ଷଣ୍ଢ ସମ୍ବଲପୁରୀ

"ହ୍ୟାଲୋ ମିଷ୍ଟର ସିଂହ—Have you heard that the I. N. A. boys have entered into Sylhet" କହୁ କହୁ କ୍ୟାପ୍ଟେନ୍ ଥମାସ୍ ମୋ ପାଖ ଟୁଲ୍ ଖଣ୍ଡକରେ ବସିଲେ—"ଆସ୍ତେ ! ପାଖ Tentରେ କ୍ୟାପ୍ଟେନ୍ ସିଅର ଅଛି, ଶୁଣିବ ।" "ଶୁଣୁ ହୋ କ'ଣ କରି ପକାଇବ ! ପ୍ରକୃତରେ ମିଷ୍ଟର ସିଂହ, ଯେଉଁଦିନ ଆମେସବୁ I. N. A. ସଙ୍ଗରେ ମିଶି ଏ ଗୋରାଙ୍କ ବିରୁଦ୍ଧରେ ଠିଆହେବା ସେଦିନ ଯେ ମୁଁ କେଡ଼େ ଗର୍ବରେ ଚାଲିବି ସେ ବିଷୟ ଭାବିଲେ ଯେଉଁ ଆନନ୍ଦ ଆସୁଛି ତା ମୁଁ ନିଜେ ବର୍ଣ୍ଣନା କରି ପାରୁନି ।" କଥା ଗୁଡ଼ାକ ଯେପରି ମୋର ଏ କାନରେ ପଶି ସେ କାନରେ ବାହାରି ଯାଉଥିଲା । ମୁଁ ଜୋରରେ Wild Woodbine ସିଗାରେଟ୍ଟାକୁ ଦୁଇଦମ ଟାଣିଦେଲି ।

"ଆଚ୍ଛା, ସିଂହ ନେତାଜୀ ପରା ତୁମ ଓଡ଼ିଶାର କଟକରେ ଜନ୍ମ ହୋଇଥିଲେ । ତୁମେତ ତାଙ୍କ ଘର ଦେଖିଥିବ ?"

"ନିଶ୍ଚୟ ।"

ଏତିକିରେ ହଠାତ୍ ମେନନ୍ ଆସି କହିଲେ, "ଆଜି କୋହିମା ସୀମାନ୍ତରେ ବ୍ରିଟିଶ ଗୋଟିଏ ଜାପାନୀ ଲଢୁଆ ଜାହାଜକୁ ତଳକୁ ଖସାଇ ଦେଇଛି—ବିମାନ ଚଳାଉଥିଲେ ଜଣେ ଜାପାନୀ ମହିଳା—ମୁଁ ଏଫ୍. ଏସ୍. ଡି. (Field supply Depot)କୁ ଯାଇଥିଲି, ଦେଖିଚି" । ସେଦିନ ମୁଁ ପ୍ରଥମେ ଶୁଣିଲି ଜଣେ ଜାପାନୀ ମହିଳା ଲଢୁଆ ବିମାନ ଧରି ଯୁଦ୍ଧ କରୁଚନ୍ତି, ବେଶ୍ କିଛିଟା ବିସ୍ମିତ ହୋଇଥିଲି । ପ୍ରତିଦିନ ଦେଖୁଥିଲି ଜାପାନୀ ବନ୍ଦୀମାନଙ୍କର ଧୈର୍ଯ୍ୟ ଏବଂ ତୁଳନା କରୁଥିଲି ଆମଦେଶ ଲୋକମାନଙ୍କ ସଙ୍ଗେ, ପ୍ରତିଦିନ ତାଙ୍କର କାର୍ଯ୍ୟ କଳାପ ଦେଖି ବୁଝିଥିଲି

ଯେ ଯଦି ଆମେରିକାନମାନେ ଆଟମ୍ ବମ୍ ପକେଇ ନ ଥାନ୍ତେ ଏବଂ କେତୋଟି ଘଟଣାର ସ୍ୱାକ୍ଷର ଇତିହାସରେ ଯଦି ଇଷତ୍ ବଙ୍କିମ ରେଖାରେ ଅଙ୍କିତ ହୋଇଥାନ୍ତା, ତେବେ ମହାଯୁଦ୍ଧର ସମାପ୍ତି ଭିନ୍ନଧରଣର ହୋଇଥାନ୍ତା ।

କ୍ୟାପ୍‌ଟେନ ଥମାସ୍ କହିଲେ "ମେନନ୍, ସେ Return ଗୁଡ଼ାକ ଆଜ ଡାକରେ ସବୁ ଯାଇଛି ? ଯଦି ଯାଇ ନଥାଏ, କାଲି Wireless କରିଦିଅ ।" ତାପରେ ସେ କହିଲେ "ମୁଁ ବେଶି ଭାବୁଛି ସେହି ଜାପାନୀ ମହିଳାଟି କଥା—ସେ କିଛି କହୁନି । ଯାହା ପଚାରିଲେ ଖାଲି ଚୁପ୍ ହୋଇ ବସିଛି—ବୋଧହୁଏ ଶୀଘ୍ର ତାକୁ Concentration କ୍ୟାମ୍ପକୁ ନେଇଯିବେ" ।

କହିଲି "ନିଅନ୍ତୁ, ମାଡ଼ଖାଇ ମଃ ଯିବ ପଛକେ, ସେ କିନ୍ତୁ କହିବନି ।" ଦେଖୁନ, ଆମ ପାଖରେ ଯେଉଁ ବନ୍ଦୀମାନ ଅଛନ୍ତି— ଖେଳରେ କିଛି ଶୁଣୁଛ ତାଙ୍କଠୁଁ ?"

ପ୍ରକୃତରେ କେଡ଼େ ସାହସୀ ଏ ଜାତି ଏବଂ କି ଦେଶ ପ୍ରେମ ତାଙ୍କର । ଏ କଥା ଭାବିଲି ବେଳକୁ ବିଶ୍ବାସ କରି ହେଉନି, କହିଲେ କ୍ୟାପ୍‌ଟେନ୍ ଥମାସ୍ ।

"ଦେଖିଲ ଏ ଫଟୋଖଣ୍ଡି," ବୋଲି ଦେଖେଇଲି ମୁଁ ବାହାର କରି ଖଣ୍ଡିଏ ଫଟୋ । ସେ ଖଣ୍ଡ ମିଳିଥାଏ ମୋତେ ଗୋଟିଏ ଜାପାନୀ ଲେଫ୍‌ଟନାଣ୍ଟ ପାଖରୁ—ଆଇ. ଏନ୍. ଏ. ର ଜଣେ ସିପାହୀ ଖାଲି ହାତରେ ଠିଆ ହୋଇଥାଏ ଗୋଟିଏ ଫାଟକ ପାଖରେ—ମୋର ଜାପାନୀ ବନ୍ଧୁଟି ଦେଇଥିଲି ସେ ଦିନ ମୋତେ ସେ ଖଣ୍ଡିକ ଉପହାର, ଦୁଇଟି ସିଗାରେଟ ପାକେଟ ବଦଳରେ—କିପରି ସେ ଲୁଚାଇ ରଖିଥିଲି ତା ପାଖରେ, ତା ସେ ଜାଣେ ।" ବନ୍ଦୀ ହେବାମାତ୍ରେ ସମସ୍ତଙ୍କଠାରୁ ସବୁ ଜିନିଷ ତଲସି କରି କାଢ଼ି ନିଆ ହୋଇଥାଏ । ବିଶେଷତଃ ଫଟୋଗ୍ରାଫ୍, କ୍ୟାମେରା, ଫାଉଣ୍ଟେନ ଆର୍ମସ୍ ଇତ୍ୟାଦି :

ଜାପାନୀ ବନ୍ଧୁଟି କହିଲି "ଏଇଟି ରଖିଥାନ୍ତୁ—ଆଣ୍ଡାମାନ ଦ୍ୱୀପର ଆଇ. ଏନ୍. ଏ. ର ପ୍ରଥମ ସିପାହୀ—ନେତାଜୀଙ୍କ ଆଜାଦ ସରକାରର ଭାରତୀୟ ସିପାହୀ ।"

ମୋର ମୁଣ୍ଡ ନଇଁଗଲା ସଙ୍ଗେ ସଙ୍ଗେ ନେତାଜୀଙ୍କ ଉଦ୍ଦେଶ୍ୟରେ—ଭାବିଥିଲି ବ୍ରିଟିଶର ଗୋଲାମ ହୋଇ ଯୁଦ୍ଧ ଭୂଇଁକୁ ଆସିଛି, ଫେରିବି ଆଜାଦ ହିନ୍ଦ୍ ଫୌଜ ସଙ୍ଗେ ସ୍ୱାଧୀନ ଭାରତ ମାଟିକୁ—ସେ ଭାବନା ଭାବନାରେହିଁ ରହିଗଲା ସବୁଦିନ ପାଇଁ ।

ଫଟୋ ଖଣ୍ଡ କ୍ୟାପ୍‌ଟେନ୍ ଥମାସ୍ ଓ ମେନନ୍ ଦେଖି ସାରିବା ପରେ ମୋତେ ଥମାସ୍ କହିଲେ, ମିଷ୍ଟର ସିଂ ମୋତେ ଏ ଫଟୋ ଖଣ୍ଡି ଦିଅନ୍ତୁ ମୁଁ ୫୧୦୦ ଟଙ୍କା ଦେବି ।

କହିଲି—"ସୋଭେନର" ଅର୍ଥ ଜାଣନ୍ତି ତ ? ଟଙ୍କା ଆପଣଙ୍କର ରଖିଥାଆନ୍ତୁ—ଯଦି ଆପଣଙ୍କର ପାଖେ ଅଛି ଆଉ ଖଣ୍ଡେ ଫଟୋ ମୋତେ ଦିଅନ୍ତୁ । ମୁଁ ୫୧୦୦ ଟଙ୍କା ଦେବି ।

ଥମାସ୍ କହିଲେ, ମୁଁ ବଡ଼ ଆଶ୍ଚର୍ଯ୍ୟ ହେଉଛି, ଆପଣ କିପରି ସେମାନଙ୍କ ସଙ୍ଗେ ଏତେ ନିବିଡ଼ ହୋଇ ପାରୁଛନ୍ତି ।

ତମ୍ବୁ ତଳେ ଲାଇ ଫୋନ ବାଜିଉଠିଲା—ଶିସିଭର ଉଠାଉଛି, ହଠାତ୍ ସାଇରେନ୍‌ର ଆର୍ତ୍ତନାଦ । କ୍ୟାପ୍‌ଟେନ ଥମାସ୍ ଓ ମେନନ୍ ଦଉଡ଼ି ଚାଲିଗଲେ ସେମାନଙ୍କର ଟେଣ୍ଟକୁ । ମୁଁ ହେଲ୍‌ମେଟ୍ ଓ ଷ୍ଟେନ୍‌ଗନ୍ ଧରି ପଶିଗଲି "ମୁରୁଗ୍" ଭିତରେ । ଥମାସ୍‌ର ଟେଣ୍ଟ ଆମ ଅଫିସ ପାଖରୁ ଅଧା ଫର୍ଲଙ୍ଗ ହେବ । ପ୍ରାୟ ୧୦ ମିନିଟ ଚାଲିଗଲା—ହଠାତ୍ ଦିଗ୍-ଦିଗ ପ୍ରକମ୍ପିତ କରି ଏକ କର୍ଣ୍ଣଭେଦୀ ଶବ୍ଦ । ମୋର ମୁରୁଗ୍ ଯଦିଓ ତଳେ ଆମେ ସବୁ ଥରିଗଲୁ—ନିଶ୍ଚୟ ବୋମାଟିଏ ଖୁବ୍ ପାଖରେ ପଡ଼ିଛି । ବୋଧହୁଏ ଆହୁରି ପଡ଼ିବ ଏବଂ ଯଦି ମୋ ମୁରୁଗ୍ ଉପରେ ପଡ଼ିବ, ଏ ଅପନ୍ତରିଆ ଜାଗାରେ ମୋର ବି ଜୀବନ ଦୀପ ଲିଭିଯିବ । କିନ୍ତୁ ଆଉ ଶବ୍ଦ ଶୁଭୁନି—ପ୍ରାୟ ଅଧଘଣ୍ଟା ଉତ୍ତାରୁ ଅଲ୍ କ୍ଲିଅର ବାଜି ଉଠିଲା—ଝାଡ଼ିଝୁଡ଼ି ହୋଇ ମୁରୁଗ୍ ଭିତରୁ ଉପରକୁ ଉଠି ଆସିଲି ଏବଂ ଚାଲିଲି କ୍ୟାପ୍‌ଟେନ୍ ଥମାସ୍‌ଙ୍କ ଟେଣ୍ଟଆଡ଼େ । ଆସି ଯାହା ଦେଖିଲି, ଆଜି ବି ତାହା ମନେକଲେ, ଦେହ ଶିହରି ଉଠୁଛି । କ୍ୟାପଟେନ୍ ଥମାସ୍ ଓ ତାଙ୍କ କ୍ଲର୍କ ମିଷ୍ଟର ମେନନ୍ ଦୁଇଜଣ ତମ୍ବୁ ସହିତେ ଧ୍ୱଂସ ହୋଇ ଯାଇଛନ୍ତି । ଦୁଇ ମାସର ନିବିଡ଼ ବନ୍ଧୁତା ମୋ ସହିତ କେତେ ମିନିଟ ତଳର ଗୋଟିଏ ମୁହୂର୍ତ୍ତ ସବୁ ଶେଷ କରି ଦେଇଛି ।

ଅଧଘଣ୍ଟାକ ପୂର୍ବର କଥା ମୋର ଆଖି ଆଗରେ ସବୁ ଭାସିଗଲା । ମୁଁ କାନ୍ଦ କାନ୍ଦ ଫେରି ଆସିଲି ମୋର ଟେଣ୍ଟ ପାଖକୁ—ତାପରେ କ'ଣ ହେଲା ମୁଁ ଜାଣିନି—ସକାଳ ହେଲା । ଡେଲି ଅର୍ଡର ପାର୍ଟ ଏକରେ ବାହାରିଲା—"କାଲି ରାତିରେ ଘଣ୍ଟାଏ ଧରି ବୋମା ବର୍ଷଣ ହୋଇଥିଲା ୨୫ଟି ଜାପାନୀ ଉଡ଼ାଜାହାଜରୁ । ତାକୁ ମାରି ତଳକୁ ଖସାଇ ଦିଆ ଯାଇଛି । ଗୃହଳମାନେ ମରିଯାଇଛନ୍ତି । ଆମପକ୍ଷର କିଛିମାତ୍ର କ୍ଷତି ହୋଇନାହିଁ । ମୋଡ଼ ମାଡ଼ କାଗଜ ଖଣ୍ଡ ଫିଙ୍ଗିଦେଲି ଏବଂ ଗୃ' ଖାଇ ବାହାରି ପଡ଼ିଲି ମୋର ଅଫିସକୁ ।

୧୯୪୩ ମସିହା ଫେବୃୟାରୀ ତା ୨୫ରିଖ—ରଜାଘର ଧମକଉ ଥା'ନ୍ତି, ତୁମର ଏଠୁ ଉଠି ଗୃଲି ନ ଗଲେ ହାତୀ ନେଇ ଘର ଭାଙ୍ଗି ଦେବୁ । ଖଣ୍ଡେ ଗୃକିରୀର ଯୋଗାଡ଼ରେ ଥାଏ, ଗୃକିରୀ ଯୋଗାଡ଼ ହେଲା । ରଜାଙ୍କ କାନକୁହାବାଲା ଫୁସଲା ଫୁସଲା କରି ମୋ'ଠୁ ଦରଖାସ୍ତ ଲେଖେଇ ନେଲେ । ଗୃରିଦିନ ପରେ ଜଏନ୍ କରିବାର ପରୁଆନା ପାଇଲି ।

"ତୁମକୁ ସେକେଣ୍ଡ ଅଫିସରଙ୍କ ମୋହରିର ରୂପେ ବର୍ତ୍ତମାନ ପାଇଁ ୫୨୦୯ଙ୍କା ଦରମାରେ ମୁକରୟନ କରାଗଲା ।"

ମୁକରୟନ ହେଲି । ମୋର ଉପରିସ୍ଥ କର୍ମଗୃରୀଙ୍କୁ ଇଂରାଜୀ "A" ଅକ୍ଷର ବରୁଣେଇ ପାହାଡ଼ ।

ମୋତେ ସେ କହିଲେ "ତୁମେ ରୋଜନାମୁଚା ଲେଖି ଶିଖ ।"

"ଆଜ୍ଞା ହଁ" କହି ଲେଖିଲି । ଲେଖୁ ଲେଖୁ ଇଂରାଜୀରେ ୪-୫ଟା ନାମ ଲେଖିଦେଲି—ବଡ଼ବାବୁ ପଢ଼ି ନ ପାରି ମୋ ଉପରେ ରାଗି ଝାଡ଼ିଲେ । କହିଲେ "କାହିଁକି ଇଂରାଜୀରେ ଲେଖିଲ ?" କହିଲି, "ଇଂରେଜୀ ରାଜଭାଷା ।" ଦେଖି ରାଗ ତା ପରେ—ସମ୍ଭାଳି ପାରିଲି ନାହିଁ, ତହିଁ ଆରଦିନ ଖବର କାଗଜରେ ବାହାରିଥାଏ "ଯୁଦ୍ଧ ପାଇଁ ଲୋକ ଦରକାର ।" ଖୋର୍ଦ୍ଧା ଉଡ୍‌ସ ଓ୍ୟାର୍ଥଙ୍କ ଡାକବଙ୍ଗଳାରେ ଦେଖା କର । ଖଣ୍ଡିଏ ଦରଖାସ୍ତ ଲେଖି ପକାଇ ଦେଲି । ତାପରେ ଘରକୁ ଆସି କହିଲି, "ମୋତେ ଲକ୍ଷ୍ନୌ ଯିବାକୁ ହେବ । ଗୋଟିଏ ଗାର୍ଡ ଗୃକିରୀ ପାଇଁ ଚିଠି ଆସିଛି । ଗାର୍ଡ

ଗୃହକଣ୍ଠ ପାଇଁ ଯାଇ ଖୋର୍ଦ୍ଧା ରୋଡ଼ରେ ଓହ୍ଲାଇ ଉତ୍ପ ଓ୍ୱାର୍ଡ ସାହେବଙ୍କ ବଙ୍ଗଳାରେ ପହଞ୍ଚିବା ସଙ୍ଗେ ସଙ୍ଗେ ଓଜନ, ମାପ ଇତ୍ୟାଦି ହୋଇଗଲା—ତା'ପରେ ଜଣେ ବଙ୍ଗାଳୀ ବାବୁ ଆସି ଗାଡ଼ି ପାସେଞ୍ଜରରେ ବସାଇ ଦେଇଗଲେ । ହାତରେ ୫୧୦୯ଙ୍କା ଧରାଇଦେଲେ—ଖଣ୍ଡେ କାଗଜରେ ଲେଖାଥିଲା ନଂ ୩ ମେ ରୋଡ଼ ହେଷ୍ଟିଂସ୍ (3 **May Road Hastings**) କଲିକତା ଯାଇ ଅଫିସର କମାଣ୍ଡିଙ୍ଗଙ୍କୁ ଦେଖା କରିବାକୁ ।

ହାଓଡ଼ା ଷ୍ଟେସନରେ ଓହ୍ଲାଇ ମୋର ଜଣେ ବନ୍ଧୁଙ୍କ ବସା ଭବାନୀପୁରକୁ ଗଲି—ଏହା ମୋର ଦ୍ୱିତୀୟବାର କଲିକତା ଦେଖା । ବନ୍ଧୁଙ୍କ ବସାରେ ସେଦିନ ରହି ତହିଁ ଆରଦିନ ମେ ରୋଡ଼କୁ ଯାଇ ଅଫିସର କମାଣ୍ଡିଙ୍ଗଙ୍କ ସଙ୍ଗେ ଦେଖା କରିବାରୁ ସେ କହିଲେ, "ବସ, ଆଜି ଦୁଇଟାବେଳେ ପରୀକ୍ଷା ହେବ ।''

ସେ ଦିନ ଆମେ ଥିଲୁ ୨୫୦ ଜଣ ରିକ୍ରୁଟ୍ । ଜଣକ ପରେ ଜଣକୁ ସାକ୍ଷାତ ପାଇଁ ଡକା ହେଉଥାଏ । ମୋର ପାଳି ପଡ଼ିଲା ୭୬ଜଣଙ୍କ ପରେ, ପ୍ରାୟ ୫ଟା ସମୟକୁ । ୩ଜଣ ଅଫିସର ବସି ପ୍ରଶ୍ନ ପଚାରୁଥା'ନ୍ତି···ଆଗରୁ ଯେତେ ଭଦ୍ରଲୋକଙ୍କୁ ପ୍ରଶ୍ନ ପଚରା ଯାଉଥାଏ, ତାଙ୍କୁ କେବଳ ଏକ ପ୍ରଶ୍ନ ; କାହିଁକି ସୈନ୍ୟ ବାହିନୀରେ ଯୋଗଦାନ କରିଚ ? ସମସ୍ତେ ପ୍ରାୟ ଗୋଟିଏ ଫର୍ମୁଲାରେ ଉତ୍ତର ଦେଉଥା'ନ୍ତି "For the King, Country ଇତ୍ୟାଦି"—ମୋତେ ବି ସେଇ ପ୍ରଶ୍ନ ।

ମୁଁ ଉତ୍ତର ଦେଲି "ସତ କହିବି, ନା ଅନ୍ୟମାନଙ୍କର ପୁନରାବୃତ୍ତି କରିବି ?'' ଏ ଉତ୍ତରରେ ୩ଜଣ ଯାକ ମୋ ମୁହଁକୁ ଅନାଇ ରହିଲେ—ତା ଭିତରୁ ଯେ ବଡ଼ ଅଫିସର ସେ କହିଲେ "ସତ ହିଁ କୁହ ।''

କହିଲି, "ପ୍ରଥମରେ, ମୁଁ ମୋ ନିଜ ଗୋଡ଼ରେ ଛିଡ଼ା ହେବାକୁ ଚାହେଁ । ଦ୍ୱିତୀୟରେ ବହୁ ଦେଶ ଓ ବୃହତ୍ତର ମଣିଷ ସମାଜର ସମ୍ପର୍କରେ ଆସିବାକୁ ଚାହେଁ । ତୃତୀୟରେ ମୁଁ ନିୟମାନୁବର୍ତ୍ତିତା ଶିକ୍ଷା କରିବାକୁ ଚାହେଁ ଏବଂ ଚତୁର୍ଥରେ ରାଜା ଓ ଦେଶପ୍ରତି ମୋର କର୍ତ୍ତବ୍ୟ ଅଛି ।"

ଏ କଥା ଶୁଣି ସେ ଭାରି ଖୁସି ହେଲେ ଏବଂ ସଙ୍ଗେ ସଙ୍ଗେ କହିଲେ Post him direct."

ସେତେବେଳକୁ ପ୍ରାୟ ରାତି ୭ଟା—ପ୍ରତିଦିନ ଏପରି ଶହ ଶହ ଲୋକଙ୍କର ଇଣ୍ଟରଭିଉ ହେଉ ଥାଏ—ସେଦିନ ଇଣ୍ଟରଭିଉରେ ଖୁବ୍ ଭଲ ହୋଇଥାଏ ବୋଲି ମୁଁ ମୋର ୫-୭ ଜଣ ସାଥିଙ୍କ ସଙ୍ଗେ ଖୁସି ଗପ କରି ଫେରୁଥାଏ—ଅନ୍ୟ ଭଦ୍ରଲୋକ ଗୁଡ଼ିକ ସେଠାରେ ଠିଆ—ସମସ୍ତେ ବଙ୍ଗାଳୀ—ଆସୁ ଆସୁ ବାଟରେ ଜଣେ କହିଲେ, ମିଷ୍ଟର ସିଂହ, ଆପନି ଭାଗ୍ୟବାନ୍। ଆପନାର Direct Posting ହବେ—ଆମାଦେର ଜନ୍ୟ ଟ୍ରେନିଂ ସେଟେ ହବେ। କାଲକେ ଦେଖାଯାକ୍ କୋଥାଏ କେ ଯାଏ। ଆଚ୍ଛା ନମସ୍କାର। ଜଗୁବାବୁ ବଙ୍ଗାଳି ପାଖରୁ ଯେ ଯୁଆଡ଼େ ବିଦାୟ ନେଲୁ।

ତହିଁଆର ଦିନ ସକାଳ ୧୦ଟା ସମୟରେ ବେଡଙ୍ଗ୍ ଖଣ୍ଡ ଧରି ପହଞ୍ଚିଲି ମେ' ଗ୍ରେଡ଼ ଅଫିସରେ—ସେଦିନ ମାର୍ଚ୍ଚ ୮ ତାରିଖ। ପୁରାଭର୍ତ୍ତି ହୋଇଗଲା। କି'ଣ ଚାକିରି ପାଇବି ଜାଣି ନଥାଏ। ପ୍ରାୟ ୧୦ଟା ବେଳକୁ ଖଣ୍ଡିଏ ପରୱାନା ପାଇଲି Selected as a Havildar Clerk—Posted in I field Bakery R. I. A. S. C Bombay। ଜଣେ ସରଦାରଜୀ ପରୱାନା ଖଣ୍ଡ ହାତରେ ଧରାଇ ଦେଲେ ଏବଂ କହିଲେ "ଶୁନୋ ଜବାନୋ, ଆଜ ଏକ୍ ବଜେ ହାୱଡ଼ା ସେ ଗାଡ଼ି ଛୁଟେଗା—ଅଭି ଆପ ଲୋକକୁ ଦଶ ରୁପାୟା ଦିଆ ଯାତା ହୈ। ବାକି ସବ୍ ଖାନାପିନା ଆପକୋ ସରକାର ବାହାଦୁର ଦେଙ୍ଗେ। ତୟାର ହୋ ଯାଇଏ।

ପ୍ରାୟ ଅଧଘଣ୍ଟା ପରେ ଗୋଟିଏ ଟ୍ରକ ଆସି ଠିଆହେଲା। ସେଥିରେ ପ୍ରାୟ ୫୦ ଜଣ ଖଚଣ୍ଡ୍ରେ ଚଢ଼ିଲୁ—ସବୁ ଆସି ହାଓଡ଼ାରେ ଓହ୍ଲାଇଲୁ—ଷ୍ଟେସନରେ ଜଣେ ଗୋରା ଭଦ୍ରଲୋକ ସମସ୍ତଙ୍କ ନାମଧରି ଡାକି ଦେଲେ, ହାତରେ ଟ୧୦ଙ୍କା ଧରାଇ ଦେଲେ ଏବଂ କହିଲେ ସେ ଆମର ଇନ୍ଚାର୍ଜ ଅଫିସର। ଆମକୁ ନେଇ ନିଜ ନିଜ କମ୍ପାନୀରେ ପହଞ୍ଚାଇ ଦେବେ—ଆମ କମ୍ପାନୀମେଣ୍ଟରେ ଜଣେ ମୋଟା ଭଦ୍ରଲୋକ ଥା'ନ୍ତି। ତାଙ୍କ ସାଙ୍ଗରେ ଥଟ୍ଟା ତାମସା ଚାଲିଥାଏ—ସେହି ଗୋରା

ଅଫିସର ଜଣଙ୍କ ଆମ ସଙ୍ଗରେ ବି ଉଠିଲେ । ଗପ ଜମିଲା—ସମସ୍ତେ ନିଜ ନିଜ କଥା, ଗାଁ କଥା ଘର କଥା ପକାଉ ଥାନ୍ତି—ହାଉଡ଼ା ଷ୍ଟେସନ । ଲୋକ ଗହଳି । ହକର ମାନଙ୍କ ଡାକରେ କାନ ଫାଟି ପଡୁଥାଏ—ଗୋଟାଏ ସମସ୍ତ ହେବ—ଟ୍ରେନ ଇଞ୍ଜିନ ଘସ୍ ଘସ୍ ଶବ୍ଦକରି ପ୍ଲାଟ୍‌ଫର୍ମ ଛାଡ଼ିଲା ବମ୍ବେ ଅଭିମୁଖେ—କେତେ ବିଲ, ନଈ, ନାଳ ସବୁଜ କ୍ଷେତ ଦେଇ ଟ୍ରେନ ଚାଲିଥାଏ—ମୋର କିନ୍ତୁ ସିଆଡେ଼ ଦୃଷ୍ଟି ନଥାଏ । ମୁଁ ଭାବୁଥାଏ ମୋ ନିଜ କଥା—ଟ୍ରେନରଗତି ସଙ୍ଗରେ ଯେପରି ମୋର ମନର ଭାବନା ବଢ଼ି ଚାଲିଛି—କ'ଣ ବୋଲି ଘରକୁ ଚିଠି ଦେବି—ଠିକ କରି ଆସିନି । ହଠାତ୍ ଟ୍ରେନ ବନ୍ଦହେଲା ବର୍ଦ୍ଧମାନ ଷ୍ଟେସନରେ । ଚୀନା ଭେଣ୍ଡରର ଡାକରେ ମୋର ଭାବନା ଭାଙ୍ଗି ଗଲା—

ମୁଁ ବାହାରକୁ ଅନାଇଁ ଚା' ବାଲାକୁ ଡାକିଲି କପେ ଚା' ପାଇଁ ।

ଚା' ପିଆ ସକାଳ ବେଳକୁ ଟ୍ରେନ ଛାଡ଼ ଦେଇଥାଏ—ମୋର ଅଫିସର ଜଣକ ମୋ ସଙ୍ଗେ ବସି ଗପ ଜମେଇ ଦେଲେ । ପ୍ରାୟ ଅଧି-କାଂଶ ଷ୍ଟେସନରେ ଚା' ପିଆ ଚାଲିଥାଏ ଏବଂ ମଝିରେ ମଝିରେ ଜଳଖିଆ ଚାଲୁଥାଏ । ସବୁଠି ମୁଁ ପଇସା ଦେଉଥାଏ । କ୍ରମେ ସନ୍ଧ୍ୟାହେଲା—ଠିକ୍ ଆଜି ମନେ ନାହିଁ (ମୋର ଡାଏରୀ ପ୍ରଭୃତି ସବୁ ବର୍ତ୍ତମାନ ପୋଡ଼ି ଯାଇଛି) ସାତଟା ବେଳକୁ ଖାଇବା ସମୟ । ସାହେବ ମୋତେ ଧରି **Refreshment room**କୁ ଗଲେ । ମିଲିଟାରୀ ବାଲଙ୍କ ପାଇଁ **Canteen**ଥିଲେ ସୁଦ୍ଧା ଏବଂ ସେଠାରେ ମାଗଣା ଖାଇବାକୁ ଦିଆ ହେଉଥିଲେ ମଧ୍ୟ ସାହେବ କହିଲେ "ସେଇଟା ଆଚ୍ଛା ଖାନା ନୁହେଁ । ମୁଁ ତ କିଛି ଜାଣେନା ଏବଂ ଜୀବନରେ ପ୍ରଥମ ଥର ଗୋରା ସାହେବଙ୍କ ସଙ୍ଗେ ସଫର କରୁଛି ଏବଂ ସାହେବ ମୋ କାନ୍ଧରେ ହାତ ପକାଇ ଚାଲୁଛି । ମୋର ଭାରି ଗର୍ବ—ଚାଲିଲି **Refreshment room**କୁ । ମନେ ଅଛି ଆଠଟି ମୁଦ୍ରା ମୁଁ ଗଣିଲି—ଖିଆପିଆ ସରିଲା ବେଳକୁ ଟ୍ରେନ ଛାଡ଼ିଲା—

ତହିଁ ଆରଦିନ ଯେତେବେଳକୁ ଜବଲପୁର ଷ୍ଟେସନରେ ଗାଡ଼ି ରହିଲା ଆମ ଭିତରୁ ପ୍ରାୟ ୨୬ ଜଣ ପିଲା ଓହ୍ଲାଇ ଗଲେ, ତାଙ୍କୁ ନେବା ପାଇଁ ଗୋଟିଏ ଟ୍ରକ ଆସିଥିଲା । ସାହେବ କଣ ସେମାନଙ୍କ ସଙ୍ଗେ କଥାବାର୍ତ୍ତା କରି ତାଙ୍କୁ ଛାଡ଼ିଦେଇ ପୁଣି ଟ୍ରେନ ଭିତରକୁ ଆସିଲେ—ସେତେବେଳେ ମୁଁ ମୋର ସମ୍ବଳ ଗଣିଲି । କଲିକତା ଛାଡ଼ିଲା ବେଳକୁ ମୋ ପାଖରେ ମାତ୍ର ୨୩୫୯ଙ୍କା ଥିଲା । ଏବେଣି ମାତ୍ର ୫୧୦ଙ୍କା । ମୋ ମୁଣ୍ଡ ଘୂରିଲା । ବମ୍ବେରେ ପହଞ୍ଚି କିପରି କଣ କରିବ ? ଉକ୍ତ ସାହେବଙ୍କୁ ପଚାରିଲି ଏବଂ କହିଲି ମୋ'ର ଟଙ୍କା ପଇସା କଥା—ସାହେବ ଆଶ୍ୱାସନା ଦେଇ କହିଲେ "ଟଙ୍କା କଣ ହେବ—ବମ୍ବରେ ପହଞ୍ଚିବା ମାତ୍ରେ କମ୍ପାନୀରେ ଖିଆପିଆ ହେବ, ପୋଷାକ ପତ୍ର ତ ସବୁ ମିଳିବ ଆଉ ଯଦି ତୁମେ ଚାହିଁବ ଦରମା ବି ମଧ୍ୟ ଆଡଭାନ୍ସ ମିଳିବ ।"

ମୋର ଟିକିଏ ଦମ୍ ପଡ଼ିଲା—ମନେଅଛି ଟ୍ରେନ ଯେତେବେଳେ "ମାନମାଦ" ପହଞ୍ଚିଲା ସାହେବ ମୋର କମ୍ପାର୍ଟମେଣ୍ଟକୁ ଆସି କହିଲା—"Mr. Singh you are quite clever chap. That I have marked all the way. I am sure you can manage your way at Bombay. You will please xcuse me. I shall have to attend the race."

ମୁଁ ବି ହଁ ମାରି ଦେଲି । ଟ୍ରେନ ଯେତେବେଳେ ଭିକ୍ଟୋରିଆ ଟର୍ମିନାସରେ ପହଞ୍ଚିଲା, ସେତେବେଳକୁ ଠିକ୍ ସନ୍ଧ୍ୟା ୬ଟା—ପ୍ଲାଟଫର୍ମରେ ଓହ୍ଲାଇଲି କ୍ଷଣି କୁଆଡେ ଯିବି କଣ କରିବି ବୁଝି ନପାରି ମୋର ଅଫିସ ଚିଠି ଖୋଲିଲି । ସେଥିରେ R. T. O ଅଫିସକୁ ରିପୋର୍ଟ କରିବାକୁ ଲେଖାଥିଲା—କାରଣ Bombay ରେ ମୋର ସେହ୍ନ ଫିଲ୍ଡ ବେକାଷ୍ଟ ସେକ୍ସନ କେଉଁଠି ଅଛି ତାଙ୍କୁ ଜଣା । କିନ୍ତୁ କି ଦୁର୍ଭାଗ୍ୟ କେଜାଣି—ଅଫିସକୁ ଗଲାବେଳେ, ପରଦା ଆଡେଇ ଦେଲା ବେଳକୁ ଜଣେ ଗୋରା ସର୍ଜେଣ୍ଟ ( ସେତେବେଳେ ଅବଶ୍ୟ ସେର୍ଜେଣ୍ଟ ବୋଲି ଜାଣି ନଥିଲି ଗୋଟିଏ W. A. C ( I ) ଗାଲରେ ଚୁମ୍ବନ ଆଙ୍କୁଥିଲେ । ମୋତେ ହଠାତ୍ ଦେଖି ସେ ଯେପରି ଅପ୍ରସ୍ତୁତ ହୋଇଗଲେ । ତହୁଁ ଡବଲ ମୁଁ ଡରିଗଲି । ମୋର ହାଫପ୍ୟାଣ୍ଟ ଏବଂ ସିଭିଲିଆନ ଡ୍ରେସ ଦେଖି ସେ

ଚମକ ଉଠି ଯାହାକହୁଲେ ସେଥିରେ ମୁ କେବଳ ବୁଝିଲି "Gate out" ଆଜ୍ଞା ପଚୁରିବାକୁ ସାହାସ ହେଲନି ।

ବର୍ତ୍ତମାନ ପିଲ କୁଆଡେ ? ଦେଖିଲା ମାତ୍ର ଆଉ ୫୮୯ଙ୍କା ଅଛି । ଭାବିଲି ଆଜି ରାତିଟା କୌଣସି ହୋଟେଲରେ ରହିଗଲେ ଭାଲ ପୁଣି ସକାଳୁଠୁ ଯାଇବ ପାଖକୁ ପିଲ । ମୁଁ କେବଳ ଇଂରାଜୀ ଜାଣେ । ବଙ୍ଗଳା ଟିକିଏ ଟିକିଏ ବ ଜାଣେ, ହିନ୍ଦୀ ଭଲ କ ଆସେନି । ମହାରାଷ୍ଟ୍ରୀ ଗୁଜରାଟୀ କଥା ଗୁଡ଼ । କେହି ଏଠାରେ ଚିନ୍ତା ନାହିଁ । ବଡ଼ ହତୋତ୍ସାହ ହୋଇ ପଡ଼ିଲି । ସାହେବ ଗସ୍ତାରୁ ଭାଗ୍ Race ଖେଳିବ ବୋଲି । ଏଣେ R.T.O. ଅଫିସରୁ ଚଢ଼ାଖାଇ ମୋ ମନ ଭାରି ଖରାପ । ତେବେ ସାହସ ବାନ୍ଧି ମୋ ବେଡ଼ିଂ ଖଣ୍ଡ କାଖରେ ଯାକି ପ୍ଲାଟଫର୍ମ ବାହାରକୁ ଆସିଲି । କୁଆଡେ ପିଲ ଭାବି ସିଧା ଗୁଲିଲି । ବଡ ଲୋକଙ୍କୁ ତ ପଚୁରିବାକୁ ସାହସ ହେଉ ନ ଥାଏ—ମଲା ମୁଣ୍ଡି ଆଙ୍କୁ ପଚୁରିବାକୁ ତ ହିନ୍ଦୀ ଜାଣେନା ପୁଣି ଡର, କାଳେ କଏ ମୋ ବେଡ଼ିଂ ଖଣ୍ଡ ଓ ଟଙ୍କା ଆଠଟି ଧରି ଚମ୍ପଟ କରିବ । ଏହି ପରି ଭାବୁ ଭାବୁ କେତେବାଟ ଗଲିଣି ମୋର ଖିଆଲ ନାହିଁ । ଡାହାଣ ପାଖେ ଗୋଟିଏ ବଡ ସାଇନବୋର୍ଡରେ ଲେଖାଅଛି "ରାଜରାଣୀ ହୋଟେଲ" । ହୋଟେଲ ପାଖର ସିଡ଼ି ପାଖକୁ ଯାଇ ଦେଖିଲି ଯେ ତଳେ ଦୁଇଜଣ ଲୋକ ଓ ଗୋଟିଏ ପୌଢ଼ା ସ୍ତ୍ରୀ କଲାରଙ୍ଗର ଶାଢ଼ୀ ପିନ୍ଧି ଠିଆ ହୋଇଛନ୍ତି ।

ମୋତେ ଦେଖି କହିଲେ, "ଆଇୟେ ସାହେବ ବହୁତ ଅଚ୍ଛା ହୋଟେଲ । ରୋଜ ତିନ୍ ରୁପେୟା ଲଗେଗା—ଆଇୟେ ମା'ବ ଉପର ।" କହୁ କହୁ ମୋର ବେଡ଼ିଙ୍ଗ ଛଡେଇ ଉପରକୁ ଧରି ଭାଗ୍—ସେ ସ୍ତ୍ରୀ ଲୋକଟି ଆଗରେ ଗୁଲିଲା ମୁଁ ପଛରେ— ଉପରକୁ ଉଠି ଦେଖେ ଗୋଟିଏ ବଖରା ଘର—ଲାଇଟ ଲାଗିଛି । ଗୁରପୋକ ରଙ୍ଗର ଖଣ୍ଡିଏ ପଟା ଖଟ ପଡ଼ିଛି—ଆଉ କିଛି ନାହିଁ ।

ପଚୁରିଲି ଖାଇବା ପିଇବା ଘର କେଉଁଠା ?"

ଅଧା "ଲେଙ୍ଗେ ଖାଙ୍ଗେ" ହିନ୍ଦୀରେ ଓ ଅଧା ଇଂରାଜୀରେ । ସ୍ତ୍ରୀ ଲୋକଟି କହିଲା "ସାମନାମେ ହୋଟେଲ ହୈ ଉହାଁସେ ଖାନା ମଙ୍ଗାଲେଗା । ଅଉର ଆପ ଯୋ ଚାହେଗା ଇହାଁ ମିଲେଗା ।"

ମୁଁ କିଛି ଅର୍ଥ ବୁଝିପାରୁ ନ ଥାଏ । ମୋତେ ଏ ଘଟଣା କେମିତି କେମିତି ଲାଗୁଥାଏ । ହୋଟେଲରେ ଝନ୍ ଝାନ୍ ଶବ୍ଦ କିଛି ନାହିଁ, ଏ ପୁଣି କି ହୋଟେଲ । ପୁଣି ଆଉ ଜଣେ କିଏ କେହି ନାହାନ୍ତି, ଏ ମହାମାୟୀ ପୁଣି କିଏ ? ତାଙ୍କ ସଙ୍ଗରେ ପୁଣି ଏ ମୁଛବାଲା ବଦମାସ ଲୋକ ଦୁଇଟି କିଏ ?

ତଥାପି ସାହସ ହରାଇ ନ ଥାଏ, ଟଙ୍କା ଗୁଡ଼ିକ, ଆଉ ଡର କ'ଣ । ଖାଲି ପାଖରେ ପଇସା ନ ଥାଏ, ସେଇ ଡର ।

ବହୁତ ସାହସ ବାନ୍ଧି କହିଲି, "ହମାରା ଦୋ ଫ୍ରେଣ୍ଡ ହେ"—

ସେଥିରୁ ଜଣେ କହିଲା "ବୋଲାଇଏ ।"

କହିଲି "ଆଚ୍ଛା ହମ୍ ଷ୍ଟେସନ୍‌ସେ ଆତାହୁଁ ।"

"ଆଚ୍ଛା ଯାଇଏ" ବୋଲି କହିଲା ସେ ଲୋକଟି—ମୋ ବେଡ଼ିଙ୍ଗ ଧରିବାକୁ ଗଲାବେଳେ ସେ କହିଲା "ଇସ୍‌କୋ ଛୋଡ଼ ଯାଇଏ, ଅଭି ତୋ ଆପ୍ ଓ୍ୱାପ୍‌ସ ଆୟେଙ୍ଗେ ।"

ମଲି ଏଥର, ଭାବିଲି ମାରିଲାତ ମୋତେ, କଣ କରିବି ବେଶୀତ ହିନ୍ଦୀ କହି ଜାଣେନା, ଇଂରାଜୀରେ କହିଲି, "Believe me I will come just now with two of my friends. This is a very good place. Give me my bedding. I promise I must come."

ସେମାନେ କଣ ଭାବିଲେ କେଜାଣି ସତେ ଯେମିତି ସବୁ ବୁଝି ପକାଇ କହିଲେ "ଯାଇଏ" ।

ଏତକ ଶୁଣିବା ମାତେ ମୋର ବେଡ଼ିଙ୍ଗ ଖଣ୍ଡ ଧରି ଚାଲିକୁ ଓହ୍ଲାଇ ପଡ଼ିଲି । ଠିକଏ ଚାଲିବା ପରେ ଦେ ଦଉଡ଼ ଷ୍ଟେସନକୁ—ଷ୍ଟେସନ ଭିତରେ ପଶି ଯିବ କୁଆଡ଼େ ? ପ୍ଲାଟଫର୍ମରେ ବେଞ୍ଚ ଉପରେ ପ୍ରାୟ ଅଧଘଣ୍ଟା ବସିବା ପରେ ପୁଣି ଚାଲିଲି—ପ୍ଲାଟଫର୍ମ ଉପରେ ଥିବା ଚା' ଦୋକାନରୁ ଦୁଇଟି ସିଙ୍ଗଡ଼ା, ଚାରିପଇସାର ଚଣା ଓ କପେ ଚା' ଖାଇ ଫେରି ଆସିଲି ସେଇ ବେଞ୍ଚପାଖକୁ—ଭାବି ଆଜି ରାତିଟା ଏଇଠି କଟାଇବି । ସକାଳ ହେଲେ ତ R.T.O. ଅଫିସକୁ ଯିବି ଯାଇ ମୋର କମ୍ପାନୀ କଥା ପଚାରିବି । ବେଞ୍ଚରେ ବସିବା ପ୍ରାୟ ଅଧଘଣ୍ଟା ପରେ ଜଣେ

ଖୁବ ମୋଟାସୋଟା ଲୋକ, ରଙ୍ଗ ଖୁବ୍ କଳା, ମୋ ପାଖରେ ଆସି ବସିଲା । ଲୋକଟାକୁ ଦେଖି ମୋର ସନ୍ଦେହ ହେଲା । ଗୁଣ୍ଡା ବୋଲି ଜଣା ପଡୁଥିଲା—ଧୀରେ ଧୀରେ ସେ ମୋ ପାଖକୁ ନିବିଡ଼ ହୋଇ ଆସୁଥିଲା । ପାରିପାର୍ଶ୍ୱିକ ଆବହାଓ୍ୱା ଦେଖି ମୁଁ ଡରୁଥିଲି—ପୁଣି ଏ ଲୋକଟିର ହାବଭାବ । ସଙ୍ଗେ ସଙ୍ଗେ ସିଦ୍ଧାନ୍ତରେ ପହଞ୍ଚିଲି ନିଶ୍ଚେ ଏ ଜଣେ ଗୁଣ୍ଡା ଜାତୀୟ ଜୀବ । ତଥାପି ଏତେ ଆଲୁଅ ଓ ଏତେ ଲୋକ । ସେଥିପାଇଁ ଦମ୍ଭଧରି ବସିରହିଲି । ପ୍ରାୟ ଦଶ ମିନିଟ ବସିଲା ପରେ ଲୋକଟି ଖଣ୍ଡିଏ ବିଡ଼ି ଧରାଇ ମୋତେ ପଚାରିଲା "ଆପ କାହାଁ ଯାଏଙ୍ଗେ ।"

କହିଲି, "ଇହାଁ ଅପ୍ନା ଏକ ଫୌଜିକମ୍ପାନୀକା ସାଥ ।"

ତା'ପରେ ବିଡ଼ିଟା ଦୁଇ ଦମ୍‌ରେ ସାରିଦେଇ ମୋ ପିଠିରେ ଲୋକଟି ନ ଜାଣିଲା ପରି ହାତ ପକାଇଲା, ମୁଁ ଖୁବ ଜୋରରେ ହାତଟା ଛୁଞ୍ଚାଡ଼ି ଦେଇ କହିଲି "**Who are you ?**"

ତା'ପରେ କିଛି ନ କହି ଲୋକଟା ଠିଆହେଲା ଏବଂ ଟିକିଏ ମୋ ମୁହଁକୁ ଅନାଇଁ ଚାଲିଗଲା, ମୋର ଡର ଦୁଇଗୁଣ ବଢ଼ିଗଲା । ପୁଣି ଭାବିଲି ଲାଇଟ ପାଖରୁ ଟିକିଏ ଦୂରରେ ଏ ବେଞ୍ଚରେ ବସିବା ବଦଳେ, ଠିକ୍ ଲାଇଟ୍ ତଳକୁ ଯିବି, ପୁଣି ଭାବିଲି ଫାଷ୍ଟ କିମ୍ବା ସେକେଣ୍ଡ କ୍ଲାସ ଓ୍ୱେଟିଂ ରୁମ୍‌କୁ ଯିବି । ଭାବିଲି ଏବଂ ଉଠିଲି ନିଜ ବିଛଣା ଧରି । **Victoria terminus** ପରି ଜାଗାରେ ଫାଷ୍ଟ କିମ୍ବା ସେକେଣ୍ଡ କ୍ଲାସକୁ ଉଠିଲେ ସମସ୍ତେ ହସିବେ ଏବଂ ମୋ ପାଖରେ ଟିକଟ ନାହିଁ, ମୁଁ ମିଲିଟାରୀ ଓ୍ୱାରଣ୍ଟରେ ଆସିଥିଲି, ସମ୍ବଳ ଦେଖିଲେ ଡର ଲାଗୁଛି । ପାଖରେ ମାତ୍ର ଆଠ ଟଙ୍କା କେତେ ଅଣା । ପୁଣି ଭାବିଲି ବମ୍ବେ ପରି ଜାଗାରେ ଫାଷ୍ଟ କ୍ଲାସ କିମ୍ବା ସେକେଣ୍ଡ କ୍ଲାସକୁ କି ବିଶ୍ୱାସ । ମୁଁ ନିଜକୁ ନିତାନ୍ତ ଅସହାୟ ମନେକଲି । ଅନେକ ଭାବିଚିନ୍ତି ପ୍ଲାଟଫର୍ମ ମଝିରେ ଗୋଟିଏ ଲାଇଟ ତଳକୁ ଆସି, ବେଡିଂ ଖୋଲିଲି, ସେଥିରେ ଥାଏ ଦୁଇଖଣ୍ଡ ହାଫ୍ ପ୍ୟାଣ୍ଟ, ଦୁଇଖଣ୍ଡ ଫୁଲପ୍ୟାଣ୍ଟ, ସାର୍ଟ ତିନିଖଣ୍ଡ, କମ୍ବଳ ଖଣ୍ଡେ, ଦରିଖଣ୍ଡେ, ତକିଆ ଏବଂ ବେଡ଼ସିଟ୍, ଧୋତି ଲୁଙ୍ଗି ଏବଂ ତଉଲିଆ, ଦର୍ପଣ, ପାନିଆ ଏବଂ ସେଭିଙ୍ଗ୍ ସେଟ ଯୋଡ଼ାହେଲେ । ଏ ସବୁକୁ ଏକାଠି କରି ମୁଣ୍ଡ ତଳକୁ ରଖି, ବିଛଣା ଚଦର ଖଣ୍ଡ ଜାକି ମୁହଁ

ଘୋଡ଼ାଇ ହୋଇ ତଳେ ଶୋଇଲି, ଯଦି କିଏ ନେବାକୁ ଚେଷ୍ଟା କରିବ ଅନ୍ତତଃ ଜାଣି ପାରିବି ।

ପ୍ରାୟ ଅଧଘଣ୍ଟାକ ପରେ ଜଣେ ଲୋକ ଆସି ଠିକ୍ ମୋ ଗୋଡ଼ ତଳକୁ ଲାଗି ସେଠାରେ ଶୋଇଲା । ପ୍ରାୟ ରାତି ଗୋଟାଏ ହେବ ଦୁଇଜଣ ରେଲୱେ ସିପାହୀ ଆସିଲେ, ମୁଁ ଶୋଇ ପଡ଼ିଥାଏ ।

ଜଣେ ସିପାହୀ ତା କାଳିଆ ଗୋଲ ଠେଙ୍ଗୁଲିକୁ ମୋ ପିଠିରେ ଠୁଙ୍କାଇ କହିଲା "କୋନ୍ ଶୁଆ ହେ ଉଠୋ ।"

ଉଠିଲି ।

କହିଲା "ପ୍ଲାଟଫର୍ମ ଜା ଅନ୍ଦର ବାଗବଲ୍ଲେଙ୍କା ବାଦ୍ ହୋଇ ରହନେଇ ଶକତା ।"

ବଡ଼ ବିକଳରେ କହିଲି "ମାଫ୍ କରେଙ୍ଗେ I am a foreigner and new man here, in the morning I shall go to my Company. I am a new recruit."

କଣ ଭାବିଲେ କେଜାଣି ସିପାହୀ ଦୁଇଜଣ ଚାଲିଗଲେ, ପୁଣି ଶୋଇଲି । କିଛି ସମୟ ପରେ ମୋ ଗୋଡ଼ତଳେ ଶୋଇଥିବା ଲୋକଟି ଆସ୍ତେ ଆସ୍ତେ ତା ହାତ ଆଣି ମୋ ଗୋଡ଼ ପାଖରେ କମ୍ବଳ ଭିତରେ ଭର୍ତ୍ତି କରୁଥିବାର ଜାଣିଲି, ମୋତେ ତ ସହରଙ୍କ ଉପରେ ନିଦ ହେଉ ନ ଥାଏ, ଯେମିତି କାହାର ହାତ ବାଜିବାର ଜାଣି ପାରି ଚଟ୍‌କିନି ଉଠି ପଡ଼ିଲି ଏବଂ ବସିରହିଲି । ଶୋଇବାର ସାହସ ହେଉ ନଥାଏ, କ୍ରମେ ସକାଳ ହେଲା, ୫ଟା ବାଜିଲା । ଉଠି ପୁଣି ଚା' ଦୋକାନ ପାଖକୁ ଯାଇ ହାଫ୍‌କପ୍ ଚା' ଖାଇକରି ଗଲି R.T.O. ଅଫିସକୁ, ଖୋଲି ହୋଇନି ଅଫିସ । ତଥାପି ସେଇଠି ବସି ରହିଲି, ୭ଟା ବାଜିଲା । ଜଣେ ମହିଳା ଆସି ଅଫିସ ଖୋଲିଲେ । ଚଟାପଟ ଉଠି ମୋର ପରୁଆନା କାଗଜ ଖଣ୍ଡ ଦେଖାଇଲି ।

ସେ ଧୀର ସ୍ୱରରେ ଇଂରାଜୀରେ କହିଲେ "ଅପେକ୍ଷାକର । ବନ୍ଦୋବସ୍ତ କରୁଛି" ତା ପରେ ସେ ଅଧଘଣ୍ଟାଏ ଖଣ୍ଡେ ଫୋନ କରି ମୋତେ ବୁଝାଇ ଦେଲେ, ବମ୍ବେରେ ନମ୍ବର Suburbରେ 'ଥାନା' ଷ୍ଟେସନ, ସେଠାରେ ତମର କମ୍ପାନୀ ଅଛି ।

ଦମ୍ ପଶିଲା ଦେହରେ । ଗତରାତ୍ରର ଘଟଣା ସବୁ ତାଙ୍କୁ କହିବାରୁ ସେ କହିଲେ "ଆପଣଙ୍କ ଅସୁବିଧା ଯୋଗୁଁ ମୁଁ ବଡ଼ ଦୁଃଖିତ କିନ୍ତୁ ଆପଣଙ୍କ ଗାଇଡ଼ କାହିଁ ?''

କହିଲି କପଟ ଗାଇଡ୍ ସାହେବ ଯାଇ ଘୋଡ଼ା ଦୌଡ଼ରେ ହାଜର ଦେଉଛନ୍ତି । ବହୁ କଷ୍ଟ ସ୍ୱୀକାର ପରେ ପ୍ରଚୁର କ୍ଲାନ୍ତିର ଭାର ନେଇ ଅବଶେଷରେ ''ଥାନା''ରେ ପହଞ୍ଚିଲି । ମିଲିଟାରୀ ବାରାକ୍ ସବୁ ଟିଆ ହୋଇଛି । ସିଭିଲିଆନ ପୋଷାକ ପିନ୍ଧିଥିବାରୁ ସମସ୍ତେ ମୋ ପ୍ରତି ଜିଜ୍ଞାସୁ ଦୃଷ୍ଟିରେ ଚାହିଁ ରହିଲେ । ପଚାରି ପଚାରି କମାଣ୍ଡିଙ୍ଗ୍ ଅଫିସରଙ୍କ ଦପ୍ତର ପାଖେ ପହଞ୍ଚିଲି । ତାଙ୍କୁ ମୋର ଚିଠି ଦେଖାଇବାରୁ ସେ କହିଲେ—

''ତୁମ ୟୁନିଟ ଇରାକ ଅଭିମୁଖେ ଯାତ୍ରାରମ୍ଭ କଲେଣି । ତେବେ ଏ ଯାଏ ସେମାନେ ବମ୍ବେ ଭିତରେ ଥିବେ । ତାଙ୍କ ସହ ଯୋଗ ଦିଅନ୍ତୁ" । ବାହାରକୁ ଆସି କ୍ଳର୍କଙ୍କୁ ପଚାରିଲି କିଂ କର୍ତ୍ତବ୍ୟ ଅତଃ ପରଃ । ପୁଣି ବମ୍ବେ ଯିବ । ମୋ ପାଖରେ ଯେ ସମ୍ବଳ ନାହିଁ । କାହିଁକି ଏ ଦୁର୍ବୁଦ୍ଧି ମୋତେ ଦେଖାଗଲା ଏ ମିଲିଟାରୀକୁ ଆସିବାକୁ । ମୋ'ର ଗାଇଡ଼ ଘୋଡ଼ା ଦୌଡ଼ ଖେଳଗଲା । ଆଜି ମୋତେ ଘୋଡ଼ାପରି ଦଉଡ଼େଇଲା ବାଟଯାକ ଖାଲି ମୋହରି ପଇସାରେ ଲଞ୍ଚ, ଡିନର ଖାଇ । ମୁଁ ବର୍ତ୍ତମାନ କପର୍ଦ୍ଦକ ବିହୀନ । ଦୁଃଖ ଲାଗିଲା—କାନ୍ଦପକାଇଲି—କିରାଣୀ ବାବୁଟି ମୋ କଥାରେ ସମବେଦନା ଜଣାଇ କହିଲେ, ସିଭିଲସ୍ଥାନମାନଙ୍କୁ ଆମେ କ୍ୟାମ୍ପ ଭିତରେ ରଖାଇ ପାରିବୁ ନାହିଁ—ନୋହିଲେ ମୁଁ ଦିନେ ଦୁଇଦିନ ଭିତରେ ସଠିକ୍ ଖବର ଆଣି ଦେଇ ଥାଆନ୍ତି । ତା ପରେ କପେ ଚା' ଦୁଇଟି ଟଙ୍କା ଦେଲେ ସେ । ମୁଁ ତ ''ଥାନା'' ରେ ମୋର କମ୍ପାନୀ ଅଛି ବୋଲି ଭାବି ପ୍ରାପ୍ୟ ସବୁ ପଇସା ସାରି ଦେଇଥିଲି, ମୋ ପାଖରେ ମାତ୍ର ଥିଲା ପାଞ୍ଚ ଶୁଙ୍କା, ସେ ଦୁଇଟି ଟଙ୍କା ମୋତେ ସେତେବେଳେ ଲକ୍ଷେ ଟଙ୍କା ପରି ଲାଗିଲା । ସାହା ହେଉ ପୁଣି ଥାନାରୁ ଷ୍ଟେସନକୁ ଫେରିବା ପାଇଁ ବାହାରିଲି । ଭାବିବାକୁ ତର ନ ଥିଲା । ଏ ଅପନ୍ତରା ବାଟରେ କପରି ଯିବ । ଘଟଣା ଚକ୍ରରେ ମଣିଷ ବହୁତ କିଛି ଭୁଲିଥାଏ । ଛତ୍ରଣାଟି ଓ ସେ ବାବୁଙ୍କ ଠିକଣା ଧରି ବାହାରି ପଡ଼ିଲି । ଆଜିକି ସେ

ଦୁଇଟି ଟଙ୍କା ଏବଂ ସେହି ଭଦ୍ର ଲୋକଙ୍କର ଆଶ୍ୱାସନା ବାଣୀ ମୋର ଜୀବନର ଅବିସ୍ମରଣୀୟ ଆଶ୍ୱାସନା ହିସାବରେ ରହିଛି । ତାଙ୍କ ସହ ମୋର ଚିଠିର ଆଦାନ ପ୍ରଦାନ ଚାଲିଥିଲା । କିନ୍ତୁ ମୁଁ ବର୍ମାରେ ଥିଲାବେଳକୁ ୧୯୪୪ ମସିହାରୁ ଆଉ ତାଙ୍କ ଖବର ପାଇନି, ତା ଛଡ଼ା ତାଙ୍କ ଠିକଣାଟି ମୋର ଅନ୍ୟାନ୍ୟ ମୂଲ୍ୟବାନ ଜିନିଷ ସଙ୍ଗେ ଭସ୍ମିଭୂତ ହୋଇ ଯାଇଚି, ସେ ଘଟଣାର କାହାଣୀ ପରେ କହିବି ।

ଚାରି ମାଇଲ ବାଟ—ସମସ୍ତ ୨ଟା ହେବ । ଟେବଙ୍ଗ ଖଣ୍ଡ କାଟେଇ ବାହାରିଲି ଅଜଣା ଅଶୁଣା ପଥରେ । ଗାଁ ଗଣ୍ଡା ନାହିଁ—କି ଗଛ ପତ୍ର ବି ବିଶେଷ କିଛି ନାହିଁ । ଖାଲି ବଡ଼ ବଡ଼ କଳା ପେଟ୍ରୋଲ ପାଇପ ଦୁଇଟା ସମାନ୍ତରାଳ ଭାବରେ ରାସ୍ତାର ଦୁଇ ପାଖେ ପାଖେ ଯାଇଥାଏ । ଶୁଣିଲି ଏ ଦୁଇଟା ବମ୍ବେରୁ ପୁନା ଯାଇଛି—ମୋର ବି ସହଯାତ୍ରୀ କେହି ନାହାନ୍ତି । ବଡ଼ ଏକାକୀ ଆଜି ମୁଁ । ମନେ ହେଉଛି ଏ ପଥର ଯେମିତି ଶେଷ ନାହିଁ । କାହିଁ ମୋର ଶ୍ୟାମଳ ଗୁଳ୍ମଲତା ଭରିଗା ପରିଶୋଭିତ ଗାଁ ମାଟି—ଆଜି ଆଉ ଜୀବନ ସଂଗ୍ରାମର ପ୍ରାନ୍ତରରେ ଅନଭିଜ୍ଞ କାହିଁ ମୋର ଏହିସବୁ କୋମଳ ମୁହୂର୍ତ୍ତ ।

ଭିକ୍ଟୋରିଆ ଟର୍ମିନାସରେ ପହଞ୍ଚିଲାବେଳକୁ ରାତି ୮ଟା ବାଜିଥାଏ । ପୁଣି ସେହି ପ୍ଲାଟଫର୍ମରେ ରାତିଟି କଟାଇଲି । ସକାଳୁ ଉଠି କ'ଣ କରିବି ବୋଲି ଭାବୁଚି—ଆଉ କ୍ୟାଆଡ଼କୁ ନ ଯାଇ ମନେ ମନେ ଚିନ୍ତା କଲି, ମିଲିଟାରୀ କଥା ଛାଡ଼ି ବମ୍ବେ ପରି ଜାଗାରେ କ'ଣ କିଛି କାମ ମିଳିବ ନାହିଁ ? ଦେଖି ଚେଷ୍ଟା କରେ—ବେଡ଼ିଂ ଧରି ପ୍ଲାଟଫର୍ମ ବାହାରକୁ ଆସିଚି, ଠିକ୍ ଏହି ସମୟରେ ଦେଖା ହେଲା ସେହି ସାହେବଙ୍କ ସାଙ୍ଗରେ, ଯେ ମୋର ଇନ୍‌ଚାର୍ଜ ଅଫିସର ହୋଇ ଆସିଥିଲେ କଲିକତାରୁ—ତାଙ୍କୁ ଦେଖିବା ମାତ୍ରେ ମୁଁ ମୋର ଘଟଣାଯାକ ସବୁ କହିଲି ଏବଂ ସଙ୍ଗେ ସଙ୍ଗେ ରାଗରେ ବି ଦୁ'ପଦ ଝାଡ଼ି କହିଲି ।

"ତୁମେ ଘୋଡ଼ା ଦୌଡ଼ କରଗଲ, ମୋତେ ଦୌଡ଼ାଇ ଦୌଡ଼ାଇ ମାଇଲ—ମୁଁ ଯାଉଛି, ମୋର ଯାହା ଇଚ୍ଛା ତାହା କରିବ—ନମସ୍କାର ତୁମକୁ ଏବଂ ନମସ୍କାର ତୁମର ମିଲଟାରୀକୁ ।"

ଏକଥା ଶୁଣିବା ମାତେ ସାହେବ ଆଉ ଯାଏ କୁଆଡ଼େ—କହିଲା "ମୋତେ କ୍ଷମା କରନ୍ତୁ—ମୋର ଭୁଲ୍ ହୋଇ ଯାଇଛି—ତୁମେ ଆଉ କିଛି ଭାବନା—ଆଗ ତୁମ କମ୍ପାନୀର ପତା ଲଗାଇବା ଏବଂ ତୁମକୁ ନେଇ ମୁଁ ପହଞ୍ଚାଇ ଦେବ ଠିକଣା ଜାଗାରେ ।"

ତା'ପରେ R.T.O. ଅଫିସକୁ ଯାଇ ପ୍ରାୟ ଅଧଘଣ୍ଟା ଲାଗି ଫୋନ୍ କରି ମୋର କମ୍ପାନୀର ପତ୍ତା ମିଳିଲା । କହୁଚି ତ ବାହଯାକ ତାକୁ ଲମ୍ଫ ଡେଇଁ ଖୁଆଇ କରି ଆସିଥିଲି, ବର୍ତ୍ତମାନ ତାର ପାଳି ପଡ଼ିଲା । ସେ ମୋତେ ଖୁଆଇଲା ଓ ଖଣ୍ଡେ ଟାକ୍ସି କରି କୁର୍ଲାରେ ପହଞ୍ଚିଲୁ ।

ସେତେବେଳକୁ ଦିନ ୪ଟା, ପ୍ରାୟ ଏକ ଏକର ଜମିରେ ୦·୫ଟି ତମ୍ବୁ ଟଣା ହୋଇଛି—ସେଇଟି ହେଲା ଆମ କମ୍ପାନୀ, ସାହେବ ଟାକ୍ସିକୁ ବିଦା କରି ଦେଇ ତମ୍ବୁ ସବୁ ଦେଖିଲେ । ଯେଉଁ ତମ୍ବୁ ସାମ୍ନାରେ "ଅଫିସ" ଲେଖା ହୋଇଥିଲା, ତା ଭିତରେ ପଶିଲେ । ଜଣେ ଖାକି ପୋଷାକ ପରିହିତ ପ୍ରାୟ ୨୨।୨୪ ବର୍ଷର ଯୁବକ ଆମକୁ ଦେଖି ଚଉକୀରୁ ଉଠି ଆମକୁ ଅଭିବାଦନ କଲେ ଏବଂ ବସିବାକୁ ନିର୍ଦ୍ଦେଶ ଦେଲେ । ଜାଣିଲି ଏ ଭଦ୍ରଲୋକ ଜଣକ ହେଡ଼କ୍ଲର୍କ, ମାନେ ମିଲଟାରୀ ଭାଷାରେ 'ବଡ଼ବାବୁ' । ସାହେବ ମୋତେ ତାଙ୍କ ଜିମା କରିଦେଇ ଗୁଲିଗଲେ । ତା'ପରେ ସେ ଭଦ୍ରଲୋକ ମୋର କାଗଜ ଇତ୍ୟାଦି ଦେଖି ଏବଂ କୁଶଳ ପ୍ରଶ୍ନ ପରେ କହିଲେ—

"ଆପଣ ମୋ ତମ୍ବୁରେ ରହିବେ" । ଜଣେ ପିଅନକୁ ଡାକଲେ ଏବଂ ହିନ୍ଦୀରେ କହିଲେ "ଆମର ଏ ଜଣେ ନୂଆ ବାବୁ ଆସିଲେ—ତାଙ୍କର ଜିନିଷ ନେଇ ମୋ ତମ୍ବୁରେ ରଖିଦିଅ ।"

ପିଅନ ଜଣକ ହେଉଛି ଜଣେ ଶିଖ୍ ଯୁବକ—ତହିଁଲା "ଚଲିୟେ ବାବୁଜୀ ।"

ଗୁଲିଲି ତା ପଛେ ପଛେ । ଖଣ୍ଡିଏ ଖାଲି ଖଟିଆ ଉପରେ

ମୋର ବେଡ଼୍‌ଖଣ୍ଡ ଫିଟାଇ ଦେଲ । "ବେଠିଯେ୍‌ ବାବୁଜୀ । ବସିଲ—ତା'ପରେ ସେ ପଗ୍ଗୁଡ଼ିଲ ପଞ୍ଜାବୀ ଭାଷାରେ "ତୋ ଆଓ ପିଣ୍ଡ୍ କଥେ ବାବୁଜୀ ।"

ଏ ଭାଷା ତ ଶୁଣି ନ'ଥିଲି, କହିଲି—"ହାମ୍ ତୁମ୍ହାରା ଭାଷା ନେହିଁ ସମଝ୍‌ତା ।"

କହିଲା—'ତୁ ପିନ୍ଦ୍ ପିଣ୍ଡ୍ । ଝଟମ ବୁଝିଲି 'ପିଣ୍ଡ୍' ମାନେ ଘର । 'କଥେ' ମାନେ କେଉଁଠାରେ । ଏତିକିବେଳେ ବଡ଼ବାବୁ ଆସିଲେ । ତାଙ୍କ ନାମ ଏସ୍. ଏଲ୍. ନଗର୍‌କର୍ । ସେ କହିଲେ "ଶୀଘ୍ର ଧୁଆ ଧୋଇ ହୋଇ ପଡ଼ନ୍ତୁ । ଖାଇବାକୁ ଯିବା"—

କହିଲି, କ'ଣ ୬ଟା ବାଜିନ୍ତି ଏତେବେଳୁ ଖାଇବା ?

ସେ କହିଲେ "ହଁ ଏଇଟା ଫୌଜ (ମିଲିଟାରୀ) ଆଇନ୍ । ମୁଁ ସବୁ ବତେଇ ଦେବି ଆପଣଙ୍କୁ ପରେ ।" ବଡ଼ ତମ୍ବୁକୁ ଲଗି ଆଉ ଗୋଟିଏ ଛୋଟିଆ ତମ୍ବୁ ଥାଏ । ସେଥିରେ ଦୁଇଟି ଟିଣରେ ପାଣି ଭର୍ତ୍ତି ହୋଇଥାଏ ଓ ଖଣ୍ଡିଏ ପଟା ପଡ଼ିଥାଏ । ସେଇଠି ଧୁଆ ଧୋଇ ହୋଇ ଆସି ନଗର୍‌କର୍ ବାବୁଙ୍କ ସଙ୍ଗେ ଖାଇବାକୁ ଗଲି—ଗୋଟିଏ ବଡ଼ ତମ୍ବୁ । ତା ତଳେ ୪।୬ଟି ଲମ୍ବା ବେଞ୍ଚ ଓ ଟେବୁଲ ପଡ଼ିଛି । ତା' ଉପରେ ଗୋଟିଏ ପ୍ଲେଟରେ ଭାତ, ଡାଲି ଓ ତରକାରୀ । ତା' ଉପରେ ଦୁଇଖଣ୍ଡ ରୋଟି । ମୋତେ କେମିତି କେମିତି ଜଣା ପଡ଼ୁଥାଏ । ଯାହା ତାହା ଦୁଇଟା ଖାଇ ଦେଇ ଆସିଲି ଟେଣ୍ଟକୁ ।

ମିଃ ନଗର୍‌କର୍ କହିଲେ—"ଏଟା ଆମର ଫିଲଡ୍ ବାରେକସ୍ ସେକ୍‌ସନ ଏବଂ ଏହା ୧୦୧ ସପ୍ଲାଇ କମ୍ପାନୀର ଗୋଟିଏ ୟୁନିଟ୍—ଆମର କୋର୍ (Corps) ନାମ ହେଲା R. I. A. S. C. (Royal Indian Army Service Corps) ଆପଣ ଯେଉଁ କମ୍ପାନୀକୁ ଆସିଲେ ତାହା ୧୦୨ ନମ୍ବର କମ୍ପାନୀ—ସପ୍ଲାଇ ଅର୍ଥ ଆମେ ସୈନ୍ୟ ବିଭାଗ, ନୌବାହିନୀ ଏବଂ ବିମାନ ବାହିନୀ ସମସ୍ତଙ୍କୁ ସମସ୍ତ ପ୍ରକାର ଖାଦ୍ୟ ସାମଗ୍ରୀ, ପେଟ୍ରୋଲ, ଭାରବାହୀ ପଶୁ ଏବଂ ମେକାନିକାଲ ଟ୍ରାନସ୍‌ପୋର୍ଟ ଅର୍ଥାତ୍ ଜିପ୍, ଟ୍ରକ୍, ଲରୀ, ଏବଂ ବୋଟର (ଏହା ଡଙ୍ଗା ପରି ଦେଖିବାକୁ ଜଳ ଓ ସ୍ଥଳ ଉଭୟ ଯାଗାରେ ଚାଲେ)

ପ୍ରଭୃତି ଯୋଗାଇବା, ସେଥିରେ କାମ କରିବା ଏବଂ ତା'ର ତତ୍ତ୍ୱାବଧାନରେ ରହିବା ।

ଭାବିଲି କିଛି ମନ୍ଦ ନୁହେଁ ।

ଯେତେବେଳେ ସବୁ ଯୋଗାଇବା—ନିଜେ ତ ନିଶ୍ଚୟ ଭଲ ଖାଇବା ।

ତା'ପରେ ପୁଣି ସେ କହି ଚାଲିଲେ R. I. A. S. C. ତିନି ଭାଗରେ ବିଭକ୍ତ ଯଥା—ସପ୍ଲାଇ, ଏମ୍.ଟି ( ମେକାନିକାଲ୍ ଟ୍ରାନସ୍‌ପୋର୍ଟ ) ଏବଂ ଏ. ଟି. ( ଆନିମଲ୍ ଟ୍ରାନସ୍‌ପୋର୍ଟ ) ସପ୍ଲାଇ ତଳେ ସବୁ ଖାଇବା ଜିନିଷ, ଏମ୍.ଟି ତଳେ ମଟର ଟ୍ରକ୍ ଇତ୍ୟାଦି, ଏ. ଟି. ତଳେ ଗଧ, ଘୋଡ଼ା, ହାତୀ, ଖଚର ପ୍ରଭୃତି । ଆମର ଏହି ୟୁନିଟର ନାମ ୯ ନମ୍ବର ଫିଲ୍‌ଡ ବାକେରୀ ସେକ୍‌ସନ । ମାନେ ଏହି ଯେଉଁ ଯବାନ ଗୁଡ଼ିକ ଦେଖୁଛନ୍ତି, ସେମାନଙ୍କ କାମ ହେଲା ପାଉଁରୁଟି, କେକ୍ ଇତ୍ୟାଦି ତିଆରି କରିବା—ଏମାନେ ତିଆରି କରି ନିଜ ନିଜ ଏରିଆର ସପ୍ଲାଇ ଡିପୋକୁ ପ୍ରତିଦିନ ଦେବେ । ସେଠାରୁ ତାହା ଫିଲ୍‌ଡ ସପ୍ଲାଇ ଡିପୋକୁ ଯିବ ଏବଂ ସେଠାରୁ ସମସ୍ତେ ନିଜ ନିଜର ଚାହିଦା ମୁତାବକ ନେବେ ।

"ଆପଣ କାଲି ସକାଳୁ ଆମର ଅଫିସର କମାଣ୍ଡିଂ ଓ ସେକେଣ୍ଡ ଇନ୍ କମାଣ୍ଡିଂକୁ ଭେଟିବେ—କାଲି ଆପଣଙ୍କୁ ଓ୍ୟାର୍ଦ୍ଦି (ପୋଷାକପତ୍ର) ଦିଆଯିବ ଏବଂ ସବୁଜିନିଷ ଆସ୍ତେ ଆସ୍ତେ ଆପଣ ବଳେ ବୁଝିଯିବେ ।"

ତହିଁ ଆରଦିନ ସକାଳ ୭ଟାରେ ଆମର ସେକେଣ୍ଡଇନ୍ କମାଣ୍ଡ ଆସିଲେ । ତାଙ୍କ ନାମ ଜମାଦାର ରାମ କୁମାର ସିଂହ । ଚୋପା ଗୋରା । ବୟସ ଅନ୍ଦାଜ ୨୫ବର୍ଷ ହେବ । ଘର କ୍ୱେଟାରେ । ଖୁବ୍ ସୁନ୍ଦର ଇଂରାଜୀ କହନ୍ତି, ବି, ଏ, ପଢ଼ିଚନ୍ତି । ତାଙ୍କ ସାମନାକୁ ମୋତେ ନେଲେ ନଗର କର ବାବୁ । ମୁଁ ନମସ୍କାରଟିଏ କରି ଠିଆ ହେଲି । ସେ ପଚାରିଲେ ମୋର ନାମ, ଘର ଇତ୍ୟାଦି ।

ତାପରେ କହିଲେ, "ମୁକରର କାଗଜ ୨ଦିନ ହେବ ଆମ ଅଫିସକୁ ଆସିଲାଣି । ମୁଁ ନାମ ଦେଖି ଭାବିଥିଲି, ତୁମେ କିଏଣ ସରଦାରଜୀ ।"

ଏତିକିରେ ମୁଁ ଟିକିଏ ହାତ ହଲାଇ କଥା ଆରମ୍ଭ କଲି ।

ସଙ୍ଗେ ସଙ୍ଗେ ସେ ଉଗ୍ରମୂର୍ତ୍ତି ଧରି କହିଲେ, "ଜାଣ, ତୁମେ ବର୍ତ୍ତମାନ ଫୌଜରେ ଭର୍ତ୍ତି ହୋଇଛ । ତୁମକୁ ଆଟେନସନ ହୋଇ କଥା କହିବାକୁ ପଡ଼ିବ ଅଫିସର ଆଗରେ ଏବଂ ମିଲିଟାରୀ ଡିସିପ୍ଲିନ୍‌ର ଏହା ପ୍ରଧାନ କଥା ।" ତାପରେ କହିଲେ—'ଯାଅ' ।

ମୁଁ ସେତେବେଳକୁ ଡରି ଗଲିଣି । ବାହାରକୁ ଆସି ନଗର କର୍ ବାବୁଙ୍କୁ କହିଲି "ଲୋକଟା ଭାରି କଡ଼ା । କଥା କହିଲାବେଳେ ଦେହ ହାତ ହଲିବନି, ଏ ପୁଣି କି ଆଇନ ?"

ସେ ହସିଲେ ଏବଂ କହିଲେ "ସବୁ ଆସ୍ତେ ଆସ୍ତେ ଅଭ୍ୟାସରେ ପଡ଼ିଯିବ—ଏଣିକି ଜମାଦାର ସାହେବ ବୋଲି ତାଙ୍କୁ ଡାକିବେ—ସେ ଜଣେ V. C. O. ମାନେ Viceroy Commissioned Officer. ପ୍ରଥମେ ଜମାଦାର, ତାପରେ ସୁବେଦାର ଏବଂ ତାପରେ ସୁବେଦାର ମେଜର୍—ସେମାନେ ଆମଠୁଁ ବଡ଼--ଆମେ ହେଲେ N. C. O. (Non-Commissioned Officer), ତାଙ୍କଠୁଁ ବଡ଼—K. C. O. King's Commissioned Officer."

ତାପରେ ନଗର କର ବାବୁ ମୋତେ କ୍ୱାଟର ମାଷ୍ଟର ଷ୍ଟୋରକୁ ନେଲେ । ଇଉନାଟ୍‌ର Officer ଷ୍ଟୋରକୁ କ୍ୱାଟର ମାଷ୍ଟର ଷ୍ଟୋର କହନ୍ତି ଏବଂ ଯେଉଁ ଅଫିସର ଜଣକ ଷ୍ଟୋରର ଇନ୍‌ଚାର୍ଜ ତାଙ୍କୁ କ୍ୱାଟର ମାଷ୍ଟର କହନ୍ତି । ସେଠାରେ ମୋତେ ବୁଟ୍, ମୋର ପୋଷାକ, କମ୍ବଳ, ମଶାରୀ ଇତ୍ୟାଦି ଦିଆଗଲା ଏବଂ ନଗର କର ବାବୁ ମୋତେ ପୋଷାକ ପିନ୍ଧାଇବା ଶିଖାଇଲେ । ପ୍ୟାଣ୍ଟ ହେଉ ନଥାଏ । ତଥାପି ପିନ୍ଧିବାକୁ ପଡ଼ିବ । ପରେ ତାକୁ ଫିଟ୍ କରେଇବ । କାରଣ ପିନ୍ଧି ସାରିଲେ ଅଫିସର କମାଣ୍ଡିଙ୍ଗ୍‌ଙ୍କ ସଙ୍ଗେ ଦେଖା ହେବ । ଘଣ୍ଟାଏ ଖଣ୍ଡେ·ଲଗି ପୋଷାକ ପିନ୍ଧିଲି । ବୁଟ୍ ପିନ୍ଧିସାରି ଗୋଟିଏ ଟୋପି ପିନ୍ଧିଲି ଏବଂ ଚାଲିଲି—ଚାଲିଲା ବେଳକୁ ଯେମିତି ଆଗକୁ ପଡ଼ିଯିବି ବୋଲି ଲାଗୁଥାଏ—ଯେଉଁମାନେ ପ୍ରଥମ କରି ମିଲିଟାରୀ ଭାରି ବୁଟ ପିନ୍ଧିଥିବେ, ପ୍ରଥମ ଦିନର ଅନୁଭୂତି ନିଶ୍ଚୟ ଜାଣିଥିବେ । ଦର୍ପଣରେ ଚେହେରା ଦେଖିଲି—ଠିକ୍ ଗୋଟିଏ ସର୍କସ କ୍ଲାଉନ ପରି ଦିଶୁଥାଏ । ଟ୍ଲେଟେଇ ଟ୍ଲେଟେଇ ଚାଲିଲି ଅଫିସର କମାଣ୍ଡିଙ୍ଗ୍‌ଙ୍କ ଟେଣ୍ଟ ଆଡ଼କୁ ।

ଜମାଦାର ସାହେବ ଆସିଲେ—ମୋତେ ଡାକି ନେଲେ ଟେଣ୍ଟ ଭିତରକୁ—ମୁର୍ଦ୍ଧାରଙ୍କ ଭଳି ସଲାମ କଲି (କାରଣ ମିଲିଟାରୀର ପୋଷାକ୍ ଖାକିଟ ସଙ୍ଗେ ତୁଳନା କଲେ ତାହା ମୁରୁଦାରର ସଲାମପରି) ତାପରେ ଜମାଦାର ସାହେବ ବୁଝାଇ ଦେଲେ ଏ ଜଣେ ନୂଆ ରିକ୍ରୁଟ୍ । (ରିକ୍ରୁଟକୁ ରଙ୍ଗ୍ରୁଟ କହନ୍ତି) କମାଣ୍ଡିଙ୍ଗ୍ ଅଫିସର କ୍ୟାପ୍‌ଟେନ୍ ବ୍ରାଉନ ହସିଲେ ଏବଂ ମୋତେ କହିଲେ, ଆପଣଙ୍କୁ ସବୁ ଟ୍ରେନିଙ୍ଗ ନେବାକୁ ପଡ଼ିବ । ଏଠାରେ ଆସ୍ତେ ଆସ୍ତେ ସବୁ ଶିଖନ୍ତୁ । ଏତିକିରେ ସେଠାରୁ ଆସି ପୁଣି ନଗରକର୍ ବାବୁଙ୍କ ପାଖେ ଅଫିସ ଫାଇଲ୍ ଘଣ୍ଟା ଚକଟା କଲି—ସେହି ଦିନ ଦରଖାସ୍ତ ଖଣ୍ଡେ ଲେଖି ଟ୫୦୯ଙ୍କା ଆଡ୍‌ଭାନ୍‌ସ ନେଲି । ସନ୍ଧ୍ୟାବେଳେ ନଗରକର୍ ବାବୁଙ୍କ ସଙ୍ଗେ ବୁଲି ବାହାରିଲି ଏବଂ ପ୍ୟାଣ୍ଟ ପ୍ରଭୃତି ଧରି ଚାଲିଲି ଫିଟ୍ କରାଇ ଆଣିବ ବୋଲି ।

କୁର୍ଲା, ବମ୍ବେର ଗୋଟିଏ ଅଂଶ ଏବଂ ଏ ଅଞ୍ଚଳରେ ବହୁତ ଗୁଡ଼ିଏ ମିଲିଟାରୀ କ୍ୟାମ୍ପ । ସେ ଦିନ ମୋତେ ବମ୍ବେର ଆବହାଓ୍ୱା କିଛି ଭଲ ଲାଗୁନଥାଏ । କେବଳ ମୋର ନୂଆ ଜୀବନର କଥା ମୁଁ ଭାବୁଥାଏ, କିପରି କ'ଣ ଟ୍ରେନିଙ୍ଗ ନେବି, କିପରି କାମ କରିବି । ଠିକ୍ ଏତିକି ବେଳେ ପଛଆଡ଼ୁ ଗୋଟିଏ ମଟର ହର୍ଣ୍ଣ ଏକବାର ପାଖରେ ବଜାଇ ବ୍ରେକ୍ ଦେଲା—ଆଉ ଟିକିଏ ହେଲେ ନିଶ୍ଚୟ ଆକ୍‌ସିଡେଣ୍ଟ ହୋଇଥାନ୍ତା । ଚଟ୍‌କରି ପାଖକୁ କରେଇ ଗଲି । ଚାଳକ କହିଦେଲା—"ବୁଢ୍ଢ୍ କାହିଁକା" । କାହାକୁ ବା କ'ଣ କହିବି—ପାଖରେ ଗୋଟିଏ ଦରଜୀ ଦୋକାନରେ ପୋଷାକ ମାପ ଦେଇ ଚାଲି ଆସିଲି । ଆସି ପୁଣି ନଗରକର ବାବୁଙ୍କ ସଙ୍ଗରେ ଗପ କଲି ।

ଖିଆପିଆ ସାରି ଶୋଇ ପଡ଼ିଲି । ତହିଁଆର ଦିନ ୫ଟାରେ ଉଠିବା ବେଲ୍ ବାଜିଲା—ଚଟ୍‌ପଟ୍ କରି ହାଫପ୍ୟାଣ୍ଟ ଗଳାଇ ଚାଲିଲି ପି: ଟି: ପଡ଼ିଆକୁ । ସେଠାରେ ସମସ୍ତଙ୍କ ସଙ୍ଗରେ ମିଶି ଅପର କର୍ମ ଆରମ୍ଭ କଲି । ମୋତେ ଆସୁ ନଥାଏ—ଆମର ଓ୍ୱାରଣ୍ଟ ଅଫିସର ମୋ ପାଖକୁ ଆସି ସବୁ ବତାଇ ଦେଉଥାଏ । ଝାଳ ନାଳ ହୋଇ ୭ଟାରେ ପି: ଟି: ପଡ଼ିଆରୁ ଫେରି ମଟ୍‌ରେ ଚାହା ଓ ରେସନ୍ ଟିନ୍ (ଖାଇବା ବାସନ) ରେ ପରଟା ଧରି,

ଭଲଷିଆ ସାର, ଅଫିସ ଆସିଲି—ଫାଇଲ୍ ଲେଉଟାଉ ଲେଉଟାଉ ଗୋଟାଏ ବାଜିଲା । ଖାଇବାକୁ ଗଲି—ଖାଇବାରେ ବିଶେଷତ୍ଵ କିଛି ନଥାଏ । ଭାତ, ଡାଲି, ତରକାରୀ । ଶେଷରେ ଟିନ୍‌ଫ୍ରୁଟ ଖୋଲି ଲଙ୍ଗର କମାଣ୍ଡର ( ବଡ଼ ରାନ୍ଧୁଣିଆ ) ଖଣ୍ଡେ ଖଣ୍ଡ ପାଇନ୍ ଆପଲ ( ସପୁରି ପଣସ ) ସ୍ଲାଇସ ଦେଇଗଲା—

ଅଫିସକୁ ଆସିଲି । ଡାକ ଆସିଚି—ଡାକ ଖୋଲା ହେଲା—ଚିଠି ଆସିଥିଲା ଫିରୋଜପୁରରୁ । ଆମ ହେଡ଼ କ୍ୱାଟରରୁ ଲେଖାଥିଲା "S. R 5575 Mayadhar Sing enrolled as a sepoy attested and Promoted to the rank of Havildar in Clerical division and posted to field Bakery Section in Bombay." ଆରମ୍ଭ ହେଲା ମୋର ମିଲିଟାରୀ ଜୀବନ—ମୁଁ ହେଲି—S. R. 5575 Hav-C. L. ମାୟାଧର ସିଂହ ।

କୁର୍ଲା ବମ୍ବେ ସହର ଭିତରେ ଏକ ଅଂଶ—ଗୋଟିଏ ବହୁତ ବଡ଼ ସପ୍ଲାଇ ଡିପୋ ଥାଏ । ଏଠାରୁ ପ୍ରାୟ ସମସ୍ତ ଖାଇବା ଜିନିଷ ମଧ୍ୟ ପ୍ରାଚ୍ୟ, ପାରସ୍ୟ ଏବଂ ଇରାକ, ଦକ୍ଷିଣ, ପୂର୍ବ ଏସିଆ କମାଣ୍ଡମାନଙ୍କୁ ପଠା ହୋଇଥାଏ—ଅବଶ୍ୟ ଯେଉଁ ଖାଇବା ଜିନିଷ ସ୍ଥାନୀୟ ଭାବରେ ମିଳେ ତାକୁ ମିଲିଟାରୀରେ ସ୍ଥାନୀୟ ବଜାରରୁ କିଣି ଦିଅନ୍ତି କିନ୍ତୁ ଯାହା ନମିଳେ ଏବଂ ବିଶେଷ କରି ଭାରତୀୟ, ସିଂହଳୀ, ବର୍ମୀ, ଆଫ୍ରିକାନ (ହିନ୍ଦୀରେ "ହବ୍‌ସି" କହନ୍ତି ) ଇଂରେଜ; ଆମେରିକାନ ରୁଚି ବିଶିଷ୍ଟ ଖାଦ୍ୟସବୁ ଏହି ସପ୍ଲାଇ ଡିପୋମାନଙ୍କରୁ ଯୋଗାଇ ଦିଆହୁଏ । ଏହି ଯୋଗାଣ କେନ୍ଦ୍ରମାନଙ୍କୁ ସାଧାରଣତଃ ୧—R. B. S. D. (Reserve Base Supply Depot) ୨—B. S. D. (Base Supply Depot) ୩—A. B. S. D. (Advance Base Supply Depot) ୪—ସପ୍ଲାଇ କମ୍ପାନୀ । ୫—F. S. D. (Field Supply Depot)

S. C. P. ( Composite Platoon ) ଭାବରେ ବିଭକ୍ତ କରା ହୋଇଥାଏ ।

ମୋର ପୋଷ୍ଟିଂ ହେଲା ଗୋଟିଏ ସପ୍ଲାଇ କମ୍ପାନୀରେ । ବେକରୀ ଯାହାର ଗୋଟିଏ ସେକ୍‌ସନ । କିଛି କିଛି ପରେଡ଼ ଶିଖିଲିଣି । ପି: ଟି:ର ଅଭ୍ୟାସ ହେଲାଣି । ଦିନେ ସନ୍ଧ୍ୟାବେଳେ ରୋଲ୍ କଲ୍ ସମୟରେ ଶୁଣାହେଲା କାଲି ସକାଳୁ ସି: ଓ: (C. O.) ପରେଡ଼ ହେବ । ଅର୍ଥାତ୍ ପୂରା ପୋଷାକ ପିନ୍ଧି କମ୍ପାନୀର ସବୁ ଜବାନ୍ ରାଇଫଲ ଧରି ଲେଫ୍‌ଟ ରାଇଟ୍ କରି ପଡ଼ିଆରେ ମାର୍ଚ୍ଚ କଲେ । ମୁଁ ବି ତାଙ୍କ ସଙ୍ଗେ ସଙ୍ଗେ ଚାଲିଲି—ମୋର ହାବିଲଦାର ଆଗରେ—୭୨ ସେର ଓଜନ ବନ୍ଧୁକଟି ପ୍ରଥମ କରି କାନ୍ଧରେ ପକାଉଛି । ଦଶ କଦମ ଚାଲିଲାବେଳକୁ କଷ୍ଟ ଲାଗୁଛି । ଏଣେ ବନ୍ଧୁକ ସମ୍ଭାଳୁ ସମ୍ଭାଳୁ ପାଦ ମିଳେଇବା ଭୁଲ୍ ହୋଇ ଯାଉଛି ।

କପ୍ତାନ ଡାକ ଛାଡୁଛନ୍ତି—"ସାମନେ ଦେଖୋ—କଦମ ମିଲାଓ ।"

ମହା ହଇରାଣ, ବାହାରେ ସିପାହୀମାନେ ହସୁଛନ୍ତି । ଲଜ୍ଜା ଲାଗୁଛି ମୋତେ । ହଠାତ୍ କମାଣ୍ଡିଂ ଅଫିସର ଆସିଗଲେ । ଶ୍ଲୋ ଆର୍ମ, ଅର୍ଡର ଆର୍ମ କରୁ କରୁ ମୁଣ୍ଡ ମୋର ବୁଲିଗଲା । ପ୍ରାୟ ହଜାରେ ଲୋକ ଭିତରୁ ୨୦୦ ଗଜ ଦୂରରୁ କମାଣ୍ଡିଂ ଅଫିସର କପରି ଏହା ମାର୍କ କଲେ କେଜାଣି, ଦୌଡ଼ି ଆସିଲେ ମୋ ପାଖକୁ । ଆସି ପଚାରିଲେ "ଓଃ ! ତୁମେ ଜଣେ ସର୍ଜେଣ୍ଟ—ଲାଜ ଲାଗୁନି ପରେଡ଼କୁ ଆସିଛ ?" ଡରି ଡରି କହିଲି "ସାର୍ ମୁଁ ମାତ୍ର ୧୫ ଦିନ ହେବ ମିଲିଟାରିରେ ଢୁକିଛି, କିଛି ଜାଣେନା ।"

ସେ ହସିଲେ । ପଚାରିଲେ "ଘର କେଉଁ ଦେଶରେ ?"

କହିଲି "ଓଡ଼ିଶାରେ" ।

"କଣ ପଢ଼ିଛ ?"

"ଆଇ: ଏ: ପର୍ଯ୍ୟନ୍ତ—"

ହଠାତ୍ କାପ୍ତାନ ସିଅରକୁ ଡାକି କହିଲେ "ଏ ନୂଆ ଲୋକକୁ କାହିଁକି ସି: ଓ: ପରେଡ଼କୁ ଆଣିଲ ?" ତାକୁ ଇଉନିଟ୍‌ରେ ଟ୍ରେନିଂ ଦିଅ—ମୋତେ ଚାହିଁ କହିଲେ "ତୁମେ ତ ଜଣା ପଡୁଛ ଖୁବ୍

ସ୍ମାର୍ଟ ଏବଂ ଅଳ୍ପ ବୟସ୍କ—ଇଂରାଜୀ ବି ମଧ୍ୟ ଭଲ କହୁଚ—ଯାଅ ଅଫିସରେ ବସି କାମ କରିବ । କାଲି ଏରିଆ କମାଣ୍ଡରର ଇନସ୍-ପେକ୍‌ସନ । ତୁମେ ଆସିବ ନାହିଁ ।

ଦେଖ ମୋ ଖୁସି । ଏ କଷ୍ଟରୁ ହାତ ମିଳିଲା ଭାବି ଏକ ସଲାମ ଠୁକି, ଦେ ଦଉଡ଼ ଅଫିସକୁ । ବମ୍ବେ ସହର ତ ସବୁବେଳେ ମିଲିଟାରୀରେ ଭର୍ତ୍ତି । ବିଶେଷ ଭାବେ ନୌବାହିନୀ ଅଧ୍ୟୁଷିତ । ସନ୍ଧ୍ୟା ପରେ ଗୃହଆଡ଼େ ପଇଲଟ ମାରୁଥାନ୍ତି ସୈନ୍ୟମାନେ । ମୋର ବି କ୍ରମେ ସାନ୍ଧ୍ୟ ଭ୍ରମଣ ନିଶା ଲଗିଲାଣି—କୁର୍ଲାରୁ ଦାଦାର ଆଡ଼େ ଆସିଥାଏ—ବାଟ ଚାଲୁ ଚାଲୁ ଗୋଟିଏ ଗଳି ମୁହଁରେ ଗୋଲ ବୋର୍ଡରେ ଲେଖା ଅଛି **Out of Bounds for troops.** କୌତୁହଳ ହେଲା । କାହିଁକି ଏପରି ଲେଖା ହୋଇଛି ? ଏକୁଟିଆ ଥାଏ, ଚାଲିଲି ଗଳି ଭିତରକୁ ।

ପ୍ରାୟ ୩୦ କଦମ ଯାଇଛି କି ନାହିଁ, ଘର, ବାରଣ୍ଡା ଓ ଝରକା ପାଖ ମାନଙ୍କରେ ନିଷିଦ୍ଧର କାରଣ ମାନ ଆବିଷ୍କୃତ ହେଲା । ବୁଝିଲି, ଏଇଟା ଗଣିକା କଲୋନୀ । ଏପରି ଭାବ ଭାବ ଚାଲୁଚି । ପ୍ରାୟ ଆଉ ୧୦ ଗଜ ଯାଇଚି କି ନାହିଁ, ପଛରୁ ମଟର ସାଇକେଲ ଚଢ଼ାଳି ଗୋରା ସିପାହୀ ଜଣେ ଆସି ମୋ ପାଖରେ ବ୍ରେକ୍ ଦେଲା । ପୋଷାକର ବାହୁରେ, ଗ୍ଲାଭରେ ଏବଂ ଟୋପିରେ ଲେଖା ହୋଇଚି **M.P.** (ମିଲିଟାରୀ ପୋଲିସ) କହିଲା ତୁମର ପରିଚୟ ପତ୍ର ଓ ଦରମା ବହି ଦିଅ ।

ବୋକାଙ୍କ ଭଳି କହିଲି କାହିଁକି ?

କହିଲା ଦେଖିନ, ଲେଖାଅଛି ସୈନ୍ୟ ବିଭାଗ ଲୋକଙ୍କ ପାଇଁ ଏ ରାସ୍ତା ମନା ! ଯେହେତୁ ଏ ବେଶ୍ୟାପଡ଼ା—ତୁମର ନାମ ନମ୍ବର ଓ ୟୁନିଟର ନାମ କବୁଲ କର । ନୋହିଲେ ମୁଁ ତୁମକୁ ଆରେଷ୍ଟ କରିବି । ଆଜ୍ଞାକଥା ହେଲା, କହିଲି, ଭାଇ ସାହାବ ! ମୁଁ ଜାଣେନା । ଏକବାରେ ନୂଆ । ଦେଖ ମୋର ପରିଚୟ ପତ୍ର—ମାତ୍ର ୨୦-୨୫ଦିନ ହେବ ମିଲିଟାରୀକୁ ଆସିଚି । ଆଉ ଏପରି ରାସ୍ତାରେ କେବେ ଆସିବି ନାହିଁ । ସାହେବ ଟିକିଏ ଭ୍ରୁକୁଞ୍ଚିତ କରି କହିଲା—"ଗ୍ରାଉଡ଼ ଦେଲି ଏଥର ଚାଲିଯାଅ । ଏହି ଏକା ମାଡରେ ଭାଗ୍ ସେଠାରୁ । ବାଟଯାକ

ଘରୁଥାଏଁ ଶୃଙ୍ଖଳ ତ ମନ୍ଦ ନୁହେଁ । ତଥାପି ମିଲଟାରୀ ବାଲଙ୍କୁ ସମସ୍ତେ ଘୃଣା ଚକ୍ଷୁରେ ଦେଖନ୍ତି—ତା'ର କାରଣ ଅବଶ୍ୟ ସେତେବେଳେ ଆମେଥିଲୁ ପରାଧୀନ—ଏବଂ ପରାଧୀନତାରୁ ମୁକ୍ତିର ପନ୍ଥା କଥା ନ ଭାବ ଲୋକେ କେବଳ ସମସ୍ତଙ୍କୁ ସମାଲୋଚନା କରୁଥାନ୍ତି । ଗୋରାଙ୍କର କୁକୁର ଇତ୍ୟାଦି, ଇତ୍ୟାଦି । ଯାହା ହେଉ, କାମ କରିବାକୁ ପଡ଼ିବ ଏବଂ ଖଟି ଖଟି ସବୁ ନିଜ ହାତରେ ଗଢ଼ିଲେ, ନିଜ ଗୋଡରେ ଛିଡା ହେଲେ ଆପେ ଆପେ ସ୍ୱାଧୀନତା ଆସିଯିବ —ଅନ୍ତତଃ ସେଇଆ ମୋର ନିଜର ଭାବନା ଥିଲା ଏବଂ ସେହି ଭାବନା ନେଇ ମୁଁ ମିଲଟାରୀରେ ଢୁକି ଥିଲି, ଏବଂ ସେହି ହେତୁରୁ ଲୋକଙ୍କ ସମାଲୋଚନାକୁ ଭ୍ରୂକ୍ଷେପ କରୁ ନ ଥିଲି । କୁଲ୍'ର ଜଣେ ଓକିଲ ଶ୍ରୀମାନ ଦେଶାଇଙ୍କ ସଙ୍ଗରେ କଥା ହେଉଥାଏ ସେଦିନ । ସେ ଆମର କ୍ୟାମ୍ପ ପାଖରୁ ପ୍ରାୟ ୬୦୦ ଗଜ ଦୂରରେ ରହୁଥାନ୍ତି ।

ମୁଁ ସନ୍ଧ୍ୟାବେଳେ ବୁଲୁଥାଏ । ସେ ପାଖରେ ସେ ଇଂରାଜୀରେ ତାଙ୍କର ଜଣେ ବନ୍ଧୁଙ୍କୁ କହୁଥାନ୍ତି, ମିଲଟାରୀ ଲୋକ ଗୁଡ଼ାକ ଖରାପ Dogs of Britishers. ମୁଁ ଶୁଣି ସମ୍ଭାଳି ନ ପାରି ଗଲି ତାଙ୍କ ପାଖକୁ ଏବଂ ଇଂରାଜୀରେ ପଚାରିଲି—ଏପରି ଭାଷା କାହିଁକି ବ୍ୟବହାର କଲେ ବୋଲି । ସେ ହଠାତ୍ ଜାଣି ପାରିଲେ ମୋତେ ଇଂରାଜୀ ଜଣା । ମୋ'ର ପୋଷାକ ଦେଖି ସେ ଟିକିଏ ଶଙ୍କିଗଲା ପରି କହିଲେ, ମୁଁ ତ ଆପଣଙ୍କୁ କହିନି ।

କହିଲି, ମୋତେ ନ ହେଲେ କ'ଣ ହେଲା, ଆମ ମିଲଟାରୀ ଜାତିଟାକୁ କହିଲେ ! ତା ପରେ ହଠାତ୍ କଥାର ସୁଅ ବଦଳାଇ ପଚାରିଲେ, "ଆପଣଙ୍କ ଘର କେଉଁଠି ?"

କହିଲି, "ଓଡ଼ିଶାରେ" ।

"ଆରେ—ଆସନ୍ତୁ ଆସନ୍ତୁ ମୋ ସଙ୍ଗରେ" ଟିକିଏ ବସି କଥାବାର୍ତ୍ତା କରିବା । ଆପଣ ଅନ୍ୟ ପ୍ରଦେଶର ଲୋକ । ମୁଁ ସ୍ଥାନୀୟ ସିପାହୀ ମାନଙ୍କୁ କହୁଥିଲି । ସେମାନେ ବଡ଼ ଖରାପ ଦୃଷ୍ଟିରେ ପରର ଝିଅ ବୋହୂଙ୍କୁ ଆଖି ପକାନ୍ତି ଏବଂ ନାନା ପ୍ରକାର ଅଶ୍ଳୀଳ କଥା କହନ୍ତି । ଏହା ପରେ ତାଙ୍କ ସହ ବହୁ ପ୍ରକାର ଗପସପ ଆଲୋଚନା ହେଲା ।

ମୁଁ କହି ଚାଲିଲି "ଆଜି ମୋତେ ୨୦-୨୫ ଦିନ ହେବ ମୁ ଫୌଜରେ ଭର୍ତ୍ତି ହୋଇ ରୁଟିନ୍ ବନ୍ଧା କାମ ଓ ଟାଇମ୍‌ରେ ବ୍ୟତିବ୍ୟସ୍ତ ହୋଇପଡୁଛି । ଆମର ସମାଜ ଅନ୍ୟ ରକମରେ ଗଢ଼ା । ସେଥିଯୋଗୁଁ ଆପଣଙ୍କ ଆଖିକୁ ସବୁ ଖରାପ ଦେଖାଯାଉଛି । ଦେଖନ୍ତୁ ମୋତେ ମୋଟେ ଅଠର ବର୍ଷ, ଘରେ ମୋର ୮୦-୯୦ ଏକର ଜମି ଅଛି । ମୋର ବାପା ଏବଂ ଦାଦା ଦୁଇଜଣ ଓକିଲ । ଆମେ ରାଜବଂଶୀୟ । ରଜାଘରୁ ଖଞ୍ଜା ଟଙ୍କା ପାଉଛୁଁ । ମୋର ଭାଇ ଭଉଣୀ ବି ଅଛନ୍ତି । ଧରନ୍ତୁ ମୁଁ କର୍ତ୍ତବ୍ୟର ତାଡ଼ନାରେ ହେଉବା ଅନ୍ୟ କୌଣସି କାରଣରୁ ହେଉ ମିଲିଟାରିରେ ପଶିଚି ଏବଂ ମୁଁ ଅନାଇ ଦେଲି ଆପଣଙ୍କ ଝିଅ କି ସ୍ତ୍ରୀଙ୍କୁ । ସେଇଟା ବହୁ ସ୍ମୃତି, ବହୁ ଭାବନାର ପ୍ରକାଶ ହୋଇପାରେ । ଖରାପ ଲୋକ ଅଛନ୍ତି । ସେମାନେ ମିଲିଟାରିରେ ବି ଖରାପ, ସିଭିଲ ଜୀବନରେ ବି ଖରାପ । କିନ୍ତୁ ସମସ୍ତଙ୍କ ଦୃଷ୍ଟିଟା ସବୁବେଳେ ଖରାପ ନୁହେଁ । ଏକ ଯାନ୍ତ୍ରିକ କଠୋର ବ୍ୟବସ୍ଥା ଭିତରେ ଅନେକଙ୍କର ବିକୃତି ଦେଖା ଦିଏ । ବିଶେଷକରି ଯୁଦ୍ଧ ଇତ୍ୟାଦି ବେଳେ । ତା ଅର୍ଥ ନୁହେଁ ଯେ, ସେମାନେ ସବୁ ଖରାପ । ତା ଛଡ଼ା ଏଇ ଗାଁ ଗହଳିର ଲୋକ । ସେମାନେ ସବୁ ଅଶିକ୍ଷିତ, ମୂର୍ଖ, ପେଟପାଇଁ ମିଲିଟାରିରେ ଅଛନ୍ତି । ଆପଣ ମାନଙ୍କ ପରି ସହର ଚଳିଆ ଶିକ୍ଷିତ ଲୋକମାନେ ଯେଉଁ ସଂସ୍କୃତି ତାଙ୍କୁ ଦେଇଚନ୍ତି, ସେମାନେ ସେଇଆ କରୁଚନ୍ତି । ତାଙ୍କୁ ଘୃଣା ନ କରି ସ୍ନେହ କରନ୍ତୁ । ସବୁ ଦେଖିବେ ତା ଠାରେ ଓଲଟା । ଅବଶ୍ୟ କେତେକ ଅନ୍ୟ ପ୍ରକାର ହୋଇ ପାରନ୍ତି । କିନ୍ତୁ ସମସ୍ତେ ନୁହଁ ।

ସେ ଖୁବ୍ ଭଦ୍ରଭାବରେ କଥାବାର୍ତ୍ତା କରି ବାରଣ୍ଡାକୁ ଉଠିଲେ ଏବଂ ମୁଁ' କଫେ ପିଆଇଲେ । ସେହିଦିନ ଠାରୁ ବମ୍ବେରେ ଜଣେ ବନ୍ଧୁ ପାଇଲି ଏବଂ ମୋର ବଳକା ସମୟ ଠିକ ଠିକଏ ଭଲ କଟିବ ବୋଲି ଭାବିଲି । ମିଲିଟାରି ଜୀବନର ଶୃଙ୍ଖଳିତ ବ୍ୟବସ୍ଥା ଭିତରୁ କିଛି ସମୟ ପାଇଁ ମୁକ୍ତି ମିଳିଲେ ହୃଦୟ ଖୋଲି ଜଣେ ଅନ୍ତରଙ୍ଗ ବନ୍ଧୁ—ପଲ୍ଲୀ ଜୀବନର ବହୁ ମଧୁର ସ୍ମୃତି, ବିଗତ ସମୟର ସରଳ ସହଜ ଜୀବନ ଯାତ୍ରାର ରୋମାଞ୍ଚ, ଏ ସବୁ ପଖାଳି ନେଲେ ଦେହ ମନ ହାଲୁକା ହୁଏ—କଠୋର-

ତାଙ୍କୁ ଗ୍ରହଣ କରନେବା ପାଇଁ ଯେଉଁ ଯନ୍ତ୍ରଣା ଅବଶ୍ୟମ୍ଭାବ, ସେ ଯନ୍ତ୍ରଣା ସାମଗ୍ରିକ ଭାବରେ ଲାଘବ ହୁଏ । ମୁଁ ସେ ଦିନ ଆଶ୍ୱସ୍ତ ହେଲି, ଇମିତ ଏକ ବନ୍ଧୁତାର ଆଭାସ ପାଇ ।

ଆଜ ଲେଖିଲାବେଳକୁ ରେଡ଼ିଓରେ ଶୁଭୁଛି "ମ୍ୟେ ବମ୍ବେ ମେରୀ ଜାନ୍ ।" ମନେ ପଡ଼ିଗଲା ସେ ଦିନର କେତୋଟି କଥା— ବମ୍ବେରେ ଥାଏ । ଦିନେ ଏକ ଟାକ୍ସିରେ ବସି ମୁଁ ଯାଉଥାଏ, ମିଲିଟାରୀ ପୋଷାକ ନ ଥାଏ ଦେହରେ । ହିନ୍ଦୀରେ କଥା ହେଉଥାଏ—ଭିକାଣ୍ଡି ରାସ୍ତାରେ ଚାଲ ଥାଉଁ । ଜଣେ ଭଦ୍ରଲୋକ ସଙ୍ଗରେ ଜଣେ ଭଦ୍ର ମହିଳା ଓ ଗୋଟିଏ ଛୋଟ ପିଲାକୁ ଧରି ଟାକ୍ସି ଅଟକାଇଲେ । ବସିଲେ ସେ ଦୁଇଜଣ ଓ ପିଲାଟି ପଛ ସିଟ୍‌ରେ । କିଛି ସମୟ ପରେ ସାନ ପିଲାଟି କହିଲା ହିନ୍ଦୀରେ ।

"ବାବା ! ମା' ହାସପାତାଲରେ ଅଛି । ତାଙ୍କୁ ଧରି ଆସିଥିଲେ ତ ଭଲ ହୋଇ ଥାଆନ୍ତା । କେତେ ଜାଗା ଆମେ ବୁଲିଲେ, ମା' କେତେ ଖୁସି ହୋଇଥା'ନ୍ତା !"

ଏତକ ଶୁଣିବାରୁ ଜାଣିଲି ଭଦ୍ରମହିଳାଟି ତାଙ୍କର ସ୍ତ୍ରୀ ନୁହନ୍ତି । ଏତିକିରେ ତେଣେ ଡ୍ରାଇଭରଜୀ ତା ମୁଣ୍ଡ ଉପରେ (ଗାଡ଼ିରେ) ଥିବା ଦର୍ପଣଟାକୁ ଟିକିଏ ବାଗେଇ ଦେଲା । ତା'ପରେ ଭଦ୍ରଲୋକ ଇଂରାଜୀରେ କଥା ଆରମ୍ଭ କଲେ—

"ଚାଲ ଆଜ ଡିନର ଖାଇ ଚୌପାଟୀ ପଟକୁ ଯିବା ଏବଂ ସେଠାରେ ଘଣ୍ଟାଏ, ଦୁଇ ଘଣ୍ଟା କଟାଇବା ।"

ଭଦ୍ରମହିଳା କହିଲେ "ଆଗରେ ଯେଉଁ ବାବୁଟି ବସିଛି ସେ ଇଂରାଜୀ ବୁଝୁଥିବେ ଯେ ।"

"ନା ସେ ଇଂରାଜୀ ଜାଣି ନ ଥିବ, ଡ୍ରାଇଭରର ସାଙ୍ଗ କି ତାର ହେଲ୍‌ପର ହୋଇଥିବ ।"

ମୁଁ ମନେ ମନେ ହସୁଥାଏ—ସରଦାରଜୀ ମୋ ଆଡ଼କୁ ଅନେଇ ମୁରୁକି ମୁରୁକି ହସୁଥାଏ ବି ।

ଭଦ୍ରମହିଳା କହିଲେ "ନା, ଡେରି ହୋଇଯିବ—ଆଜି ଯିବା ନାହିଁ ଅନ୍ୟଦିନେ ଯିବା । ତୁମ ପିଲା ବି କାନ୍ଦିବ ।" ଏତିକି କହି ଭଦ୍ରମହିଳା ଆଉଜି ପଡ଼ିଲେ ଭଦ୍ରଲୋକଙ୍କ ଗୁଡିରେ—ଦର୍ପଣରେ ସବୁ ଦିଶୁଥାଏ । ମୁଁ କେବଳ ମିଲିଟାରୀ କମାଣ୍ଡ "Look to the Front"କୁ ମାନୁଥାଏ—ମନେ ମନେ ଭାବୁଥାଏ, ମଟର ଭିତରେ ତ "କେଦାର ଗୌରୀ ।" ଗୁଲୁ ଆଉ କେତେବାଟ ଗଲେ ଆଉ କଣ ଦେଖିବା ଓ ଶୁଣିବା । ପିଲାଟି କାନ୍ଦୁ ହଠାତ୍ କାନ୍ଦିଲା ଏବଂ କହିଲା, "ବାବା ! ଘରକୁ ଯିବା ।" ବହୁତ ଅଥୟ ବାବା ତାପରେ ଦେଲେ ଗୋଟାଏ ଗୁପୁଡ଼ା ପିଲାର ଗାଲରେ । ୩।୪ ବର୍ଷର ପିଲା । ଚିତ୍କାର କରି କାନ୍ଦିଲା । କଣ କହିବାକୁ ଯାଉଥିଲି । ପୁଣି ନ କହି ଭାବିଲି ଭଦ୍ରମୁଖାଧାରୀ ଭଣ୍ଡ—ଆଉ ମାରିଲେ ଦେଖାଯିବ । ଏତିକିରେ ଗୋଟିଏ ରେଷ୍ଟୁରେଣ୍ଟ ପଡ଼ିଲା ଏବଂ ସେ ଗାଡ଼ି ଅଟକାଇ ପଇସା ଗଣି ଦେଲେ ।

ମୁଁ କହିଲି ଇଂରାଜୀରେ, ଆପଣଙ୍କ ପ୍ରେମରେ ଯଦି ବାଧା ଦେଲା ପିଲାଟାକୁ ତା' ମା' ପାଖରେ ହାସପାତାଲରେ ତ କେତେଘଣ୍ଟା ପାଇଁ ଗୁଡ଼ି ଦେଇ ଆସିଥିଲେ ଚଳିଥାନ୍ତା । ତାକୁ କାହିଁକି ମିଛରେ ମାରିଲେ ? ସେତିକିରେ ସେ ଦୁଇଜଣଙ୍କ ମୁହଁ ଝାଳେଇ ଗଲା ଏବଂ ମୁହଁଟାଣ କରି ଭଦ୍ରଲୋକ କହିଲେ—

"ତୁମର ସେଥିରେ କଣ ଅଛି ?"

ମୁଁ ଚଟ୍‌କରି ମୋ ପକେଟରୁ ମୋର ପରିଚୟ ପତ୍ର (Identity card) ଖଣ୍ଡି ବାହାର କରି ତାଙ୍କୁ ଦେଖାଇଲି ଏବଂ କହିଲି "ବିଶେଷ କଥା କୁହନ୍ତୁ ନାହିଁ । ଗଣ୍ଡଗୋଳ ହୋଇ ପାରେ ।"

ସରଦାରଜୀ କହିଲା, " ଟ୍ରେଡ଼ଏ ବାବୁଜୀ, ୟେ ବମ୍ବେଇ ହୈ ।

ତାପରେ ଟାକ୍‌ସି ଗୁଲିଲା । ସରଦାରଜୀ ପୁଣି କହି ଗୁଲିଲେ—ଆଖି ଏପରି ହଜାର ହଜାର ଘଟଣା ଦେଖି ଦେଖି ମୋର ବାଳ ପାଚି ଗଲାଣି । ଏଗୁଡ଼ାକ ସବୁ ଏଠାରେ ନିତି ଦିନିଆ କଥା ଏବଂ

ଏ ସବୁ ତଥା କଥିତ ଶିକ୍ଷିତ ସମାଜର ଗୋଟିଏ ଗୋଟିଏ ଦୈନନ୍ଦିନ ଘଟଣା ବଡ଼ ବଡ଼ ସହର ମାନଙ୍କରେ ।

ମୋରଥିଲା ବେଶୀ ଝୁଙ୍କ ସିନେମା ଦେଖିବା ସେତେବେଳେ । ମନେ ଅଛି, କଲେଜରେ ପଢୁଥିବା ବେଳେ "କଂଗନ" ଫିଲିମ ୧୬ଥର ଓ ଶାପମୁକ୍ତ ୧୧ଥର ଦେଖିଛି । ଇଚ୍ଛାହେଲା ବମ୍ବେରେ ଯେତେବେଳେ ଅଛି ଗୋଟିଏ ଷ୍ଟୁଡ଼ିଓ କପର ଦେଖନ୍ତି । ବଡ଼ କଷ୍ଟରେ "ମୋହନ ଷ୍ଟୁଡିଓ" ଦେଖିବାର ସୁଯୋଗ ମିଳିଲା । ଅବଶ୍ୟ ୧୯୪୬ ପରେ ଆଉ କୌଣସି ଷ୍ଟୁଡିଓ ଦେଖିନି । ଆଜି ଷ୍ଟୁଡ଼ିଓର ଅବସ୍ଥା କଣ ବଦଳି ଥିବ କେଜାଣି, କିନ୍ତୁ ସେତେବେଳେ ଦେଖି ଜାଣିଥିଲି, ଖଣ୍ଡେ ଖଣ୍ଡେ ଗ୍ରେଟ କାଠର ବଗିଗୃ, କେତେ ଗୁଡ଼ଏ କୃତ୍ରିମ ସଜାଫୁଲ ଗଛ ଓ ହୋଟନ, ଗ୍ରେଟିଆ ଫଲ୍ସ ଫାଉଣ୍ଟେନ, ଚୁସିକୋଣିଆ ବଡ଼ ପାଣିକୁଣ୍ଡ, ଦୁଇ ଚୃବେଟି ଜେଫି ବନ୍ଧା ଫାଟକ, ଗୋଟିଏ ଧୂଇଟି ଗେଟ୍, ଦୁଇ ତିନି ବଖରା ସାଜ ସଜାଘର । କେତେ ଗୁଡ଼ଏ ବଡ଼ ବଡ଼ ଗଛ (ବିଶେଷ ଭାବେ ଆମ୍ବଗଛ)—ଖଣ୍ଡିଏ ଲନ୍—ତାର ଭିତରେ ଅଧିକାଂଶ ବଡ଼ ବଡ଼ କଥା ଓ ବଡ଼ ବଡ଼ ଦୃଶ୍ୟର ଫଟୋ ଉଠାହୁଏ ।

ବମ୍ବେରେ ଯେତେବେଳେ ଅଛି ସବୁ ଜିନିଷ ଦେଖିବାର କଥା—ବହୁତ ଲେଖକ, ଭ୍ରମଣକାରୀ ବମ୍ବେର ଦର୍ଶନୀୟ କଥାମାନ ଲେଖିଛନ୍ତି—ତା'ଛଡ଼ା ସେ ସବୁ ଗାଇଡ ବହିରୁ ମିଳିବ । ମୋର କିନ୍ତୁ ନିଜର ଅନୁଭୂତି ଗୁଡ଼ିକ ପାଠକମାନଙ୍କ ଆଗରେ ରଖିବାର ଉଦ୍ଦେଶ୍ୟ—ସେ ହୋଇପାରେ କାହାକୁ ଖରାପ ବା କାହାକୁ ଭଲ ।

ଦିନେ ଇଚ୍ଛାହେଲା, "ତାଜମହଲ" ହୋଟେଲରେ ଖାଇବି, ସେତେବେଳେ ଭାରତର ସବୁଠାରୁ ଉତ୍କୃଷ୍ଟ ହୋଟେଲ । ଗଲିଲି ଦିନେ ସେ ମୋର ଜୀବନର ପ୍ରଥମ ଇଂରାଜୀ ପରିଚାଳିତ ହୋଟେଲକୁ ଢୁକିବା । ପୂରା ଲାଲବନାତ ରଙ୍ଗ ଉପରେ ସୁନେଲି ଜରିକରା ପୋଷାକ ପିନ୍ଧା ବୟଠାରୁ ସଲାମ ପାଇ ମୋ ମନ ଖୁସି । ଧାରଣା ଥିଲା ଯେ ଖାଲି ରାଜା ମହାରାଜାମାନେ ବହୁତ ଦାମିକା ପୋଷାକ ପିନ୍ଧନ୍ତି । କିନ୍ତୁ ଏଠାକାର ବଅରର ଓ ଓ୍ୱେଟରମାନଙ୍କୁ ଦେଖି ସେ ଧାରଣା ବଦଳି ଗଲା ।

ମନେ ପଡ଼େ ଚୌପାଟି କଥା । ପ୍ରକୃତରେ ତାର ନାମ ଚୌପାଟି ନରଖି "ବହୁପାଟି" ରଖିଥିଲେ ଭଲ ହୋଇଥାନ୍ତା । ଏତେ ପ୍ରକାର ଖାଦ୍ୟ ଜିନିଷ ବିକନ୍ତି ଯେ ତାର ସୀମା ନଥାଏ । ଦିନେ ଦିନେ ଲୋକ ମାନଙ୍କର ଭିଡ଼ଠୁ ପ୍ରକାରଙ୍କ ଭିଡ଼ ବେଶୀ । ଯା ମୁହଁରେ ଦେଖିବ ଖାଇବା ଜିନିଷ କିଛି ନା କିଛି । ପାଗଳଗୁଡ଼ିକ କିନ୍ତୁ ସେଠାରେ ଖାଇବାକୁ ବେଶ୍ ପାଆନ୍ତି । ମୁଁ ବାଲି ଉପରେ ବସିଥାଏ, ଦଳେ ଯୁବକ ଯୁବତୀ ମୁହଁରେ ଗୋଟିଏ କଣ ଆଇସ୍କ୍ରିମ ନେଇ ପାଣି ଭିତରେ ପଶିଲେ । ( ଯେପରି କି ଜଳ ବିହାର ପରେ କି ପୂର୍ବରୁ ନଖାଇ ଥିଲେ ତାଙ୍କର ଜୀବନ ଚାଲି ଯାଉଥିଲା ) ପ୍ରେମ ହେଲା ଫେସନ ।

କ୍ଲବ୍‌ରେ ଥିଲୁ । ହଠାତ୍ ଦିନେ ଖବର ପାଇଲୁ "ତୁମ ସେକ୍‌ସନ ଇରାକ ଯିବାପାଇଁ ତୟାର ରୁହ ।" ଆନନ୍ଦିତ ହେଲି । କାରଣ ଖୁବ୍ ଶୁଣିଥିଲି ଏବଂ ପଢ଼ିଥିଲି ବହୁତ ପାରସ୍ୟ ଓ ଇରାକ ଦେଶରେ କଥା । ଯିବି ସେଠାକୁ, ଦେଖିବି କିପରି ସେ ଦେଶ । ସନ୍ଧ୍ୟା ବେଳକୁ ରୋଲ କଲ୍‌ରେ କୁହାଗଲା 'ନିଜ ନିଜର କିଟ୍ ବ୍ୟାଗ୍ ଦେଖ । ଯେଉଁ ଜିନିଷ ଅତି ପୁରୁଣା ହୋଇ ଯାଇଚି କିମ୍ବା ଛିଡ଼ି ଯାଇଛି ତାକୁ ବଦଳାଇ ନିଅ । ଆମର ସେକ୍‌ସନ ବର୍ତ୍ତମାନ ଓଭରସି ( Over sea ) ଯିବ'—ସେହି ଅନୁଯାୟୀ କାମ ହେବ—

ତହିଁ ଆରଦିନ ସକାଳୁ ମେଡିକାଲ୍ ପରେଡ ହେଲା । କମ୍ପାନୀର ଡାକ୍ତର ସମସ୍ତଙ୍କୁ ପରୀକ୍ଷା କଲେ । T. A. B. C ଦିଆହେଲା ସମସ୍ତଙ୍କୁ । ସେତିକିରେ ବହୁତ ଭାଗ ଲୋକ ମନ ଖରାପ କଲେଣି । କିନ୍ତୁ ମୋର ମନ ଖୁସି—ଆନ୍ୟମାନେ କହିଲେ, "ବାବୁ ଆପଣ ଟୋକା ଲୋକ କିଛି ଚିନ୍ତାନାହିଁ—ଆମେ କିନ୍ତୁ ପିଲା ଛୁଆଙ୍କୁ ଛାଡ଼ି ସମୁଦ୍ର ଡେଇଁ କେଉଁ ଅପନ୍ତରକୁ ଯିବୁ ଏବଂ ବଞ୍ଚିବୁ କି ମରିବୁ ଜଣା ନାହିଁ । ଏସବୁ ଭାବି ମନ ଖରାପ ଲାଗୁଚି ।" ପ୍ରକୃତରେ ଆଜି ମୁଁ ଯେତେବେଳେ ନିଜେ ପରିବାରର ଆକର୍ଷଣ ପାଇଚି, ତାର ଅର୍ଥ ବୁଝିଚି ।

ଡାକ୍ତର ପରୀକ୍ଷା ସରିବା ପରେ ହୁକୁମ ହେଲା, 'ତୁମର ବସ୍ତାବିସ୍ତରା ପଠାବାନ୍ଧ, ଟ୍ରକ ଆସି ଗଲାଣି । ଏ ସବୁ କାରବାର ଖାଲି ଫୋନ୍

ଉପରେ ହେଉଥାଏ ଏବଂ ଏତେ ଚଞ୍ଚଳ ହେଉଥାଏ ଯେ, ଯେପରି କୌଣସି ମେସିନ କାମ କରୁଛି ।

ସାଧାରଣ ଜୀବନରେ ଅଫିସର ଯେଉଁ ଲେଖା ଲେଖିର ଫାର୍ମ ତାହା ମୋ'ନେ ନାହିଁ । କଥା ଉପରେ ବେଶୀ ବିଶ୍ୱାସ । ଟ୍ରକରେ ବସିଲୁ ଦିନ ଗୋଟାଏ ବେଳକୁ ଏବଂ ଟ୍ରକ ଆଣି ଓହ୍ଲାଇ ଦେଲା ଆମକୁ ସାନ୍ତାକ୍ରୁଜରେ । ଓହ୍ଲାଇ ପୁଣି ଟେଣ୍ଟ ପିଟା ଚାଲିଲା ।

'କଓ ! ଇସାକ୍ କଣ ବମ୍ବେ ଭିତରେ କି ? ଆମ ଅଫିସର କମାଣ୍ଡିଙ୍ଗ୍‌ଙ୍କୁ ପଚାରିବାରେ ଯେ କହିଲେ ସେ ବି ନିଜେ ଜାଣନ୍ତି ନାହିଁ । ତାଙ୍କୁ କେବଳ ଅର୍ଡର ହେଲା ସାନ୍ତାକ୍ରୁଜରେ ଯାଇ କ୍ୟାମ୍ପ କର । ଅଗତ୍ୟା ରହିଲୁ ସେଠାରେ । ୪ ଦିନ ପରେ ଖବର ମିଳିଲା ଇରାକ ଯିବାର ନୋହିଲା, ଆମକୁ ଦକ୍ଷିଣ ପୂର୍ବ ଏସିଆ ପଟକୁ ଯିବାକୁ ହେବ । ସବଲ କେତେ ଦିନ ପୁଣି ରହିବାକୁ ହେବ ବମ୍ବେରେ । ମନ୍ଦ କଣ ?

ସାନ୍ତାକ୍ରୁଜ ପାଖରେ ହାବାଇଆଡ଼ା ( ଉଡ଼ାଜାହାଜ ଷ୍ଟେସନ ) ଥାଏ ଓ ମିଣ୍ଟୋ ଫ୍ୟାକ୍ଟରୀ ଥାଏ । ଭୁଲ ହେଲା ସେ ଗୁଡ଼ିକ । ଏ ତରଫରେ ବହୁତ ତରୁଣୀ ମିଣ୍ଟୋ ଫ୍ୟାକ୍ଟରୀରେ କାମ କରନ୍ତି । ଦିନେ ପ୍ରାୟ ୧୫ ଜଣ ତରୁଣୀ ଫ୍ୟାକ୍‌ଟରୀରୁ ଫେରୁ ଥାଆନ୍ତି । ଆମ ସେକ୍‌ସନର ଜଣେ ସିପାହୀ ସଙ୍ଗେ କଣ ଗୋଳମାଳ ହେଲା । ହଠାତ୍ ୧୫ ଜଣ ଯାକ ତରୁଣୀ ଆମ ଅଫିସ ଭିତରେ ହାଜର ।

କହିଲେ "ଭଦ୍ରାମି ଆପଣ ମାନେ ଶିଖନ୍ତୁ । ଆପଣଙ୍କ ଲୋକ ଆମସଙ୍ଗରେ ଅତି କଦର୍ଯ୍ୟ ବ୍ୟବହାର କଲେ ।"

ମୁଁ ହଠାତ୍ କହିଦେଲି ଆମେ ସବୁ ଭଦ୍ରଥିଲୁ—ସାନ୍ତାକ୍ରୁଜକୁ ଆସି ଅଭଦ୍ର ହୋଇଗଲୁଁ । ଦେଖ ମଜ୍ଜା ଏତିକରେ, ତେବେ ଗୋଳମାଳ ନ ବଢ଼ାଇ ତାଙ୍କୁ ସାନ୍ତ୍ୱନାବାଣୀ ଶୁଣାଇ କହିଲି "Forgive and forget" ତାପରେ ତରୁଣୀ ନେତ୍ରୀ ଜଣକ କହିଲେ "Thank you very much. We will meet again" କହିଲି Thanks very kind of you" ଏମାନଙ୍କର ବିଶେଷତ୍ୱ—ନା ଏମାନେ ପୂରା ପୂରି ଭାରତୀୟ ନା ଇଂରେଜ । ନିଜେ କଲି ହେଲେବି

ଭଲ ଲୋକଙ୍କ ପ୍ରତି ମମତା ନ ଥାଏ, ଗୋରାଙ୍କ ସଙ୍ଗେ ବେଶୀ କାରବାରି ଏମାନଙ୍କର—ତାଙ୍କ ହସ, ରହସ୍ୟ, Companion ship (ବୁଲସାଥୀ) ସବୁ ଥାଏ ।

୨।୪ ଦିନ ପରେ ସାନ୍ତାକ୍ରୁଜ ମାର୍କେଟ ଭିତରକୁ ଯାଇଚି, ଦେଖିଲି ସେ ଦିନର ତରୁଣୀ କେବୀଟି ଗୋଟିଏ ପାଣି ମାଠିଆ ଧରି ଚାଲିଚି । ମୋତେ କଟରି ଟିକିଏ ଆଶ୍ଚର୍ଯ୍ୟ ଲାଗିଲା—ବାହାର ପରିପାଟୀ ଲିପ୍‌ଷ୍ଟିକ୍, ଗାଉନ, ହାଇହିଲ ଯୋତାକୁ କିପରି ଏହା ଖାପଛଡ଼ା ଦେଖା ଦେଲା । କଦମ ଫୁଲିଆ ବାଳ ଉପରେ ସିଲକ୍ ସ୍କାର୍ଫ ତା ଉପରେ ମାଠିଆ—ଟିକିଏ ଭାବି ତା ପାଖକୁ ଗଲି ଏବଂ ପଚାରିଲି—

"ଏଇଠି ବୋଧହୁଏ ଆପଣଙ୍କ ଘର ?"

ସଙ୍ଗେ ସଙ୍ଗେ ପାଣି ମାଠିଆ ରଖି ସେକ୍‌ହ୍ୟାଣ୍ଡ—"ଆସନ୍ତୁ ଆସନ୍ତୁ, ମୋ ବାପା, ମା'ସଙ୍ଗେ ପରିଚୟ କରାଇ ଦେବି । ଗଲି ପଛେ ପଛେ । ଖୁବ୍ ବେଶୀ ହେଲେ ଆମ ପଟର କୁଡ଼ିଆ ପରି ଘର ଖଣ୍ଡେ । ଭିତରଟି ବେଶ୍ ପରିଷ୍କାର—ଦୁଇଟି ଖଟ ପଡ଼ିଚି, ଦୁଇଖଣ୍ଡ ଟୁଲ । ସେ ହୁଏ ଟେବୁଲ ଓ ଚୌକି । ଉଭୟ ମଝିରେ ଖଣ୍ଡେ ଦାମିକା କନାର ଫୁଲ କରା ପରଦା । ବାପା ମା ତା'ର ମୋତେ ଦେଖି ଖୁସୀ ହେଲେ । କରମର୍ଦ୍ଦନ ପରେ "ବେଜ କହୁଥିଲା—ଆପଣ ଭାରି ଭଦ୍ରଲୋକ । ଆପଣଙ୍କର ସିପାହୀମାନେ ଭାରି କାନ୍ତୁ ଖରାପ ।"

କହିଲି "ଗ୍ରଡନ୍ତୁ, କେତେବେଳେ ପାରିପାର୍ଶ୍ଵିକ ଅବସ୍ଥାରେ ପଡ଼ି ମଣିଷ କଣ ଟିକିଏ କହିଦିଏ ବା କରିଦିଏ ।" ବୁଝିଲି ସେମାନେ ମାଛ ଧରନ୍ତି । ଝିଅ ମିଣ୍ଟୋ ଫ୍ୟାକ୍ଟରୀରେ କାମ କରେ ଏବଂ ସେ ପଡ଼ାରେ ଅନେକ ମାଛ ଧରି ପେଟ ପୋଷନ୍ତି । ଗରିବ ହେଲେ ବି ଏ ଆଡ଼ର କେଉଁଠ ସାହିପରି ଅପରିଷ୍କାର ଓ ଗନ୍ଧ ନାହିଁ । କିନ୍ତୁ ଗୋରା ମାନଙ୍କର ବାହାରଟାକୁ ଯେତେ ଚଞ୍ଚଳ ଅନୁକରଣ କରନ୍ତି ଭିତରଟା ସେତେ ନୁହେଁ । ନିଜକୁ ଭାରତୀୟ ବୋଲି କହିବାର ଗର୍ବ ନ ଥାଏ । କାହିଁକି କେଜାଣି ସେଠାକାର ସମାଜର ଚଳନ ନା ପ୍ରକୃତ ଶିକ୍ଷାର ଅଭାବ ବୁଝି ପାରିଲିନି, କେବଳ "ସ୍ୱେ ବୋମ୍ବେ ।"

ସାନ୍ତାକ୍ରୁଜରେ ରହିବାର ୬ ଦିନ ପରେ ଅର୍ଡର ହେଲା ଆମକୁ "ମାନମାଡ଼" ଯିବାକୁ । ମାନମାଡ଼ ବମ୍ବେ ପ୍ରଦେଶର ଗୋଟିଏ ବଡ଼ ରେଲୱେ ଷ୍ଟେସନ, ସେଠାରେ ବଡ଼ ସପ୍ଲାଇ ରିଜର୍ଭ ଡିପୋ ଅଛି । ସେଠାରେ ମୁଁ ଫିଲ୍‌ଡ ବେକେରୀ ସେକ୍‌ସନରୁ ୧୦୧ ସପ୍ଲାଇ କମ୍ପାନୀକୁ ବଦଳି ଆସିଲି । ସେଠାକୁ ଆସି ଆମ କମ୍ପାନୀର ପ୍ରଧାନ କାମ ହେଲା ଫିଲ୍‌ଡକୁ (ଯେଉଁଠାରେ ପ୍ରକୃତ ଯୁଦ୍ଧ ହୁଏ) ଗଲେ କେଉଁପରି ଭାବରେ କାମ କରିବାକୁ ହୁଏ ତାହାର ଶିକ୍ଷା ପାଇବା ସଙ୍ଗେ ସଙ୍ଗେ ନୂଆ ପ୍ରକାର ଯୁଦ୍ଧ କୌଶଳ ଶିକ୍ଷା ପାଇବା ।

ସେଠାରେ ହାତ ବୋମା (Hand grenade) କିପରି ଫିଙ୍ଗିବାକୁ ହେବ ଶିକ୍ଷା ଦିଆ ହେଉଥାଏ । ରୁଟ୍ ମାର୍ଚ୍ଚ ଠିକ୍ ସନ୍ଧ୍ୟାବେଳେ ଆରମ୍ଭ ହୁଏ । ସବୁ ଫିଲ୍‌ଡ଼ ଡ୍ରେସରେ ସଜ୍ଜିତ ହୋଇ କମାଣ୍ଡରର ପଛରେ ଚାଲୁ । ନିହାତି କମ୍‌ରେ ଦିନକୁ ୧୦।୧୫ ମାଇଲ୍ । ରୁଟ୍ ମାର୍ଚ୍ଚର ବିଶେଷତ୍ୱ ହେଲା ମୁହଁ ଯେଉଁଆଡ଼େ, ଚାଲିବ ସେ ଆଡ଼େ—ସାମ୍‌ନାରେ ଯାହା ପଡ଼ୁ ତାକୁ ଅତିକ୍ରମ କରି ଯିବାକୁହିଁ ହେବ, ସେ ହୋଇଥାଉ ପାହାଡ଼, ନଈ କି ନାଳ କି କଣ୍ଟାବଣ ।

ପ୍ରଥମ ଦିନ ଯେତେବେଳେ ରୁଟ୍ ମାର୍ଚ୍ଚରେ ଗଲି, ସେଦିନ ରବିବାର ଥିଲା । ସକାଳ ୮ଟା ସମୟରେ ବାହାରିଲୁ । ବନ୍ଧୁକଟି କାନ୍ଧରେ ପକାଇ ପ୍ରାୟ ୬ ମାଇଲ ଚାଲିବା ପରେ ମୁଁ ଅନ୍ୟମାନଙ୍କ ସଙ୍ଗେ ପାଦ ମିଳାଇ ଚାଲି ପାରିଲି ନାହିଁ । ଏ କାନ୍ଧରୁ ସେ କାନ୍ଧ ବନ୍ଧୁକ ବଦଳାଇ କାନ୍ଧ ପଚାଶ ହୋଇଗଲା । କୌଣସି ପ୍ରକାରେ କୁହାବୁହାରେ ତ ରକ୍ଷା ନାହିଁ । ସୁତରାଂ ବାଧ୍ୟ ହୋଇ ବାହାନା ଦେଖାଇ ଗୋଟିଏ ଗଛ ମୂଳରେ ବସିଲି । ଅନ୍ୟ ଜବାନମାନେ ଆଗକୁ ଚାଲିଲେ । ଭାବିଥିଲି ଏଇଠି ବସିବି, ଫେରିବା ରାସ୍ତାରେ ପୁଣି ମିଶି ଚାଲିବି । ଠିକ୍ ଏତିକି

ବେଳକୁ କମାଣ୍ଡ କମାଣ୍ଡର ଷ୍ଟାଫ କାର୍‌ରେ ବସି ଡାକର ଏବଂ ମୋତେ ଦେଖି କହିଲେ "ସର୍ଜେଣ୍ଟ କାହିଁକି ଏଠାରେ ?"

ମୋର ଅବସ୍ଥା ସେତେବେଳେ ଦଣ୍ଡା ଦକଡ଼ା । ହଠାତ୍ କହିଲି "ସାର୍ ମୋର ଗୋଡ଼ରେ ରକ୍ତ ପଶିଗଲା । ଚାଲି ପାରିଲି ନାହିଁ ।"

କର୍ଣ୍ଣେଲ ଗାଡ଼ିରୁ ଓହ୍ଲାଇ ମୋର ଗୋଡ଼କୁ ଛୁଇଁ, ଚାରିଥର ଟଣା ଓଟରା କରି ହାତ ଧରି ମଟରରେ ବସାଇଲେ ଏବଂ କହିଲେ "ତୁମ ଗୋଡ଼ ଭଲ ନ ହେବା ପର୍ଯ୍ୟନ୍ତ ତୁମକୁ ରୁଟ୍ ମାର୍ଚ୍ଚ ମାଫ୍ ।

ମୋ ନିଜ ବିବେକ ବିରୁଦ୍ଧରେ ମିଛ କହି ଅନୁତପ୍ତ ହୋଇଥିଲି । କିନ୍ତୁ ସେତେବେଳେ ଆଉ ଅନ୍ୟ ଗତି ନ ଥିଲା ।

ଆଉ ଦିନେ ସନ୍ଧ୍ୟାବେଳେ ରୁଟ୍ ମାର୍ଚ୍ଚ କରିଗଲୁ । କଟିକଟିଆ ଅନ୍ଧାର ରାତି—ମୁହଁକୁ ମୁହଁ ଦିଶୁ ନଥାଏ । ଯାଉଁ ଯାଉଁ ରାସ୍ତାରେ ପଡ଼ିଲା ଏକ ଗ୍ରେଟ କାଠର ପାହାଡ଼ । ତାକୁ ବଡ଼ କଷ୍ଟରେ ଅନ୍ଧାରରେ ହାମୁଡ଼ି କରୁଡ଼ି ହୋଇ ଉଠିଲୁ । ମୋର ଆଣ୍ଠୁ ଛିଡ଼ିଗଲା । ପାହାଡ଼ ପରେ ପଡ଼ିଲା ଗୋଟିଏ ନଈ । ନଈ ବୋଲି ଜାଣିନୁ, କ୍ରମେ ମୋର ବେକ ପର୍ଯ୍ୟନ୍ତ ପାଣିରେ ବୁଡ଼ିଲା । ଆଉ ବେଶୀ ପାଣି ନ ଥିଲା ନ ହେଲେ ଅବସ୍ଥା ଯେ କଣ ହୋଇଥାନ୍ତା କଳ୍ପନା ସାପେକ୍ଷ ।

ମାନମାଡରେ ଦୁଇମାସ ରହିଲା ପରେ—କମ୍ପାନୀ ଆସିଲା ପଞ୍ଜାବର ଫିରୋଜପୁର । ଏହା ସପ୍ଲାଇର ହେଡ଼କ୍ୱାଟର ଏବଂ ଟ୍ରେନିଂ ସେଣ୍ଟର (ବର୍ତ୍ତମାନ ପାକିସ୍ଥାନରେ) ଏହା ଏକ ମସ୍ତବଡ଼ ମିଲିଟାରୀ ଛାଉଣୀ । ଗ୍ରେଟ ସହରଟିଏ । ସେଠାରେ ପ୍ରାୟ ୧୫ ଦିନ ରହିଲା ପରେ ଆସିଲୁ "ଆମ୍ବାଲା" । ଆମ୍ବାଲା ବି ଗୋଟିଏ ମିଲିଟାରୀ ଛାଉଣୀ । ପାକିସ୍ଥାନ ପରେ ଏହାର ଗୁରୁତ୍ୱ ବର୍ତ୍ତମାନ ବଢ଼ି ଯାଇଛି । ଏଠାରେ ଗୋଟିଏ ଟ୍ରେନିଂ ପାଇଲୁ । ତାର ନାମ(Ghost) ଭୂତ ଟ୍ରେନିଂ ।

ଭୂତ ଟ୍ରେନିଂ ଅର୍ଥ—ସାଧାରଣତଃ ଭାରତୀୟ ସିପାହୀମାନେ ଗାଁ ଗହଳରୁ ଆସିଥାନ୍ତି ଏବଂ ଏମାନଙ୍କର ଶିକ୍ଷା ଖୁବ୍ କମ୍ । ଭୂତ ପ୍ରେତରେ ଏମାନଙ୍କର ବହୁତ ବିଶ୍ୱାସ । ଧରନ୍ତୁ ଅନ୍ଧାର ରାତିରେ ଜଣେ ସିପାହୀର କୌଣସି ଏକ ନିର୍ଜନ ଜାଗାରେ ଡିଉଟି ପଡ଼ିଲା । ଶତ୍ରୁକୁ ଜଗିବା

ବୁରେଥାଉ ଭୟରେ ତାର ହାର୍ଟଫେଲ୍ ହୋଇ ଯାଇପାରେ । ସାଧାରଣତଃ ଭୟ ଛଡ଼ାଇବା ପାଇଁ ଏପରି ଟ୍ରେନିଂ ଦିଆ ହୋଇଥାଏ । ଆଜିକାଲି ଏପରି ଟ୍ରେନିଂ ଅଛି କି ନାହିଁ ଜାଣେନା, କିନ୍ତୁ ଆମେ ଏ ଟ୍ରେନିଂ ୧୫ ଦିନ ସକାଶେ ପାଇଥିଲୁ । ନାନା ପ୍ରକାର ଅନ୍ଧ ବିଶ୍ୱାସ କିପରି ରହିତ ହେବ, ସେ ବିଷୟ ବତାଇ ଦିଆଯାଏ ଏବଂ ଶେଷ ଦିନ ପ୍ରାକ୍‌ଟିକାଲ୍ ହୁଏ ।

ଟ୍ରେନିଂ ବଡ଼ ମଜ୍ଜାର କଥା—ଆମେ ୧୫ ଜଣ ଏ ଟ୍ରେନିଂରେ ଥିଲୁ ଗୋଟିଏ ଦଳରେ । ଆମ ଭିତରେ ତ୍ରାଭାଙ୍କୋରର ମିଃ ମେନନ୍ ବୋଲି ଜଣେ ଖୁବ୍ ମୋଟା ଭଦ୍ରଲୋକ ଥିଲେ । ଦିନେ ସନ୍ଧ୍ୟାବେଳେ ଆମକୁ କିଛି ନ କହି ଗୋଟିଏ ଟ୍ରକରେ ବସାଇ କ୍ୟାମ୍ପରୁ କିଛି ମାଇଲ ଦୂରକୁ ଅଣା ହେଲା । କଟିକଟିଆ ଅନ୍ଧାର, ମୁହଁକୁ ମୁହଁ ଦିଶୁ ନଥାଏ । ଟ୍ରକରୁ ଓହ୍ଲାଇ ଜଣ ଜଣକୁ କୁହା ହେଲା 'ଆଗକୁ ଚାଲ । ପଛକୁ ଫେରିବ ନାହିଁ । ପଡ଼ିଆର ଆରପଟେ ଜଣେ ଅଫିସର ଅଛନ୍ତି । ତାଙ୍କ ପାଖରେ ପହଞ୍ଚିବାକୁ ପଡ଼ିବ ।' ଚତୁର୍ଥ ବ୍ୟକ୍ତି ଥିଲେ ମିଃ ମେନନ୍ ମୋର ନମ୍ବର ପଞ୍ଚମରେ ।

ମୁଁ ଗଲି—ପ୍ରାୟ ଅଧଫର୍ଲଙ୍ଗ ଯାଇଛି କି ନାହିଁ, ମୋର ବାମପଟକୁ ଲେଖା ହୋଇଛି ଇଂରାଜୀରେ ଠିକ୍ ଯେପରି ସିନେମା ଘରେ ଲାଲ ଅକ୍ଷରରେ ଲେଖାଥାଏ "Do not look to the left."

ଏତିକି ପଢ଼ି ସେ ପଟକୁ ମୁହଁ କରିଛି କି ନାହିଁ, ବାଜିଲା ମୋ ଗାଲରେ ଗୋଟାଏ ବସ୍ତବଡ଼ ଚାପୁଡ଼ା । କର୍ଣ୍ଣ ମୂଳ ମୋର ତାତିଗଲା । ଡରରେ ଛନିଆ, ପୁଣି ଆଉ ଗୋଟାଏ ଥାପଡ଼ା ଆର ଗାଲରେ । ଆଉ ସେ ଆଡ଼କୁ ନ ଅନାଇ ଡରି ଡରି ଚାଲିଲି ଆଗକୁ । ଭୟରେ ଥରୁଥାଏ ।

ପୁଣି ଅଧାଫର୍ଲଙ୍ଗ ଯାଇଛି କି ନାହିଁ ହଠାତ୍ ମୋ ଠାରୁ ପ୍ରାୟ ୧୦ ଫୁଟ ଆଗରେ ଗୋଟିଏ ମସ୍ତବଡ଼ ମହାବଳ ବାଘ ବସି ଲାଙ୍ଗୁଡ଼ ବାଡ଼ଉଛି ଓ ମୁହଁ ମେଲା କରୁଛି—ତାକୁ ଦେଖିଲି । ପ୍ରତିକ୍ରିୟା କଥା ଅନୁମେୟ । ପଛକୁ ଫେରିବାର ଆଉ ଜୁ ନାହିଁ । କାରଣ ସେତେବେଳେ ସୁଦ୍ଧା କାନମୂଳ ଝିମି ଝିମି ମାରୁଥିଲା । ସୁତରାଂ ଫେରିବା ପ୍ରଶ୍ନ ଉଠୁନି ।

ସାମ୍ନା ଛଡ଼ା ଏ ପଟ ସେ ପଟ ହେବାର ଆଉ ସାହସ ବି ନାହିଁ । ଚାରିଆଡ଼େ ବି କଟିକଟିଆ ଅନ୍ଧାର—ବାଧ୍ୟହୋଇ ଚାଲିଲି ଡରି । ବାଘ ପାଖକୁ ପହଞ୍ଚିବାକୁ ପୁରେ ଖଣ୍ଡେ ଅଛି କି ନାହିଁ ବାଘ ଆଉ ଦେଖାଗଲାନି—ଆସ୍ତେ ଆସ୍ତେ ଚାଲିଲି ।

ତାପରେ ହଠାତ୍ ଏକ ନରକଙ୍କାଳ ପାଟି ମେଲିକରି ହାତ ହଲାଇ ହଲାଇ ମୋ ଆଡ଼କୁ ଆସୁଥିବାର ଦେଖିଲି । ସେ କି ଭୟାନକ ଦୃଶ୍ୟ ! ଆଜିବି ଲେଖିଲା ବେଳକୁ ଦେହ ଶୀତେଇ ଉଠୁଛି । ସେ ସମୟର ଅବସ୍ଥା ମୁଁ ନିଜେବି ବର୍ଣ୍ଣନା କରି ପାରୁନାହିଁ । ମୁଁ ଭଲଭାବେ ବିଶ୍ୱାସ କରେ ଆମ ଦେଶରେ ସମସ୍ତ ଟାଣୁଆ ଛାତିବାଲା ଲୋକଙ୍କ ଭିତରୁ ଅନ୍ତତଃ ନବେଭାଗ ଲୋକ ସଂଜ୍ଞାହୀନ ହୋଇ ପଡ଼ିବେ ଯଦି ତାଙ୍କ ଜୀବନରେ ଥରେ ଏପରି ଦୃଶ୍ୟ ଦେଖନ୍ତି । ସେତେବେଳେ ମୁଁ ମୋର ଚାପୁଡ଼ା ଖିଆ, ବାଘ ଦେଖା କଥା ସବୁ ଭୁଲିଗଲି, ଏବଂ ସେ କଙ୍କାଳ ଆଡ଼କୁ ଅନାଇ ଅନାଇ ଘଣ୍ଟାକେ ପାହୁଣ୍ଡେ ଗତିରେ ଆଗେଇଲି । କଙ୍କାଳଟି ପ୍ରାୟ ୮।°• ଫୁଟ ପାଖକୁ ଆସିଲା ବେଳକୁ ମୁଁ ଗୋଟାପଣେ ଥରୁଥାଏ । ଏଟା ନିଶ୍ଚୟ କଥା ଯେ ଯଦି କଙ୍କାଳଟି ମୋ ପାଖକୁ ଲାଗିଥାନ୍ତା, ମୁଁ ନିଶ୍ଚୟ ହାର୍ଟଫେଲ ହୋଇଥାନ୍ତି—କିନ୍ତୁ ହଠାତ୍ କଙ୍କାଳଟି ଅନ୍ତର୍ଦ୍ଧାନ ହୋଇଗଲା ।

କଙ୍କାଳ ଆଉ ଦେଖା ନଯିବାରୁ ଛାତିରେ ଟିକିଏ ଦମ୍ ପଶିଲା । କିନ୍ତୁ ଭୟ ଯାଇ ନଥାଏ । ପ୍ରାୟ °° ପାହୁଣ୍ଡ ଏ ଅବସ୍ଥାରେ ଆଗେଇଛି କି ନାହିଁ ହଠାତ୍ ଗୋଟିଏ ଖାଲରେ ପ୍ରାୟ ବେକେ ହେବ ପାଣିରେ ଦୁଲୁକିନା ପଡ଼ିଲି—ପୁରା ଫିଲଡ଼ ଡ୍ରେସ । ସେଥିରେ ପୁଣି ବନ୍ଧୁକ ଅଛି ମୋର ମନେ ଅଛି ଆପେ ଆପେ ମୁହଁରୁ ବାହାରି ପଡ଼ିଲା "ମରିଗଲି ଲୋ ମା ।" ପାଣି ଭିତରେ ପଡ଼ିବା ମାତ୍ରେ ଶବ୍ଦହେଲା "କୋନ ହେ ।"

ଛାନିଆ ହୋଇଗଲି । କହିଲି ତୁମ୍ କୋନ ହୈ ?"

**"I am Menon."**

ଏଥର ଡର ଭାଙ୍ଗିଲା—କହିଲି ଭାଇ ! ତୁ ଏଠାରେ ପଡ଼ିଚୁ ପରା !

ସେ କହିଲା "ଯେଉଁଠାରେ ବାମ ପଟକୁ ଦେଖିନାହିଁ ବୋଲି

ଲେଖା ହୋଇଛି ସେଠାରେ ଯେଉଁ ମାଡ଼ ଖାଇଲି, ସେ ପବଣ ମୋର ମାସେ ପର୍ଯ୍ୟନ୍ତ ଯିବନାହିଁ—ପ୍ରଥମେ ଦୁଇ ଗୁପୁଡ଼ା ବସିବାରୁ ମୁଁ ହାତ ବଢ଼ାଇ କଏ ମାରିଚି ଧରିବାକୁ ଚେଷ୍ଟାକଲି। ତାପରେ ମୁଁ ଆଉ ଧରିବ କଣ, ସପାଟ୍ ସପାଟ୍ ବସିଗଲା ମୋ ଗାଲରେ। ହକଲରେ ପଳାଇ ଆସିଲି। ଏଇଟା ଗୋଟିଏ ପାଞ୍ଚ ପୁଟିଆ ଗାତ। ମୋର ଭାଗ୍ୟଭଲ ଯେ ଗୋଡ଼ ଭାଙ୍ଗିନ। ଏ ମୋଟା ଦେହରେ ଆଉ ଏ ଗାଡ଼ରୁ ଉଠିବା ମୋ ପକ୍ଷରେ ସମ୍ଭବ ନୁହେଁ। ମୁଁ ଆଉ ଏଇଠୁ ନଯାଏଁ। କି ଦୁର୍ବୁଦ୍ଧି ହେଲା ଟ୍ରାଭଙ୍କୋର ପ୍ରୁଡ଼ ମିଲଟାରୀରେ ପଶିଲି।

ମୁଁ ତୋତେ ଉଠାଇ ଦେଉଛି ?

"ମୋତେ ଗୁଳିମାରି ଉଡ଼ାଇ ଦେଲେ ସୁଦ୍ଧା ମୁଁ ନଯାଏ।"

ତାକୁ ବହୁତ ବୁଝାଇଲି, ସେ କିନ୍ତୁ ନଛୋଡ଼ବନ୍ଧା—ଯାହାହେଉ ଉର ଟିକିଏ ଭାଙ୍ଗିଲା।

କିଛି ସମୟ ପରେ ସେ ମୋତେ ଗାଡ଼ରୁ ଉଠେଇ ଦେଲା। ମୁଁ ପୁଣି ଆଗକୁ ଚାଲିଲି—ପୁଣି ଅଧ ଫର୍ଲଙ୍ଗ ବାଟ ଆସିଲା ପରେ ହଠାତ୍ ମୋ ସାମନା, ଗାଲପାଖ, ଆଗ ପଛ ଚାରିଆଡ଼େ ଗୁଳିଶବ୍ଦ ଏବଂ ଗୁଳି ଗୁଡ଼ାକ ଦେହକୁଛୁଇଁ ଚାଲିଗଲା ପରି ଜଣାପଡ଼ୁ ଥାଏ—ମୁଁ କିନ୍ତୁ ସାମନାକୁ ଅନାଇଁ ଚାଲୁଥାଏ। ତାପରେ ହଠାତ୍ ମୁହଁରେ ସର୍ଚ୍ଚଲାଇଟ୍ ପରି ଲାଇଟ୍ ପଡ଼ୁଥାଏ। ଆଉ ଅନେଇ ହେଉନ ତଥାପି ଚାଲୁଥାଏ। ଅବଶେଷରେ ହଠାତ୍ ଜଣେ ଅଫିସର ଆସି ମୋ ହାତଧରି ପକାଇ କହିଲେ "ଆସ ସର୍ଜେଣ୍ଟ ସିଂଘ।" ତୁମେ ଭୂତଟ୍ରେନିଂ ପାଶ୍ କଲ।

ତାପରେ ଦେଖିଲି ଗୋଟିଏ ବଡ଼ ଟେଣ୍ଟ। ତା ଭିତରେ ଲାଇଟ୍ ଜଳୁଛି। ସେ ଭିତରକୁ ନିଆହେଲା। ଚା' କପେ, ଦୁଇଖଣ୍ଡ ବିସ୍କୁଟ୍, ଖଣ୍ଡେ ସିଗାରେଟ୍ ଦିଆହେଲା ଏବଂ ମୋର ଅନ୍ୟ ତିନିଜଣ ବନ୍ଧୁ ସାଙ୍ଗରେ ଭୂତ ଟ୍ରେନିଂ ବିଷୟ ଚର୍ଚ୍ଚାହେଲା—କ୍ରମେ ୨୫ ଜଣ ଯାକ ଆସିଲେ। ୪ର୍ଥ ବ୍ୟକ୍ତି ମିଃ ମେନନ୍ ୧ମ ଜଣଙ୍କ ପରେ ଆସି ପହଞ୍ଚିଲେ। ତାଙ୍କୁ ନେଇ ଖୁବ୍ ହସବୃଷ୍ଟି ଓ ମଜଜ ଚାଲିଲା। ତାପରେ କ୍ୟାପଟେନ୍ ସ୍ମିଥ ଆସି ଆମକୁ ଅଭିନନ୍ଦନ କଲେ।

ଟ୍ରେନିଂ ସିନା ପାଶ୍ କଲୁ କିନ୍ତୁ କପର ଏଡ଼େ ଅନ୍ଧାର ହୋଇଥିଲା ଏବଂ କିଏ ମାରିଲା, ସେ କଙ୍କାଳ କପର ଆସିଲା ଏ ସବୁକିଛି ବୁଝି ପାରିଲି ନାହିଁ । ଖାଲି ଶୁଣିଲି "ସେ ସବୁ ଗୋପନୀୟ' ।

ଫିରୋଜପୁରରେ ରହିବାର କିଛିଦିନ ପରେ ଆମେ ଆସିଲୁ ବାଙ୍ଗାଲୋର—ବାଙ୍ଗାଲୋର "ସାଉଥ ପାରେଡ଼" ଠାରୁ ହିନ୍ଦୁସ୍ଥାନ ଏୟାର କ୍ରାଫ୍ଟକୁ ଯାଇଥିବା ଲମ୍ବାରାସ୍ତା ଉପରେ ଡାହାଣ ପାଖକୁ ପଡେ "ରୁସ୍ତମାବାଗ୍" ପାଞ୍ଚ ଏକର ବ୍ୟାପୀ ଜମିରେ ଜଣେ ପାର୍ସି ଭଦ୍ରଲୋକଙ୍କର ମସ୍ତବଡ଼ ବଙ୍ଗଳା । ସେଇଟି ହେଲା ଆମର ଅଫିସ ଓ କ୍ୱାର୍ଟର । ସେଠାରୁ "ଜାଲାହାଲି" ଓ "ଝଡ଼ାଡ଼ି" ନାମଧେୟ ଦୁଇଟି ଫିଲଡ ସପ୍ଲାଇ ଡିପୋର କାମ ଚଳାଇବାକୁ ପଡ଼େ । ପାଖରେ ଥାଏ ଇଟାଲିଆନ ଯୁଦ୍ଧ ବନ୍ଦୀ ମାନଙ୍କର କ୍ୟାମ୍ପ । ସେମାନଙ୍କ ସହିତ ପ୍ରାୟ ପ୍ରତିଦିନ ଦେଖାହୁଏ । ଅଧିକାଂଶ ବନ୍ଦୀମାନଙ୍କୁ ୱାର୍କସପ୍ ଓ ସପ୍ଲାଇ ଡିପୋରେ କାମ କରିବାକୁ ପଡେ । ସକାଳୁ ଦଳ ଦଳ ହୋଇ ବନ୍ଦୀ କାମ କରିବାକୁ ଯାଆନ୍ତି । ସଙ୍ଗରେ ମାତ୍ର ଜଣେ ଭାରତୀୟ ସିପାହି । ଖୁବ୍ ହସି ହସି ସେମାନେ କାମ କରୁଥାନ୍ତି । ବିଶେଷ ଭାଗ ଇଟାଲିଆନ ଭାଷାରେ କଥା କହନ୍ତି । ଯେଉଁ କେତେଜଣ ଇଂରାଜୀ ଜାଣନ୍ତି ସେମାନେ ଅଫିସର ଶ୍ରେଣୀର ଲୋକ । ବନ୍ଦୀହେଲେ ସୁଦ୍ଧା ସେମାନଙ୍କର ବେପରବାଏ ଭାବ । ଜାତିପାଇଁ, ଜନ୍ମଭୂମି ପାଇଁ ବନ୍ଦୀ ହୋଇଛନ୍ତି ବୋଲି ତାଙ୍କର ଭାରି ଗର୍ବ ।

ଦିନେ କଥା ହେଉ ହେଉ କହିଲେ କେତେଜଣ, "ଆଚ୍ଛା ଭାରତୀୟମାନେ ବ୍ରିଟିଶ ସରକାର ପଛରେ କାହିଁକି ଏତେ ଧାଇଁଛନ୍ତି ? ଅବଶ୍ୟ ଆପଣ ଭାବୁଥିବେ ଆମେ ହିଟଲର୍ ଦଳର ଲୋକ ବୋଲି ଏ କଥା କହୁଛୁ । କିନ୍ତୁ ତାହା ନୁହେଁ । ଆମେତ ଆସି ଦେଖୁଚୁ ଆପଣ ଭାରତୀୟ ମାନେ କୌଣସି ଗୁଣରେ ଆମଠାରୁ କମ୍ ନୁହଁନ୍ତି । ଆପଣଙ୍କର ସଭ୍ୟତା, ସଂସ୍କୃତି ଓ ଐତିହ୍ୟ ବିରାଟ । ତଥାପି ଆପଣ-

ମାନେ କାହିଁକି ପରାଧୀନ ହୋଇ ରହୁଚନ୍ତି । ଯେପରି ଜଣାପଡ଼େ ଆପଣ ମାନଙ୍କର ଆଶା ଓ ଆକାଂକ୍ଷା ନାହିଁ । ସବୁଠୁ ବେଶୀ ଦୁଃଖ ଲାଗେ ଯେ ଆପଣମାନଙ୍କର ନିଜର ଖଣ୍ଡିଏ ପତାକା ନାହିଁ । ଯେ ଇଉନିୟନ ଜ୍ୟାକ୍‌କୁ ଆପଣ ନିଜର ପତାକା ବୋଲି କହୁଛନ୍ତି ଓ "ଗଡ୍‌ସେଭ୍ ଦି କିଙ୍ଗ" ଆପଣଙ୍କର ଜାତୀୟ ସଙ୍ଗୀତ ଆମେ ଇଟାଲୀରେ ଥିଲାବେଳେ ଶୁଣିଥିଲୁ । ଭାରତୀୟମାନେ ଅସଭ୍ୟ ଜଙ୍ଗଲି ପରି ବ୍ୟବହାର କରନ୍ତି ଓ ସେଇଥିପାଇଁ ଭାବୁଥିଲୁ ଯେ ବ୍ରିଟିଶ ସରକାର ଏମାନଙ୍କୁ ଜବରଦସ୍ତି ବାନ୍ଧିରଖିଛି । କିନ୍ତୁ ଭାରତକୁ ଆସି ଆମର ସେ ଧାରଣା ଦୂରହୋଇଛି । ହେଲବା ଆପଣଙ୍କର ସହତର ଅଭାବ—ତେବେ ଦଳ ଦଳ ହୋଇ ମିଲିଟାରୀରେ ଭର୍ତ୍ତି ହୋଇ ଯୁଦ୍ଧ କୌଶଳ ଶିକ୍ଷାକରି କି ସ୍ତ୍ରୀ କି ପୁରୁଷ ପ୍ରତ୍ୟେକ କେତେଦିନ ପାଇଁ ସୈନ୍ୟ ବାହିନୀକୁ ଯୋଗକରି ପକାଇ ଆପଣଙ୍କ ମହାନ୍ ନେତା (ନେତାଜୀ ସୁଭାଷବୋଷଙ୍କୁ ଏହି ନାମରେ ପ୍ରତ୍ୟେକ ଜାତି ଜାଣେ) ତଳେ ଯୁଦ୍ଧ କରି ହଟାଇ ଦେଇ ପାରନ୍ତେ ।"

ତାର ଉତ୍ତର ମୁଁ କଣ ଦେଇଥିଲି ମୋର ମନେ ନାହିଁ କିନ୍ତୁ ମୋତେ ଜଣା ପଡୁଥିଲା ସେହି ମୁହୂର୍ତ୍ତରେ ମୁଁ ଯେପରି ନିଜ ଭିତରେ ନ ଥିଲି ଏବଂ ଏ କଥା ଶୁଣି ବଞ୍ଚିବା ଅପେକ୍ଷା ମରିବା ଭଲ ବୋଲି ଭାବିଲି । ଶୀଘ୍ର ଯଦି ନେତାଜୀଙ୍କ ପାଖରେ ପହଞ୍ଚି ହୁଅନ୍ତା ତାହାହେଲେ ଅନ୍ତତଃ ଜଣେ ଗୋରାକୁ ମାରନ୍ତି ।

ବାଙ୍ଗାଲୋରର ପ୍ରାକୃତିକ ସୌନ୍ଦର୍ଯ୍ୟ ଓ ଦକ୍ଷିଣ ଭାରତୀୟ ମାନଙ୍କର ଶିକ୍ଷା, ସଂସ୍କୃତି, ମହୀଶୂରର ରାଜପ୍ରାସାଦ ଓ ମହୀଶୂରର ବିଖ୍ୟାତ ଚନ୍ଦନ କାଠର କୁଟୀର ଶିଳ୍ପ କଥା ସବୁ ଶୁଣିଥାଏ । କିନ୍ତୁ ଶୃଙ୍ଖଳିତ ମିଲିଟାରୀ ଜୀବନ ଭିତରେ କିଛି ଦେଖି ହେଲାନି ।

ଦୁଇମାସ ରହିଲା ପରେ ଆସାମ ଚାଲି ଆସିଲୁଁ । ଗୌହାଟୀରେ କ୍ୟାମ୍ପ ହେଲା ଏବଂ ସେଠାରେ ମାତ୍ର ୧୫ ଦିନ ଥିଲୁ । ଠିକ୍ କାମାକ୍ଷୀ ଦେବୀଙ୍କ ମନ୍ଦିରର ଅପର ପାଖରେ ଗୋଟିଏ ରାସ୍ତା । ସେହି ରାସ୍ତାରେ ଦୁଇମାଇଲ ଗଲାପରେ ଗୋଟିଏ କବର ସ୍ଥାନରେ ଆମର ଟ୍ରକ ଗୁଡ଼ିକ ରହିଲା । କବର ଉପରେ ଗୋଟିଏ ଗୋଟିଏ ବିଛଣା କରି ଶୋଇ ଓ ଦୁଇଟି କବରକୁ ଚୁଲିଟିଙ୍କା କରି ରନ୍ଧା ବଢ଼ା ହୁଏ ।

ପନ୍ଦର ଦିନ ଗୌହାଟୀରେ ରହି ନୂମାଲି ଗଡ଼, ନୌଗଙ୍ଗ, ଜୋରହାଟ, ଡିବ୍ରୁଗଡ଼ ପ୍ରତ୍ୟେକ ଯାଗାରେ ୫ଦିନ ୧୦ଦିନ ରହି ଦିମାପୁରରେ ପହଞ୍ଚିଲୁ ।

ଉପରୋକ୍ତ ଜାଗା ଗୁଡ଼ିକରେ ଅନେକ ଓଡ଼ିଆ ଲୋକ ଦେଖିଲି । ସେମାନେ ପ୍ରାୟ ଚା ବଗିଚାରେ କୁଲି କାମ କରନ୍ତି । ଘରଦ୍ୱାର କରି ସେଠାରେ ରହନ୍ତି । ଓଡ଼ିଆ ଭାଷାକୁ ଭୁଲି ଯାଇଛନ୍ତି । ସେମାନଙ୍କ ଦୁରବସ୍ଥା ଦେଖି ମନ ବିଚଳିତ ହୁଏ । ତେବେ ବିଶେଷ କିଛି ନ କହି "କିସ୍‌ମତ୍‌କୁ" ନିନ୍ଦା କରିବା ଛଡ଼ା ଆଉ କିଛି ନ ଥାଏ । ଯେଉଁ ଓଡ଼ିଆ ଭାଇମାନେ କେବେ କଲିକତାଠାରୁ ବର୍ମା ପର୍ଯ୍ୟନ୍ତ ଗାଁ ଗଣ୍ଡା ଦେଇ ମଟରରେ ଦିନେ ଓଳିଏ ରହି ରହି ଯାଉଥିବେ, ସେମାନେ ମୋ ଲେଖାର ସତ୍ୟତା ଉପଲବ୍ଧି କରି ପାରିବେ ।

ଦିମାପୁର ଠାରୁ ଦୁର୍ଦ୍ଧର୍ଷ ନାଗାପାହାଡ଼, ଜଙ୍ଗଲ ରାସ୍ତା—ସିଭିଲ ସର୍ଭିସ ବନ୍ଦ । ଜାପାନୀ ବୋମା ମାଡ଼ ଚାଲିଥାଏ ଏବଂ ସେହି ପଥଦେଇ ଆମର "କନ୍‌ଭଏ" (ଟ୍ରକସବୁ) ଲାଇନ୍‌ରେ ଥାଏ । ୧୫ଫୁଟ ଅନ୍ତରରେ ଗୋଟିଏ ଗୋଟିଏ କରି ୩ଟି, ତାପରେ ୨୦୦ ଫୁଟରେ ପୁଣି ସେହି ୩ଟି, ଆଗରେ ପଛରେ ଗୋଲାବାରୁଦ ଧାରୀ ସିପାହୀ ଏବଂ ଗୋଟିଏ ଓ୍ୱାରଲେସ ଗାଡ଼ି । ଦରକାର ପଡ଼ିଲେ ୩ଟି ଆଣ୍ଟି ଏୟାର କ୍ରାଫ୍‌ଟଗାଡ଼ି ଚାଲୁଥାଏ । ମାଟି ହଣା ଚାଲୁଛି, ପଥର ବି ଫଟା ଚାଲିଛି । ବଡ଼ ଦୁର୍ଗମ ପଥ ।

ହଜାର ହଜାର ନାଗା—କିଏ ଅର୍ଦ୍ଧ ଲଙ୍ଗଳା କିଏ ବା ପୂରା । ପଥର ଗେଟି ପିଟୁଛନ୍ତି । ଆମକୁ ଦେଖି ହସୁଥାନ୍ତି । ସିଗାରେଟ ମାଗୁଥାନ୍ତି । ଆମର ଟ୍ରକ ଖୁବ୍ ଧୀରେ ଧୀରେ ଚାଲୁଥାଏ । ମଝିରେ ମଝିରେ ଟ୍ରକ ହଲ୍‌ଟ କରୁଥାଏ ।

ମୋର ମନେ ଅଛି ଗୋଟିଏ ସିଗାରେଟ୍ ପ୍ୟାକେଟ ଦେଇ ମୁଁ ବଡ଼ ବଡ଼ ମକା ୫ଟି, କୁକୁଡ଼ା ଅଣ୍ଡା ୧୦ଟି ଓ କଦଳୀ ଫେଣାଏ ନେଇଛି ।

ଗୋଟିଏ ତରଫରେ ଅତ୍ୟୁଚ୍ଚ ପାହାଡ଼, ଅପର ପାର୍ଶ୍ୱରେ ଗହ୍ୱର । ଟ୍ରକ ଏ ପଟ ସେପଟ ହେଲେ ମରଣ ସୁନିଶ୍ଚିତ । ଆଜିର ଦିମାପୁର ଠାରୁ

ଇଂଫାଲ ରାସ୍ତା ଯେତେବେଳେ ତଆର ଚାଲୁଥାଏ । ପାହାଡ଼ କଟେଇ ୧୨୦ମାଇଲ ଯିବାକୁ ପଡ଼ିବ । ୧୫ମାଇଲ ଯିବାପରେ ଗୋଟିଏ ଯାଗାରେ ଲାଲ କଳାରେ ଲେଖାଅଛି :—**Air has eyes and walls have years—Hold your tongue—Enomies are ahead Beware of Nagas—Do not accept any thing from any body.**

ଠିକ୍ ଏହି ଲେଖାଠାରୁ ଦୁଇମାଇଲ ଆଗରେ ଦୁଇଟି ଟ୍ରକ ସେଦିନ ସ୍ପେସ ସୈନ୍ୟ ବୋଝେଇ କରି ଯାଉଥିଲା ବେଳେ ଓଲଟି ପଡ଼ି ହଜି ଯାଇଛି ଅତଳ ଗହ୍ୱରରେ । Searching party ଖୋଜି ଖବର କିଛି ପାଇ ନାହାଁନ୍ତି ।

ହଁ ଗୋଟିଏ କଥା ଲେଖିବା ପାଇଁ ଭୁଲି ଯାଇଛି—ଫିଲଡ଼କୁ ଆସିବା ପୂର୍ବରୁ ଯୋଡ଼ାଏ Identity Disc ଦିଆ ହୋଇଥାଏ । ସେଥିରେ ଲେଖାଥାଏ ତୁମର ଜାତି ଓ ମିଲିଟାରି ନମ୍ବର । ଉଦାହରଣ ସ୍ୱରୂପ ମୋର No S. R. 5575 ଓ ଜାତି ହିନ୍ଦୁ । ଗୋଟିଏ ଲାଲ ରଙ୍ଗର ଓ ଅନ୍ୟଟି ସବୁଜ ରଙ୍ଗର । ସେ ଦୁଇଟି ବେକରେ ଝୁଲୁଥିବା କଥା । କେହି କେହି ସୁନା କିମ୍ବା ରୁପାରେ ସେହି ନମ୍ବର ଓ ଅକ୍ଷର ଲେଖି ହାତରେ ବାନ୍ଧିଥାନ୍ତି । କେହି ମରିଗଲେ ବା ହଜିଗଲେ ସେହି ନମ୍ବର ଦେଖି ଜାଣନ୍ତି । (ବିଚରା ଯେଉଁମାନେ ମରିଗଲେ ତାଙ୍କର ଘରକୁ ଖବର ଯାଇଥିବ "Expired" କିମ୍ବା Lost)"

ଏ ରାସ୍ତା ଏତେ ଅଣଓସାରିଆ ଯେ ପ୍ରତି ମୁହୂର୍ତ୍ତରେ ଦୁର୍ଘଟଣାର ଭୟ । ନାଗାମାନେ ବଡ଼ ଦୁର୍ଦ୍ଧର୍ଷ । ସେମାନଙ୍କୁ ନେଇ ଏ ରାସ୍ତା ତିଆରି ଚାଲୁଥାଏ ।

ବର୍ମା ସୀମାନ୍ତରେ ଯେତେବେଳେ ବୋମା ବର୍ଷଣ ହେଲା ସେତେବେଳେ ହଜାର ହଜାର ଭାରତୀୟ ଏହି ରାସ୍ତା ଦେଇ ଭାରତକୁ ଆସିଥିଲେ । ସେତେବେଳର ଭୟାବହ କରୁଣ କାହାଣୀ ଓ କେତେ ନାଗାଙ୍କର ନିଷ୍ଠୁରତା ବିଷୟ ଶୁଣିଲେ ଲୋମ ଟାଙ୍କୁରି ଉଠିବ । ଏ ପାହାଡ଼ିଆ ଲୋକମାନଙ୍କୁ କେବଳ ଗୋଳି, ବାରୁଦ ଆୟତ୍ତ କରି ପାରିବ । ଦେଖିବାକୁ ଏମାନେ ଆମର ଆଦିବାସୀଙ୍କ ପରି ନୁହନ୍ତି ।

ଖୁବ୍ ଗୋରା ଓ ସ୍ୱାସ୍ଥ୍ୟବାନ । ମୁହଁର ରଙ୍ଗ ଅନେକଟା ଗୁର୍ଖା, କାହାର କାହାର ବର୍ମୀ ବା ଜାପାନୀ ମାନଙ୍କ ପରି । ଏମାନଙ୍କୁ ଆସ୍ତୁତ କରି ସେତେବେଳେ ଏହି ଦିମାପୁର ଇଂଫାଲ ରାସ୍ତା ତିଆରି ହୋଇଛି ।

କିଛିବାଟ ଗଲାପରେ ଗୋଟିଏ ଛୋଟ ଗାଁ—ନାମ ମନେ ନାହିଁ, କୋହିମା ଜିଲ୍ଲାର ପାହାଡ଼ିଆ ଗାଁଟି । ସେଇଟି ରହିଲୁ । ରାତି ହେଲା, ସବୁବେଳେ ମନ ଛନଛନ ହେଉଥାଏ । ବୋମା ମାଡ଼କୁ ଡର । ଦୁଇଦିନ ବିଶ୍ରାମ ନେଲୁ । ସେଠାରେ ଦିନେ ସକାଳୁ ଆମେ ପାଞ୍ଚଜଣ ତିନିଟି ରାଇଫଲ୍, ଦୁଇଟି ଷ୍ଟେନ୍‌ଗନ୍ ନେଇ ଜଙ୍ଗଲ ଭିତର ଦେଇ ଚାଲି ବାହାରିଲୁ । ଜଙ୍ଗଲରେ କଦଳୀ ଗଛ ଭର୍ତ୍ତି—ଅନେକ କଦଳୀ ପାଚିଥାଏ । କଦଳୀ ଖାଇବାର ଲୋଭ ସମ୍ଭାଳି ପାରିଲୁ ନାହିଁ । କିନ୍ତୁ ଏହି କଦଳୀ "ଦିଲ୍ଲୀକା ଲଡ୍ଡୁ" ପରି ଲାଗିଲା । ଗୋଲମରିଚ ଠାରୁ ବଡ଼ ବଡ଼ ମଞ୍ଜି । ଭାରି କଷା । ଖାଇ ହେଲାନି । ଏହି ପାହାଡ଼ ଜଙ୍ଗଲର ଯେଉଁଆଡ଼େ ଦେଖିବ ଲମ୍ବା ଗୋଲପ ଭର୍ତ୍ତି । ବିଶେଷ ଫସଲ ହେଲା ମକା ଓ ପାହାଡ଼ କାଟି ଛୋଟ ଛୋଟ ଧାନ କ୍ଷେତ ।

୪ ମାଇଲ ଗଲା ପରେ ଗୋଟିଏ ଗାଁ ପଡ଼ିଲା । ଘର ପ୍ରାୟ ୧୦ରୁ ୧୫ଟି । ପାହାଡ଼ ଉପରେ କାଠରେ ତିଆରି ଘର । ଆମକୁ ଦେଖି ୧୦ ରୁ ୧୨ ଜଣ ଲଙ୍ଗୁଳା ନାଗା ଧନୁଶର ଧରି ତିଆରି । ସାନ୍ୟାଲ (ବଙ୍ଗାଳୀ ବନ୍ଧୁ) ରାଇଫଲ୍ ଫୁଟାଇ ଦେଲେ ଉପରକୁ । ସେମାନେ ଛତ୍ରଭଙ୍ଗ ଦେଲେ—ଠିକ୍ ମାଙ୍କଡ଼ଙ୍କ ପରି ପାହାଡ଼ ଉପରେ ଡେଇଁ ଡେଇଁ ଲୁଚି ଗଲେ । ସାହସ କରି ଆଉ ୨।୩ଟା ଉପରକୁ ଫାୟାର କରି ଚାଲିଲୁ ଆଗକୁ । ଗୋଟିଏ ଘରେ ପହଞ୍ଚିଲୁ । ଘରର ଚାଳରେ ଯାହା ଦେଖିଲୁ ଆମର ରକ୍ତ ପାଣି ହୋଇଗଲା । ଚାରିଜଣ ଶିଖ୍‌ଙ୍କର କଟା ମୁଣ୍ଡ । ଝୁମ୍ପୁରା, ଝୁମ୍ପୁରା ବାଳ । ଚାରିଟିଯାକ ମୁଣ୍ଡ ଘର ଚାଳ ଉପରେ ଶୁଖିଲା । ବୀର ପଞ୍ଚନଦ ଦେଶର ସୈନିକ ମାନଙ୍କର ଏହି ଦଶା । ସେହି ଗାଁର ସବୁଲୋକ ଆମର ବନ୍ଧୁକ ଆବାଜ ଶୁଣି ଘର ଛାଡ଼ି ପଳାଇ ଗଲେ । ଦୁଇ ତିନୋଟି ବୁଢ଼ା ବୁଢ଼ୀ କେବଳ ରହି ଗଲେ । ଜଣେ ବୁଢ଼ା ଖଣ୍ଡିଆ ଖଣ୍ଡିଆ ହିନ୍ଦୀରେ କହୁଥାଏ ଓ ଆମ ଗୋଡ଼ତଳେ ପଡୁଥାଏ । ତାର ବକ୍ତବ୍ୟ "ଆମକୁ ମାର ନାହିଁ ।" ଶିଖ୍

ସୈନ୍ୟମାନେ ଆମରି ପରି କେବେ ବୁଲି ଆସିଥିଲେ, । ଅସ୍ତ୍ରରେ ଏଇ ଗାଁକୁ । ତେଣୁ ଏ ଗାଁର ଟୋକାମାନେ ଧନୁଶରରେ ମାରି ତାଙ୍କର ମୁଣ୍ଡକୁ ସଉଖିନରେ ଶୁଖାଇଛନ୍ତି—ଯେପରି କିଛି ନୁହେଁ । ଝିକାଏ କାଳରେ ଏମାନେ ନିଜ ନିଜ ଭିତରେ ଏପରି ·ହଣାକଟା ହୋଇଥାନ୍ତି । ତେବେ ତାଙ୍କୁ ସିଗାରେଟ୍ ଦେବାରୁ ସେ ଭାରି ଖୁସି । ଉପରି ଭାଷାରେ ସେ ପ୍ରାୟ ୧୫ ମିନିଟ୍ ପର୍ଯ୍ୟନ୍ତ ଡାକିଲା । ଆମେ ହିଁ ଗାର ଉଠାଏ ବନ୍ଧୁକ ଓ ଷ୍ଟେନ୍‌ଗନ୍ ଧରିଥାଉଁ । ପ୍ରାୟ ଟୋକା ଟୋକୀ ଓ ପିଲାଛୁଆ ହୋଇ ୫୦।୬୦ ଜଣ ବଣ ଭିତରୁ ବାହାରି ଆସିଲେ । ତାଙ୍କୁ ବନ୍ଧୁକ ଦେଖାଇବାରୁ ସେ ବୁଢ଼ା ଜଣ କହିଲା ଯେ ସେମାନେ ଧନୁଶର ଥୋଇ ଦେଇ ଆମ ଗୋଡ଼ତଳେ ଆସି ପଡ଼ିଗଲେ । ସବୁ ଗୁଣ୍ଡିପଟେ ବସିଲେ । ଅଧଘଣ୍ଟା ବିତିଗଲା । ଆମେ ସିଗାରେଟ୍ ବାଣ୍ଟିଲୁ । ସେମାନେ ଟାଣିଲେ । କୁକୁଡ଼ା ୨ଟି ଆଣି ଆମକୁ ଦେଲେ ଓ ବହୁତ ମୁଣ୍ଡ ଲଗାଇ ଜୁହାର ହେଲେ ଏବଂ ଠାରି ଆମକୁ ବୁଝାଇଲେ "ଆମକୁ ମାର ନାହିଁ ।" ତା'ପରେ ଆମେ ଚାଲି ଆସିଲୁ, "ସେଇ ଚାରୋଟି କଟା ମୁଣ୍ଡର ବିମର୍ଷ ସ୍ମୃତି ନେଇ ।"

ଉତ୍ତର ପଶ୍ଚିମ ସୀମାନ୍ତ ପ୍ରଦେଶ ବିଷୟରେ ପ୍ରାୟ ସମସ୍ତେ କିଛିନା କିଛି ଜାଣନ୍ତି କିନ୍ତୁ ଉତ୍ତର ପୂର୍ବ ସୀମାନ୍ତ ବିଷୟରେ ଖୁବ କମ ଲୋକ ବିଶେଷ ଜାଣିଥିବେ । ତେବେ ଆଜି "ନାଗା ରାଜ୍ୟ" ଅଧିଷ୍ଠିତ ହେବା ପରେ, ପାକିସ୍ଥାନ ହେବା ପରେ ଯାହାକିଛି ଲୋକେ ଜାଣୁଛନ୍ତି । ଯୁଦ୍ଧ ପୂର୍ବରୁ ( ୨ୟ ମହାସମର ) ଏବଂ ଯୁଦ୍ଧ ସମୟରେ ବାହାର ଦୁନିଆକୁ ଏ ବିଷୟରେ ଖୁବ୍ କମ ଜଣାଥିଲା । ବିଶେଷ ଭାବେ ମଣିପୁର ବିଷୟ । କିନ୍ତୁ ଏହି 'ମଣିପୁର' ଇଂରେଜ ଜାତିର ସୁନ୍ଦର ତୀର୍ଥକ୍ଷେତ୍ର ହୋଇଥିଲା ଏବଂ ଦ୍ୱିତୀୟ ମହାସମରରେ ବିଜୟୀ ହୋଇଥିଲା, ଇଂରେଜ ଜାତି ମଣିପୁର ଓ ଉତ୍ତର ପୂର୍ବ ସୀମାନ୍ତର
୯ ର ନଥିଲେ ସୁନ୍ଦର ଗତି

ଅନ୍ୟ ପ୍ରକାର ହୋଇଥାନ୍ତା ଏବଂ ଇଂରେଜ ଜାତି ବଞ୍ଚି ପାରିଥାନ୍ତା କି ନାହିଁ ସନ୍ଦେହ ।

ମଣିପୁର ଗୋଟିଏ କରଦ ରାଜ୍ୟ । ଏହାର ରାଜଧାନୀ "ଇଂଫାଲ" । ହୁଏତ କାଶ୍ମୀର ଭରତର ଭୂସ୍ୱର୍ଗ ବୋଲି ସମସ୍ତେ କହନ୍ତି । କାଶ୍ମୀରର ପେଟରେ ଇତିହାସ ଅଛି ମଣିପୁରର ବି ସେହିପରି । ଚିତ୍ରାଙ୍ଗଦା, ଉଲୁପୀ ଓ ଅର୍ଜ୍ଜୁନ ଉପାଖ୍ୟାନ ଆଜି ପୁରାଣ ଯୁଗରୁ ହିନ୍ଦୁର ଘରେ ଘରେ ପରିଚିତ କିନ୍ତୁ ମଣିପୁର ଅନିଶ୍ଚିତ, ଦୁର୍ଗମ ଜଙ୍ଗଲ ଓ ପାହାଡ଼ରେ ଥିବାରୁ ବାହାର ଜଗତ ଖୁବ୍ କମ୍ ତା ବିଷୟରେ ଜାଣେ । ସୌନ୍ଦର୍ଯ୍ୟ ଓ ଜଳବାୟୁ ପାଇଁ ମଣିପୁରର ରାଜଧାନୀ "ଇଂଫାଲ" କାଶ୍ମୀର ସହିତ ବି ଟକ୍କର ଦେବ । ଜାପାନୀମାନେ "ଇଂଫାଲକୁ"କୁ "ଉତ୍ତୁଙ୍ଗ ଶିଖର ପୃଷ୍ଠ" ବୋଲି କୁହନ୍ତି । ଯାହାର ଜାପାନୀ ନାମ କରଣ "ଟାକାନେ ନୋହାନା ।"

ଏହାର ଅଧିବାସୀ ପ୍ରାୟେ ସମସ୍ତେ ହିନ୍ଦୁ । ମଣିପୁର ରାଜ୍ୟ ଭିତରେ ଖୁବ୍ ବେଶୀ ହେଲେ ଶତକରା ୧୦ଜଣ ମୁସଲମାନ ଓ ଅନ୍ୟାନ୍ୟ ଜାତି । ମଣିପୁରର ଦୁର୍ଗମ ଜଙ୍ଗଲ ଭିତରେ ଅନେକ ଆଦିବାସୀମାନଙ୍କ ମଧ୍ୟରୁ ନାଗା ଓ କୁକି ପ୍ରଧାନ । ନାଗାମାନେ ଗୋଟିଏ ଜାଗାରେ ବସବାସ କରି କୃଷିବାସ କରି ଜୀବନ ଧାରଣ କରନ୍ତି । କିନ୍ତୁ କୁକିମାନେ ଗୋଟିଏ ଜାଗାରେ ଜଙ୍ଗଲ ସଫାକରି କୃଷିବାସ କଲାପରେ ଅନ୍ୟଜାଗାକୁ ଚାଲି ଯାଆନ୍ତି । ଅନ୍ୟାନ୍ୟ ଖାଦ୍ୟ ଭିତରେ ସେମାନେ ବି କୁକୁର ମାଂସ ଖାଆନ୍ତି । ମଣିଷମାରି ତାଙ୍କ ମୁଣ୍ଡ ରଖିବା ସଉକ କେତେ ନାଗାଙ୍କର ଅଛି । ସେମାନଙ୍କୁ Head Hunters ( ହେଡ଼ ହଣ୍ଟରସ୍ ) ବୋଲି କହୁଥାନ୍ତି । ମଣିପୁର ଏତେ ଦୁର୍ଗମ ଯେ ଆଗେ କୌଣସି ରାସ୍ତା ନ ଥିଲା । ବଡ଼ କଷ୍ଟରେ ଲୋକମାନେ ଯିବା ଆସିବା କରୁଥିଲେ । ହିଂସ୍ରଜନ୍ତୁ ପରିପୂର୍ଣ୍ଣ ଓ ବର୍ବର ନାଗାମାନଙ୍କ ଏହା ବାସସ୍ଥଳୀ । କେବଳ ମଣିପୁରର ପଲିଟିକାଲ ଏଜେଣ୍ଟ ଓ ଆସାମର ଇଂରେଜ ଶାସକମାନେ ବାହାର ଜଗତରୁ ଲୋକ ଦ୍ୱାରା ବୁହା ହୋଇ ଦୋଳାରେ ଓ ଭେଲାରେ ପାର ହୋଇ ଯାଉଥିଲେ । ପୋଲିସ ଫଉଜ ଏ ଜଙ୍ଗଲ ଭିତରେ କାମ କରିପାରୁ

ନଥିଲା । ବର୍ମାର ବେପାରୀ ଓ ଭାରତର ବେପାରୀମାନେ ବଡ଼ କଷ୍ଟରେ ସମତଳ ଅଞ୍ଚଳର ଜିନିଷ ନେଇ ବ୍ୟବସାୟ ଚଳାଇ ଖୁବ୍ ଭଲ ଦୁଇ ପଇସା ରୋଜଗାର କରୁଥିଲେ କିନ୍ତୁ ସେମାନଙ୍କର ବି ଜୀବନ ସବୁବେଳେ ବିପନ୍ନ । ରାସ୍ତାତ ନ ଥିଲା, ଯାହା ବା ଥିଲା ସେ ବାଟରେ ଗଲେ ହାତୀ, ବାଘ ଓ ନାଗା ଡକାୟତଙ୍କ ହାତୁଡ଼ରେ ନିଶ୍ଚୟ ପଡ଼ିବାକୁ ହେଉଥିଲା ।

ଇଂଫାଲ କେବଳ ମଣିପୁରର ରାଜାଙ୍କର ରାଜଧାନୀ ଏବଂ ଗୁରୁତ୍ୱପୂର୍ଣ୍ଣ ପାହାଡ଼ ଘେରା । ସମତଳ ଭୂମି । ଏହା ସମୁଦ୍ର ପତ୍ତନ ଠାରୁ ୨୬୦୦ ଫୁଟ ଉଚ୍ଚରେ । ବର୍ମା ସୀମାନ୍ତରୁ କେବଳ ୫୦ ମାଇଲ ବାଟ "ଲେଗଟାକ୍ ହ୍ରଦ"ର ଦୃଶ୍ୟ ଏବଂ ବର୍ଷର ଅଧିକାଂଶ ସମୟ ଏଥିରେ ଥିବା "ମେଘଲ" ପୂର୍ଣ୍ଣ ଦୃଶ୍ୟ ଯେ ଦେଖିଛି ନିଶ୍ଚୟ ତାର ଟେନିସନ୍‌ଙ୍କ "ମେଘଲ ମାଲୀନି" କଥା ମନେ ପଡ଼ିବ । ସାପ ଏଠି ବହୁତ ବେଶୀ ଏବଂ ଯୋକ ସଂଖ୍ୟା ଅତିବେଶୀ । ବଣ୍ୟଗୋଲାପ, କଦଳୀ ଗଛ ଓ ନାନାପ୍ରକାର ଫୁଲ ଓ ସୁନ୍ଦର ସୁନ୍ଦର ଚଢ଼େଇ ମାନଙ୍କର ପରିବେଶ ମଧ୍ୟରେ ଇଂଫାଲ ସହରର ସୌନ୍ଦର୍ଯ୍ୟ ଅନୁଭବ ମାନେ କହି ପାରିବେ । ଏ ପରିସରକୁ ଆହୁରି ସୁନ୍ଦର କରେ ମଣିପୁରର ସଦାଲାସ୍ୟ, ହାସ୍ୟମୟୀ ତରୁଣୀ । ମୁଣ୍ଡ ଉପରୁ ତଳକୁ ଘେରକରି ବିଭିନ୍ନ ରଙ୍ଗର ଘେର ପିନ୍ଧା ମଣିପୁର ଶାଢ଼ୀ ଓ ଉପରେ ଚଦର କିମ୍ବା ଶାଲଧରି ରାସ୍ତାଘାଟ ବଜାର ସବୁଠି ଏମାନଙ୍କୁ ଦେଖିବାକୁ ମିଳେ । ପରଦା ପ୍ରଥା ନାହିଁ— ଖୁବ୍ ସରଳ ଓ ଖୋଲା ମନ ଏମାନଙ୍କର । ବଜାରର କିଣା ବିକାଠାରୁ ଆରମ୍ଭ କରି ସବୁକାମ ବେଶୀ ଭାଗ ସ୍ତ୍ରୀ ଲୋକମାନେ କରନ୍ତି ବୋଲି କହିଲେ ଭୁଲହେବ ନାହିଁ । ରାଜାଙ୍କୁ ଏମାନେ ଭଗବାନଙ୍କର ପ୍ରତୀକ ବୋଲି ମନେ କରନ୍ତି । କିନ୍ତୁ ଏମାନେ ଖୁବ୍ ସ୍ୱାଧୀନ ଚେତା । ଭାରତୀୟ ଲଲନା ଅତ୍ୟାଚାରର ବିରୁଦ୍ଧରେ କିପରି ବିଦ୍ରୋହ କରିପାରେ ତାହା କେବଳ ମଣିପୁରର ସ୍ତ୍ରୀ ଲୋକମାନେ ଦେଖାଇ ପାରିଚନ୍ତି । ଏହାକୁ ମଣିପୁରୀ ଭାଷାରେ "ନୁପିଲ" (Nupilan) ବୋଲି କହନ୍ତି । ଭାରତର କୌଣସି ପ୍ରଦେଶରେ ବୋଧହୁଏ ୧୯୦୪ ମସିହାରେ ସ୍ତ୍ରୀ ଲୋକମାନେ ଏକ ଯୋଗେ ଅତ୍ୟାଗୃଦ୍ଧି ଓ ଅତ୍ୟାଚାରର ବିରୁଦ୍ଧରେ ଏପରି ଲଢ଼ି ନାହାନ୍ତି ।

ବ୍ରିଟିଶ ଶାସକମାନେ ଏହାକୁ ବିଦ୍ରୋହ ଆଖ୍ୟା ଦେଇଚନ୍ତି ଏବଂ ଦୁନିଆ ସାମନାରେ ଏହାକୁ ଅନ୍ୟରୂପ ଦେଇ ପ୍ରଚାର କରିଚନ୍ତି, ବ୍ରିଟିଶ ପଲିଟିକାଲ ଏଜେଣ୍ଟ ବେଠି ଖଟାଇ ତାଙ୍କର କର୍ମଚାରୀମାନଙ୍କର ଘର ତୋଳାଇବାରୁ ସ୍ତ୍ରୀ ଲୋକମାନେ ଏହାର ପ୍ରତିବାଦ କରି ବନ୍ଧୁକ ସାମନାରେ ପ୍ରାଣବଳୀ ଦେଇଥିଲେ । ପୁଣି ୧୯୩୪ ମସିହାରେ ମଣିପୁର ଦରବାରର ପ୍ରେସିଡ଼େଣ୍ଟ (ଜଣେ ଗୋରା) ଜଳକର ବସାଇବା ଆରମ୍ଭ କରିବାରୁ ତାଙ୍କୁ ସ୍ତ୍ରୀ ଲୋକମାନେ ଏହାର ପ୍ରତିବାଦ ଜଣାଇ "ଲଗଟାକ୍" ହ୍ରଦ ଭିତରକୁ ତାଙ୍କୁ ଫୋପାଡ଼ି ଦେଇଥିଲେ । ବିଚରା ପାଣିକୁଆ ପରି ବୁଡ଼ି ବୁଡ଼ି ରକ୍ଷା ପାଇଲା ।

୧୯୩୯ ମସିହାରେ ଯେତେବେଳେ ଓଡ଼ିଶାର ଗଡ଼ଜାତ ଆନ୍ଦୋଳନ ଚାଲିଥିଲା, ସେତେବେଳେ ହଜାର ହଜାର ସ୍ତ୍ରୀଲୋକ ଦରବାର ଶାସନ ବିରୁଦ୍ଧରେ ଆନ୍ଦୋଳନ କରି ପ୍ରାଣ ବଳୀ ଦେଇଚନ୍ତି । ଚାଉଳ ମଣିପୁର ଭିତରୁ ଚାଲାଣ ହେବାରୁ ଦର ବଢ଼ିଗଲା ଏବଂ ଏହାର ପ୍ରତିବାଦ କରି ୧୫୦୦୦ ସ୍ତ୍ରୀ ଲୋକ ମଣିପୁରର ଚାଉଳ କଳର ମାଲିକ-ମାନଙ୍କୁ ଅନୁନୟ ବିନୟ ହୋଇ କିଛି ଫଳ ନ ହେବାରୁ ଦରବାରକୁ ଦରଖାସ୍ତ କଲେ ଏବଂ ତାର କିଛି ପ୍ରତିକାର ନ ହେବାରୁ ସେମାନେ ଅଫିସ ଓ ମିଲ୍‌ଘର ସାମାନାରେ ସତ୍ୟାଗ୍ରହ ଆରମ୍ଭ କରିଦେଲେ ଏବଂ ସେଠାରେ ବର୍ବର ବ୍ରିଟିଶମାନଙ୍କର ବନ୍ଧୁକ ସମନାରେ କେତେ ଜଣ ବି ପ୍ରାଣବଳୀ ଦେଲେ । ଏଥିରୁ ସେମାନେ କପରି ସ୍ୱାଧୀନଚେତା ଥିଲେ ସହଜରେ ଅନୁମେୟ । ଇତିହାସ କଣ ସେମାନଙ୍କ ବିଷୟରେ ଲିପିବଦ୍ଧ କରିଚି ମୁଁ ଜାଣେ ନା କିନ୍ତୁ ମୋର "ଇଂଫାଲ" ରହଣୀ ଭିତରେ ମୁଁ ଏପରି ରୋମାଞ୍ଚକର ଘଟଣାମାନ ଶୁଣିଚି ।

୧୮୯୧ ଖ୍ରୀ: ଅ: ରେ ଶ୍ରୀଲ ଶ୍ରୀଯୁକ୍ତ ଅଷ୍ଟୋତ୍ତର ଶତ ଯୁକ୍ତ ମଣିପୁରେଶ୍ୱର ହିଜ୍ ହାଇନେସ, ସାର ଚୂଡ଼ାଚାନ୍ଦ ସିଂଙ୍ଗ ଜି, ବାହାଦୁର କେ: ସି: ଏସ୍: ଆଇ: ସି: ବି: ଇ: ଭକ୍ତ, ରାଜର୍ଷି ଶ୍ରୀ କୃଷ୍ଣ ସେବା ବିନୋଦ, ଧର୍ମ ପାଳକ ବୀରଚୂଡ଼ାମଣି, ଦାମ୍ଭିକ, ଚୁଏଙ୍ଗା ଲଙ୍ଗ ସାଇଫାବା, ଗୌଡ଼ ଭକ୍ତର ସାର୍ବଭୌମ ରାଜଗାଦୀ ଦଖଲ କଲେ ଏବଂ ଠିକ୍ ୫୦ ବର୍ଷ ପରେ ୧୯୪୧ ଖ୍ରୀ: ରେ ମରିଯିବାରୁ ତାଙ୍କର ବଡ଼ପୁଅ ମହାରାଜ କୁମାର

ବୋଧ ଚନ୍ଦ୍ରସିଂ ଗାଦୀପାଇଲେ ଏବଂ ତାଙ୍କର ସମୟରେ ଇଂଫାଲ୍ ଦ୍ୱିତୀୟ ମହାସମରର ସମ୍ମୁଖୀନ ହୋଇଥିଲା ଏବଂ ଏହି ଜାଗାରେହିଁ ଅକ୍ଷ ଶକ୍ତିର ଶେଷ ସମ୍ବଳ ଧ୍ୱଂସ ପାଇଥିଲା ଓ ମିତ୍ର ଶକ୍ତି ବିଜୟ ଟିକାରେ ଭୂଷିତ ହୋଇଥିଲା ।

ମଣିପୁର ରାଜାଙ୍କର ପତାକା ଓ ରାଜଚିହ୍ନ ହେଲା "ସର୍ପ" ମଣିପୁରୀଭାଷାରେ "ପାଖାଙ୍ଗବା" । ସର୍ପରାଜ ରାଜ୍ୟର ଇଷ୍ଟଦେବତା ଏବଂ ଏହାର ଗର୍ଭଉପରେ ରାଜାଙ୍କର ଅଭିଷେକ ଘର ପ୍ରତିଷ୍ଠିତ ।

ପୋଲ୍ (Polo) ଖେଳ ମଣିପୁରର ଜାତୀୟକ୍ରୀଡ଼ା । ପ୍ରତି ଗ୍ରାମରେ ଟଟ୍ଟୁଘୋଡ଼ାରେ ବସି ଏ ଖେଳ ଲୋକମାନେ ଖେଳନ୍ତି । ପୃଥିବୀକୁ ଏହା ମଣିପୁରର ଦାନ । ଏହି ଖେଳ ସାହାଯ୍ୟରେ ସେମାନେ ସୁନ୍ଦର ଯୁଦ୍ଧବିଦ୍ୟା ବି ଶିଖୁଥିଲେ ଏବଂ ମଣିପୁର ରାଜାଙ୍କର ପ୍ରଧାନ ଶତ୍ରୁ "ବର୍ମା" ସହିତ ଲଢୁଥିଲେ । ଇଂଫାଲର ଐତିହାସିକମାନେ କହନ୍ତି ମଣିପୁରରେ ଊନବିଂଶ ଶତାବ୍ଦୀରେ ପ୍ରାଣଦଣ୍ଡ ସ୍ତ୍ରୀମାନଙ୍କ ପ୍ରତି ନଥିଲା । ସେପରି କୌଣସି ଦୋଷ କଲେ ସ୍ତ୍ରୀମାନଙ୍କୁ ଅଣ୍ଟାପର୍ଯ୍ୟନ୍ତ ଲୁଗାକୁ ଟେକି ଦେଇ ବକ୍ଷସ୍ଥଳକୁ ଲାଲରଙ୍ଗରେ ରଞ୍ଜିତ କରାଇ ଜଣେ ବଜାର ମଝିରେ ଧରି ଠିଆ ହେଉଥିଲା ଏବଂ ଢେଙ୍ଗୁରା ଦିଆ ହେଉଥିଲା "ଦେଖିବ ଆସ ଗୋଟିଏ ରାକ୍ଷସୀକୁ ।"

ପୁରୁଷମାନଙ୍କ ପାଇଁ ଜୀବନଦଣ୍ଡ ଥିଲା କିନ୍ତୁ ତାର ପ୍ରଥା ଫାଶୀ ଆକାରରେ ନୁହେଁ । ଯେଉଁ ଲୋକ ଯେପରି ଭାବରେ କୌଣସି ହତ୍ୟା କରୁଥିଲା ତାକୁ ସେହି ଉପାୟରେ ହତ୍ୟାକରା ହେଉଥିଲା । କୌଣସି କୌଣସି କ୍ଷେତ୍ରରେ ଦୋଷୀ ୪୦ ମାଇଲ ଦୂରବର୍ତ୍ତୀ "ସୁଗାନୁ"ରେ ପହଞ୍ଚିଲେ ତାକୁ ବେକପର୍ଯ୍ୟନ୍ତ ପୋତି ଦିଆଯାଏ ଏବଂ ତାର ମୁଣ୍ଡକୁ ଗୋଟିଏ କାଠଗଦା ଦ୍ୱାରା ପିଟି ଖପୁରି ଫଟାଇ ଦିଆ ଯାଉଥିଲା । ପରେ କିନ୍ତୁ ଫାଶୀର ପ୍ରବର୍ତ୍ତନ ହେଲା ।

ମଣିପୁରୀମାନେ ସରଳ, ଆମାୟିକ, ଧର୍ମପରାୟଣ, ସଙ୍ଗୀତ ଓ ନୃତ୍ୟକଳାପ୍ରିୟ । ମଣିପୁରୀ ନାଟକଥା କିଏ ନଜାଣେ । ସମସ୍ତେ ବୈଷ୍ଣବ ସମ୍ପ୍ରଦାୟର ଲୋକ । ଏ ସୁନ୍ଦର ଉପତ୍ୟକାରେ ମହାସମରର ବିଭୀଷିକା

ଓ ବଭତ୍ସଳ୍ପାଳ ଯେ ଘଟିବ ତାହା ୧୯୪୧ ମସୀହା ସୁଦ୍ଧା ଇଂରେଜମାନେ ସ୍ୱପ୍ନରେ ଭାବ ନଥିଲେ ।

୭ତାରିଖ ଡସେମ୍ବର ୧୯୪୧ ମସିହାରେ ଜାପାନୀମାନେ ପାର୍ଲ ବନ୍ଦର ଉପରେ ଆକ୍ରମଣ କରନ୍ତି । ଠିକ୍ ଦଶଟି ସପ୍ତାହ ପରେ ମାର୍ଚ୍ଚ ୨ତାରିଖ ୧୯୪୨ ମସିହାରେ ମାଲୟ ଓ ସିଙ୍ଗାପୁର ଜାପାନୀମାନଙ୍କ ହାତରେ ପଡ଼େ ଏବଂ ସମଗ୍ର ଡଚ୍ ଇଷ୍ଟଇଣ୍ଡିଜ ତାଙ୍କର ହାତକୁ ଚାଲି ଆସିଲା । ଶ୍ୟାମରୁ ଜାପାନୀମାନେ ବର୍ମା ଭିତରକୁ ପଶି ଆସିଲେ । ରେଙ୍ଗୁନ ତାଙ୍କ ଦଖଲ ହେଲା । ମାର୍ଚ୍ଚ ଶେଷସୁଧା ଜାପାନୀମାନେ ଇରାବତୀର ସମତଳ ଅଂଶଦେଇ 'ଟଙ୍ଗୁ' ଦଖଲ କରି ମାଣ୍ଡାଲେ ଭିତରେ ପ୍ରବେଶ କଲେ ବର୍ମାରେ ଥିବା ବ୍ରିଟିଶ ବାହିନୀ ସାଲଜଇନ୍ ନଦୀ ଦେଇ ସିଥାଙ୍ଗ ଆଡ଼କୁ ହଟି ଆସିଲେ । ଏହି ବ୍ରିଟିଶ ବାହିନୀ ବର୍ମାରୁ ହଟି ଆସି ଇଂଫାଲରେ ପଶିଲେ । ସେମାନେ ପ୍ରାୟ ୪୦ହଜାର ସୈନ୍ୟ ଥିଲେ । ସେମାନଙ୍କ ପାଇଁ ଆସାମର ସମସ୍ତ ଚା' ବଗିଚାର ତରପଲିନ ଓ ଭାରତରୁ ସବୁ ଆଡୁ ତମ୍ବୁ ଯାଇ ଇଂଫାଲରେ ଛାଉଣି ପଡିଲା । ସେହିଦିନ ଏହି ସୁନ୍ଦର ସହର ସମରଭୂମିରେ ପରିଣତ ହେଲା । ବର୍ମାର ପ୍ରତି ଗାଁ ଓ ଗଳି କନ୍ଦରେ ଜାପାନୀମାନେ ପଶିଗଲେ । ଭାରତୀୟ ଆକାଶ ବାହିନୀ ଓ ବ୍ରିଟିଶ ଆକାଶ ବାହିନୀ ପ୍ରଚାରପତ୍ର ସାହାଯ୍ୟରେ ଜଣାଇ ଦେଲେ ବର୍ମାସାରା ସମସ୍ତେ ଭାରତକୁ ପଳାନ୍ତୁ । ପ୍ରାଣ ବିକଳରେ ସମସ୍ତେ ନିଜ ନିଜ ପ୍ରାଣ ବଞ୍ଚାଇବା ପାଇଁ ଚିଣ୍ଡଉଇନ୍ ନଦୀ ଦେଇ ଭାରତକୁ ପଳାଇ ଆସିଲେ । ଭାରତକୁ ସ୍ଥଳ ପଥରେ ପ୍ରବେଶ କରିବା ଅର୍ଥ ଇଂଫାଲ ଭିତରେ ପ୍ରଥମେ ଢୁକିବା । ଜଳପଥରେ ରାସ୍ତା ନଥିଲା । ଆକ୍ୟାବ ପର୍ଯ୍ୟନ୍ତ ଜାପାନୀମାନେ ପଶି ଆସି ଥିଲେ । ଲକ୍ଷ ଲକ୍ଷ ଭାରତୀୟ ରେଙ୍ଗୁନରେ ଥିଲେ ।

ଖାଲି ଭାରତୀୟ ନୁହନ୍ତି, ଯେତେ ବାହାର ଜଗତର ଲୋକ ବର୍ମା ଭିତରେ ଥିଲେ କେବଳ ବର୍ମୀଜ ମାନଙ୍କୁ ଛାଡ଼ି ସମସ୍ତଙ୍କ ଧାଡ଼ି ଛୁଟିଲା ଇଂଫାଲ ଆଡ଼କୁ । ପ୍ରତି ମୁହୂର୍ତ୍ତରେ ହଜାର ହଜାର ଆବାଳ ବୃଦ୍ଧ ବନିତା ରାସ୍ତା ଉପରେ ଚାଲୁଥାନ୍ତି । ଇଂଫାଲରେ ନ ରହି ପୁଣି ଆଗକୁ ଆସିବାକୁ ସେମାନଙ୍କର ଇଚ୍ଛା । ଗାଡ଼ି ସଂଖ୍ୟା ଖୁବ୍ କମ୍—ସିଭିଲ

ସର୍ଭିସ ସବୁ ବନ୍ଦ । ଯେଉଁ କେତୋଟି ସିଭିଲ୍‌ଆନ ଲଗ୍ ପରିସା ଲୋଭରେ ଚାଲୁଥିଲା ଏତେ ଲୋକ ଭିଡ଼ ହେଲା ଯେ ସେମାନେ ବି ବନ୍ଦ କରିବାକୁ ବାଧ୍ୟ ହେଲେ । ପେଟ୍ରୋଲ୍ ମିଳିଲା ନାହିଁ । "କୋଇଟେଙ୍ଗି" ନାମକ ଜାଗାରେ କେବଳ ଗୋଟିଏ ରିଫ୍ୟୁଜି କ୍ୟାମ୍ପ ଖୋଲା ହୋଇଥିଲା ସେତେବେଳେ ଏବଂ ଏତେ ଗୁଡ଼ିଏ ଲୋକ ପାଇଁ ଏହା ସମୁଦ୍ରକୁ ଶଙ୍ଖେ ପାଣି ପରି । ଛୋଟ ଛୋଟ ଶିଶୁ, ଅସହାୟା ସ୍ତ୍ରୀ ଲୋକ, ଅଶୀ ବର୍ଷର ବୃଦ୍ଧ ଜରାଜୀର୍ଣ୍ଣ ଓ କଙ୍କାଳମୟ ଅଗଣିତ ଜନତାରେ ମଣିପୁରର ଧୂଳି ଧୂସରିତ ରାସ୍ତା ପୂରିଗଲା । ଚାରିଆଡ଼େ ଖାଲି କ୍ରନ୍ଦନ, ଆର୍ତ୍ତନାଦ, ଖାଦ୍ୟ ପାଇଁ ଚିତ୍କାର ଓ ସାହାଯ୍ୟ ପାଇଁ ଭଗବାନଙ୍କୁ ଡାକ । କିଏ କାହାକୁ ପଚାରେ । ହଜାର ହଜାର ଲୋକ ମୃତ୍ୟୁ ମୁଖରେ ପଡ଼ିଲେ ରାସ୍ତାକଡ଼ରେ ମଡ଼ା, ଜଙ୍ଗଲ୍ ଭିତରେ ମଡ଼ା, ଟଙ୍କା ପଇସା ପଡ଼ିଛି କେଉଁଠି, ଚକ୍ ଚକ୍ ମଟର ଗାଡ଼ି ରାସ୍ତାକଡ଼ରେ ଗଡୁଛି । ଟ୍ରକ ଓଲଟି ପଡ଼ିଛି । ମା ମରି ପଡ଼ିଛି, ଛୁଆମାନେ ଆଗକୁ ଧାଉଁଛନ୍ତି । କେଉଁଠି ଶାଗୁଣା ଦଳ ମଣିଷ ଖପୁରି ଉପରେ ଥଣ୍ଟ ମାରୁଛନ୍ତି—କେଉଁଠି ଶିଆଳ କୁକୁର ମଣିଷର ଅନ୍ତ ବୁଜୁଳି ଟାଣି ଟାଣି ଖାଉଛନ୍ତି । ସେ ବିଭତ୍ସ ଦୃଶ୍ୟ ବର୍ଣ୍ଣନାତୀତ, ରାସ୍ତା କ୍ରମେ ଏପରି ଗହଳି ହୋଇ ଉଠିଲା ଯେ ମିଲିଟାରି ବାଲାଙ୍କର ଟ୍ରକ କି ପାଦରେ ମାର୍ଚ୍ଚ କରି ଯାଉଥିବା ସୈନ୍ୟମାନେ ବି ବାଟ ପାଇଲେ ନାହିଁ । ସମସ୍ତେ ବ୍ୟସ୍ତ କିପରି ବ୍ରହ୍ମପୁତ୍ର ନଦୀ ପାର ହୋଇ ଭାରତ ଭିତରକୁ ଆସିବେ । ସେମାନଙ୍କ ମତରେ ଇଂଫାଲ୍ ଆଉ ଭାରତ ଭିତରେ ନାହିଁ ।

ରାସ୍ତାରେ "ଜାଗିଲ୍ ଟୋମ୍ବି" ପାଖରେ ସୈନ୍ୟବାହିନୀ ଏ ଅଗଣିତ ବୁଭୁକ୍ଷ, ରୋଗାକ୍ରାନ୍ତ ଜନତାକୁ ଅଟକାଇବାକୁ ଚେଷ୍ଟା କଲେ କିନ୍ତୁ ଏ ଜନ ସମୁଦ୍ରକୁ ଅଟକାଇ ପାରିଲେ ନାହିଁ । ନାନା ପ୍ରକାର ମହାମାରୀ ଦେଖାଗଲା । ଖାଇଲେ ଖାଲି ପଦ—ମଲେ ହଜାର ହଜାର ଖାଇବା ବିନା, ଲୁଗା କାହାର ଅଣ୍ଟାରେ ନାହିଁ—ଗୋଡ଼ ଛିଣ୍ଡି ରକ୍ତାକ୍ତ । କିଏ ଝାଡ଼ାରେ ମରିଗଲା, କାହାକୁ ହଇଜା ହେଲା, କିଏ ବା ମେଲେରିଆରେ ମଲା । ସବୁ କିନ୍ତୁ ରାସ୍ତାକଡ଼ରେ । ଯେଉଁ କେତେଜଣ ଭାଗ୍ୟବାନ ଡିମାପୁର ରେଲ୍ ଷ୍ଟେସନରେ ପହଞ୍ଚିଲେ ସେମାନଙ୍କୁ ନେବା

ପାଇଁ ରେଳର ଅଭାବ । ମିଲିଟାରୀ ଜନତା ଓ ଲୋକ ପାଇଁ ସବୁ ବର୍ଜ୍ଜ୍ୟ ।

ଭାରତ ଭିତରୁ ଅସ୍ତ୍ର ଶସ୍ତ୍ର ଇଂଫାଲ ଆଡ଼କୁ ପଠା ହେଉଛି । ବ୍ରିଟିଶ ଶାସନ କର୍ତ୍ତାମାନେ ଶରଣାର୍ଥୀ ମାନଙ୍କୁ ଆଉ ପଚାରୁଛନ୍ତି କେତେବେଳେ ।

୧୯୪ ... ଲ ମାସରେ ପ୍ରଥମ ବୋମା ବର୍ଷଣ ହେଲା ଇଂଫାଲ ଉପରେ । ସିଏ ଯୁଆଡ଼େ ପଳାଇ ଗଲେ ଜଙ୍ଗଲ ଭିତରକୁ । ମଣିପୁରର ସମସ୍ତ ସରକାରୀ ଅଫିସ, ରାଜାଙ୍କର କୋଠା ସବୁ ଉପରେ ବୋମା ମାଡ଼ ହେଲା । ସରକାରୀ ଅଫିସରମାନେ ବି କିଏ କୁଆଡ଼େ ପଳେଇ ଗଲେ । କେହି କାହାର ହିସାବ ରଖିଲେ ନାହିଁ । ଜେଲରୁ କଏଦୀମାନେ ଖସିଲେ ଏବଂ କେତେ ଗୁଣ୍ଡା ଶ୍ରେଣୀୟ ଲୋକ ଏହାର ସୁବିଧା ନେଇ ଲୁଟ ତରାଜ ଆରମ୍ଭ କରିଦେଲେ । ପାଲେଲ୍, ଟାମୁ ରାସ୍ତା ବି ବନ୍ଦ ହୋଇଗଲା । ବର୍ମାରୁ ଫେରୁଥିବା ବ୍ରିଟିଶ ବାହିନୀମାନେ କିଏ କେଉଁ ବାଟ ଦେଇ ଆସିଲେ ଜଣା ନାହିଁ । ଇଂଫାଲରେ ଥିବା "ଆସାମ ରାଇଫଲସ୍" ବାହିନୀ ବି ହଟି ଆସିଲେ ।

ଦ୍ୱିତୀୟଥର ପାଇଁ ମେ ମାସରେ ପୁଣି ବୋମା ବୃଷ୍ଟି ହେଲା । ଏଇଠି ଜାପାନୀମାନେ ଭାରି ଗର୍ବରେ ଫୁଲି ଉଠିଲେ ଏବଂ ପୃଥିବୀକୁ ଜଣାଇ ଦେଲେ ଯେ ଇଂଫାଲ ଜନଶୂନ୍ୟ ହୋଇଗଲା ଏବଂ ତାଙ୍କ ଅକ୍ତିଆରରେ ଆସିଗଲା ।

ପଛଘୁଞ୍ଚା ଦେଇଥିବା ବ୍ରିଟିଶ ବାହିନୀ କିନ୍ତୁ ଖୁବ୍ କଷ୍ଟ ସ୍ୱୀକାର କରି ଇଂଫାଲରେ ଜମା ହୋଇଗଲେ—ସେମାନେ ବି ଅର୍ଦ୍ଧମୃତ ଅବସ୍ଥାରେ ପଡ଼ିଥିଲେ ସେତେବେଳେ କିନ୍ତୁ ସେମାନଙ୍କର ପୁନର୍ମିଳନ ସେମାନଙ୍କର ମନରେ ଆଶାର ସଞ୍ଚାର ଦେଲା ଏବଂ ନୈତିକ ବଳ ତାଙ୍କର ଖୁବ୍ ଥିଲା ସେତେବେଳକୁ । ଭାରତରୁ ଏବଂ ଆକାଯ୍ଯାବ ଦେଇ ଜଳପଥରୁ ଏବଂ ଆକାଶ ମାର୍ଗରୁ ସେମାନଙ୍କୁ ବହୁତ ସାହାଯ୍ୟ ମିଳିଲା । ସେମାନେ ଆଉ ପଛକୁ ନହଟି ଇଂଫାଲରେ ଘାଟି ସ୍ଥାପନ କଲେ । ଆସାମର ଭୀଷଣ ବର୍ଷା, ଖାଦ୍ୟଅଭାବ, ପୋଷାକପତ୍ର ଅଭାବ ଓ ଔଷଧ

ଅଗ୍ରବ ସଙ୍ଗେ ସେମାନେ ଲାଗିପଡ଼ିଲେ ନୂଆବଳ ଓ ପ୍ରାଣମୂର୍ଚ୍ଛା ଉଦ୍ୟମରେ ।

୧୭ଇଣ୍ଡିଆନ ଡିଭିଜନ (17th Indian Division) ୧ନମ୍ବର ବର୍ମା ଡିଭିଜନ (1 Burma Division) ୭ମ ଟ୍ୟାଙ୍କ ବ୍ରିଗେଡ (7th Tank Brigade) ଜେନେରାଲ ସ୍ଲିମଙ୍କ ନେତୃତ୍ୱରେ ଲଗି ପଡ଼ିଲେ । ସେମାନଙ୍କ ସଙ୍ଗରେ ଜେନେରାଲ ଷ୍ଟିଲୱେଲ ଆସି ମିଶିଗଲେ ।

ରାସ୍ତାଘାଟ, ପୋଲ ପ୍ରଭୃତି କାମ ଜୋର ସୋରରେ ଚାଲିଲା । ୨୩ନଂ ଭାରତୀୟ ଡିଭିଜନଙ୍କୁ ବାହାରରେ ଟ୍ରେନିଂ ଦିଆଯାଇ ସଜ୍ଜିତ କରାଗଲା ଏବଂ ସେମାନେ ମାଡ୍ରାଜ ଉପକୂଳ ଠାରୁ ଚଟ୍ଟାଗଙ୍ଗ ପର୍ଯ୍ୟନ୍ତ ପଇନ୍ତରା ମାରିଲେ । କାଳେ କୌଣସି ଜାପାନୀଦଳ ଆସି ଉପକୂଳରେ ଓହ୍ଲାଇ ପଡ଼ିବେ ଏହି ଅବସରରେ । ତିନୋଟି ବ୍ରିଗେଡ ଯଥାକ୍ରମେ କାବ ଉପତ୍ୟକା (Kabaw Valley) ମଣିପୁର ନଦୀର ଉପତ୍ୟକା ଅଞ୍ଚଳ, ହୋମାଲିନ ଓ ଉଖ୍ରୁଲ ପଥକୁ ଜାପାନୀମାନଙ୍କ ବିରୁଦ୍ଧରେ ଜଗି ବସିଲେ, ମେଜର ଜେନେରାଲ ରେଜିନାଲ୍ଡ ସାଭରି (Majar General Reginald Savory)ଙ୍କ ନେତୃତ୍ୱରେ । ଯୁଦ୍ଧର ସାଜସଜ୍ଜା ଜୋର ସୋରରେ ଇଂଫାଲରେ ଚାଲିଲା । ଗରିଲା ବାହିନୀ ଗଢ଼ାଯାଇ ଜଙ୍ଗଲଯୁଦ୍ଧ ଶିକ୍ଷା ଦିଆହେଲା । ଜାପାନୀମାନେ ଟିକ୍ ମାଙ୍କଡ଼ଙ୍କ ପରି ଗଛପତ୍ରେ ପଶୁଥାନ୍ତି । ସେମାନଙ୍କୁ ମାରିବା ପାଇଁ ଯେତେ ପ୍ରକାର ଚାଲିକ କରାଯାଇପାରେ କରାଗଲା ।

ଏ ସବୁ ସଙ୍ଗେ ବର୍ଷାଦିନ ଏବଂ ଜଙ୍ଗଲ ଭିତରେ ନାନା ପ୍ରକାର ରୋଗ ସିପାହୀମାନଙ୍କୁ ବ୍ୟତିବ୍ୟସ୍ତ କରି ପକାଇଲା—ବର୍ମାରୁ ଗୁପ୍ତଚରମାନେ ଆସି ଜାପାନୀମାନଙ୍କ ସପକ୍ଷରେ ପ୍ରଚାର ଚଳାଇଲେ । ୫୯ ଇଣ୍ଡିଆନ ଜେନେରାଲ ହାସପାତାଲ (59 Indian General Hospital) ପାହାଡ଼ ଉପରେ ଖୋଲାହେଲା 28 Comlined Military Hospital ଥୋବାଲ ପାଖରେ ଖାଲି ଛପର ଘର ଓ ତଳ ମାଟିରେ ଖୋଲା ହୋଇଗଲା । ସୈନ୍ୟମାନେ ଟିକିଏ ସ୍ୱସ୍ତିର ନିଶ୍ୱାସ ମାରିଲେ । ପ୍ରବଳ ଜୋକ (helches) ବି ବାଦ ସାଧିଲେ

ସେତେବେଳକୁ ସୈନ୍ୟବାହିନୀ ସାଥିରେ । ପ୍ରବଳ ବର୍ଷାରେ ରାସ୍ତା ଘାଟ ସବୁ ଧୋଇ ହୋଇ ଯାଉଥାଏ ।

୪ର୍ଥ କୋର (4th Corps) ର ନେତୃତ୍ୱରେ ଯାହା ହେଉ, ୧୯୪୩ ଜାନୁୟାରୀ ସୁଧା ଇଂଫାଲ, ଢିମାପୁର ରାସ୍ତା କୌଣସିମତେ ତିଆରି ସରିଗଲା—ନୂଆ ନୂଆ ହସପିଟାଲ କେତେ ଖୋଲା ହେଲା—ଜିପ୍ ସବୁ ଆସିଗଲା । ୧୯୪୩ ଫେବୃଆରୀ ମାସରେ 4th Corpsର ହେଡ଼ କ୍ୱାଟର ଜୋରହାଟରୁ ଇଂଫାଲ ଚାଲି ଆସିଲା । ଲେଫ୍‌ଟନାଣ୍ଟ ଜେନେରାଲ ସ୍କୁନ୍ସଙ୍କ ନେତୃତ୍ୱ ଅଭିନନ୍ଦନୀୟ ଓ ପ୍ରଶଂସନୀୟ । ମେଜର ଜେନେରାଲ ଡେଭିଡ଼ ଟେନାଣ୍ଟ କାଓ୍ୱାନ ନଂ ୧୭ ଭାରତୀୟ ଡିଭିଜନ କମାଣ୍ଡର ହିସାବରେ ଅସୀମ ସାହସ ଓ ଧୈର୍ଯ୍ୟର ସହିତ ଭାରତୀୟ ଜବାନମାନଙ୍କର ପ୍ରିୟ ପାତ୍ର ହୋଇଥିଲେ । ରୟାଲ ଏଆର ଫୋର୍ସ ଓ ଇଣ୍ଡିଆନ ଏଅର ଫୋର୍ସ ବ ସ୍ଥଳ ବାହିନୀ ସଙ୍ଗରେ ହାତ ମିଳାଇ ଆସ୍ଥାନ ଜମାଇଲେ । ଚିନ୍ ହିଲ୍‌ସର (Chin Hills) ହାକା, ଫାଲମ ଓ ଟିଡିମ ଯାଗାମାନଙ୍କରେ ଆସ୍ଥାନ ସୁଦୃଢ଼ ହେବାକୁ ଲାଗିଲା । ଟିଡିମ ଓ କାଲେମେୟୋ (Kalemeyo)ର ଦୁର୍ଗମ ପାହାଡ଼ ଭିତରେ ବି ରାସ୍ତାକାମ ଚାଲିଲା ।

ଏଆଡ଼େ କାଲେମେୟୋ ପାଖରେ ଫୋର୍ଟ ହ୍ୱାଇଟ୍ (Fort white) ଦଖଲ କରି ଜାପାନୀମାନେ ୟାଜାଗିଓ (Yazagyo) ପାଖରେ ତାଙ୍କର ଆସନ ସୁଦୃଢ଼ କରିବାରେ ଲାଗିଥାନ୍ତି । ଡାଙ୍ଗଲ ଟୋମ୍ପି, ପାଲେଲ ଓ ଟିଡିମ ରୋଡ଼ ପାଖରେ ବ୍ରିଟିଶ୍‌ର ଯୁଦ୍ଧ ଅସ୍ତ୍ରଶସ୍ତ୍ର ଓ ଖାଦ୍ୟ ପଦାର୍ଥ ଜମା ହେଉଥାଏ ।

୧୯୪୨ ମସିହା ପରେ ପରେ ଦୁଇପକ୍ଷ ଖୁବ୍ ଜୋରସୋରରେ ସଜବାଜ ହେଉଥାନ୍ତି ପ୍ରତି ଆକ୍ରମଣ ପାଇଁ । ଜାପାନ ଆଶା କରିଥିଲା ଯେ ବର୍ମାରେ ସେମାନଙ୍କୁ ବ୍ରିଟିଶର ପ୍ରବଳ ପ୍ରତିରୋଧର ସମ୍ମୁଖୀନ ହେବାକୁ ପଡ଼ିବ । କିନ୍ତୁ ସ୍ୱପ୍ନ ପରି ସେମାନେ ବର୍ମା ଦଖଲ କରିଗଲେ । ପଶ୍ଚିମ ସୀମାନ୍ତରେ ଯୁଦ୍ଧର ଅବସ୍ଥା ଅଲଗା ହେଉଥାଏ । ସୁତରାଂ ସେମାନେ ହଠାତ୍ କପରି ଭାବରେ ଅଗ୍ରସର ହେବାକୁ ପଡ଼ିବ ବୋଲି ଚିନ୍ତିତ ହୋଇ ପଡ଼ିଥିଲେ ବୋଧହୁଏ । ତାଙ୍କର ଦକ୍ଷିଣ ବାହିନୀର

କେନ୍ଦ୍ରସ୍ଥଳ ଥିଲା ସିଙ୍ଗାପୁର । ସେମାନେ ପୁଣିପୁଣି ଇଂଫାଲ ଦଖଲ କରି ଭାରତକୁ ଅଗ୍ରସର ହେବାକୁ ଦୃଢ଼ ପରିକର । ନଂ ୧୫ ଜାପାନୀ ସୈନ୍ୟ ବାହିନୀ (15th Japanese Army) ଉପରେ ଏହି କାମ ପୁରାପୁରି ନ୍ୟସ୍ତ ଥିଲା । ବର୍ମାରେ ଥିବା ତାଙ୍କର ଜଣେ ଜେନେରାଲ ମୁଟାଗୁଚି (General Mutaguchi) ଙ୍କ ନେତୃତ୍ୱରେ ଏହି ଯୁଦ୍ଧ ଚାଲିତ ହେଉଥିଲା ।

ହଠାତ୍ ମିତ୍ର ଶକ୍ତିର ବ୍ରିଗାଡିୟର ଉଇଙ୍ଗେଟଙ୍କ ସୈନ୍ୟବାହିନୀ ଜାପାନୀ ମାନଙ୍କ ଅଧିକୃତ ଅଞ୍ଚଳର ପଛପଟୁ ପଶି ଆକ୍ରମଣ କରିଦେଲେ । ଜାପାନୀମାନେ ସ୍ୱପ୍ନରେ ସୁଦ୍ଧା ଏହା ହୋଇ ପାରିବ ବୋଲି ଭାବି ନ ଥିଲେ । ସୁତରାଂ ତାଙ୍କ ମୁଣ୍ଡରେ ଚେତୁଲିଆ ବଜ୍ରା କାନ୍ଧୁଡ଼ିଲା ଏବଂ ସେମାନେ ତାଙ୍କର ଗତିବିଧି ବଦଳାଇବାର ଲକ୍ଷ୍ୟ ରଖି ପୁଣି ଜୋର୍‌ସୋର୍‌ରେ କାମ କଲେ । ଏଣେ ୟୁନାନ ପ୍ରଦେଶର ଚୀନାମାନଙ୍କ ଆକ୍ରମଣକୁ ପ୍ରତିରକ୍ଷା କରିବାକୁ ପଡ଼ିବ, କାରଣ ଚୀନାମାନେ ଆମେରିକାର ସାହାଯ୍ୟ ପାଇ ବର୍ମା ଭିତରକୁ ପଶିବାକୁ ଚେଷ୍ଟା କରି ଜାପାନୀମାନଙ୍କ ବିରୁଦ୍ଧରେ ଲଢ଼ିବାର ଆଭାସ ଦେଇଥିଲେ । ସୁତରାଂ ସେମାନଙ୍କୁ ତିନିପଟେ ବର୍ମା ଭିତରେ କାମ କରିବାକୁ ପଡ଼ୁଥିଲା ।

ଗୋଟିଏ ଡିଭିଜନ ସୈନ୍ୟ ୟୁନାନ ପ୍ରଦେଶର ଦ୍ୱାର ଦେଶକୁ ଜଗି ରହିଲା, ଆଉ ଗୋଟାଏ ଡିଭିଜନ ଉତ୍ତର ବର୍ମାକୁ ଜଗି ରହିଲା ଓ ଆଉ ଗୋଟିଏ ଡିଭିଜନ ଚିଣ୍ଡୁଇନ ନଦୀର ପଶ୍ଚିମ ଓ ଉତ୍ତର ପଶ୍ଚିମ ପଟକୁ ଜଗି ରହିଲା । ବର୍ମାର ଜାପାନୀ ଆର୍ମୀ କମାଣ୍ଡର ଜେନେରାଲ କାୱାବେ (General Kawabe Masakazu) ଲେଫ୍‌ଟ ନାଣ୍ଟ ଜେନେରାଲ ମୁଟାଗୁଚି (Lt. General Mutaguchi Renya 15th Japanese Army) ଓ ଲେଫ୍‌ଟନାଣ୍ଟ ଜେନେରାଲ ସାଟୋ (Lt. General Sato Kotuku)—31st Japanese Division) ଏ ଯୁଦ୍ଧରେ ମୁଖ୍ୟ ଅଧିନାୟକ ଥିଲେ ।

ଠିକ୍ ଏହି ସମୟରେ ଜେନେରାଲ ମାକ୍ ଆରଥରଙ୍କ ସୈନ୍ୟମାନଙ୍କ ପ୍ରତି ଆକ୍ରମଣକୁ ଜାପାନୀମାନେ ପ୍ରମାଦ ଗଣିଲେ ତଥାପି "ଇଂଫାଲ" ଦଖଲ ତାଙ୍କ ମନରୁ ଯାଇ ନଥାଏ । କିନ୍ତୁ ଚକ ଘୂରିଗଲା—

ତାଙ୍କର ଭାରତ ଦଖଲ ସ୍ୱପ୍ନରେହିଁ ରହିଗଲା । ଇଂଫାଲ୍ ଦଖଲ କରିବା ତାଙ୍କର ପ୍ରଧାନ ଲକ୍ଷ୍ୟ ସେଥିପାଇଁ ସେମାନେ Operation (ଇଉ) "U" ବୋଲି ନାମିତ କରି ସବୁ ପ୍ଲାନ କରିଥିଲେ । ଇଣ୍ଡିଆନ ନେସନାଲ୍ ଆର୍ମୀଙ୍କର ବି ସାହାଯ୍ୟ ନେଲେ । "ୟୁମି" (Yumi) ଡିଭିଜନ ବି ତାଙ୍କର ବଡ଼ ଲଢ଼ୁଆ ବାହିନୀ । ଶ୍ୱେତ ବ୍ୟାଘ୍ର ଚିହ୍ନ ଏହି ଡିଭିଜନର ଯୋଦ୍ଧାମାନେ ଉତ୍ତର-ପୂର୍ବ ଜାପାନରୁ ଅଣା ହେଲେ । ଏହି ସବୁ ହେଉ ହେଉ ବ୍ରିଟିଶ ବାହିନୀ ବି ତାର ବାହିନୀ ସବୁ ଭାରତ ଭିତରୁ ସଙ୍ଗ୍ରିତ କରି ନୂଆ ବଳ ନେଇ ଆଗେଇବାକୁ ଲାଗିଲେ । ବର୍ମାରୁ ବ୍ରିଟିଶ ବାହିନୀ ବି ଆସି ୧୯୪୨ରୁ ଇଂଫାଲରେ ଥିଲେ । ସେମାନେ ବି ବିଶ୍ରାମ ପରେ ରଣ ଦୁନ୍ଦୁଭି ବଜାଇବାକୁ ଲାଗିଲେ ।

ଇତି ମଧ୍ୟରେ ଜାପାନୀମାନେ "ଇଂଫାଲ"କୁ ଘେରାଉ କରି କୋହିମା ଆଡ଼କୁ ଗତି କରି ଲାଇନ୍ ଅଫ୍ କମିଉନିକେସନ (Lofc) କାଟି ଦେଲେ । ଭାରତ ଭିତରୁ କୌଣସି ସାହାଯ୍ୟ ଆସି ପାରିବ ନାହିଁ ଭାବି ତାଙ୍କର ସୈନ୍ୟ ପରିଚାଳନା କଲେ । ଭାଗ୍ୟ କ୍ରମେ ଟାମୁ-ଇଂଫାଲ ରୋଡ଼ ଓ ଟିଡିମ-ଇଂଫାଲ ରୋଡ଼କୁ ଅବରୋଧ କରିଦେଲେ । କୋହିମା ଓ ଇଂଫାଲ ଉପରେ ଘନ ଘନ ବୋମା ବୃଷ୍ଟି କଲେ । ସତକୁ ସତ ସେମାନେ ଏ ବାଗରେ କୋହିମା ଓ ସେ ବାଗରେ ସିଲ୍‌ଚର ଆଡ଼କୁ ଗତି କଲେ । 4th Corps (୪ର୍ଥ କୋର୍)ର ସମସ୍ତ ସୈନ୍ୟ ବୃନ୍ଦ ଜାଙ୍ଗଲ ଟୋମ୍ବି ଓ ଇଂଫାଲ୍ ଭିତରେ ପଡ଼ି ରହିଲେ । ଘେରରେ ପକାଇ ସେମାନେ ବି ଦଳ ଦଳ କରି ସୈନ୍ୟଙ୍କୁ Concentration Campକୁ ଟାଣିଲେ । ମୁଁ ବି ସେ ଘେରରେ ଥାଏ ଏବଂ କଷ୍ଟରେ ପଡ଼ିଥାଏ ଖାଲି ଦିନ ଗଣୁଥାଏ କପରି କେଉଁଦିନ ଆମ ୟୁନିଟ୍‌ର ପାଳି ପଡ଼ିବ ନା ନାହିଁ ?

ଆମେ ଅବଶ୍ୟ କିଛି ଜାଣୁ ନ ଥାଉ ଯେ ଘେରରେ ପଡ଼ିଚୁ ବୋଲି କାରଣ ଆମର ଆଭ୍ୟନ୍ତରୀଣ ଶୃଙ୍ଖଳା ଓ କାର୍ଯ୍ୟ ଠିକ୍ ସବୁ ଚାଲୁଥାଏ । ଖାଲି ଗୋଟିଏ ଦୁଇଟି କଥାରୁ ସାଧାରଣ ସିପାହୀ ଏହା ବୁଝିପାରେ ସେ ହେଲା ୧—ଖାଇବା ଜିନିଷ ପୂର୍ବରୁ ୧।୪ ଅଂଶ ମିଳୁଥାଏ ୨—ଚିଠିପତ୍ର କି ଟଙ୍କା ପଇସା ବାହାରକୁ ଯାଇ ପାରୁ ନଥାଏ କି ଆସି

ପାରୁ ନଥାଏ । (ଘେର ଭିତରେ ପଡ଼ିଥିବାରୁ ଅନୁଭୂତ ଅନ୍ୟତ୍ର ବର୍ଣ୍ଣିତ ହୋଇଅଛି)

ଆମେରିକାନମାନଙ୍କ ସାହାଯ୍ୟ ବ୍ରିଟିଶ ମାନଙ୍କୁ ବହୁତ ବଳ ଦେଇଥିଲା ଏବଂ ସେମାନେ ଜଳ, ସ୍ଥଳ ଓ ଆକାଶ ପ୍ରତ୍ୟେକ ଦିଗରୁ ଜାପାନୀ ମାନଙ୍କୁ ଅବରୋଧ କରିବାରେ ଲାଗିଲେ । ଏ ଘଞ୍ଚ ଜଙ୍ଗଲ ଭିତରେ ସେମାନଙ୍କର ଜିନିଷପତ୍ର, ଗୋଲା ବାରୁଦ ବୋହିବା ପାଇଁ ଯଥେଷ୍ଟ ପରିମାଣରେ ଯାନ ବାହାନ ବି ଜାପାନୀମାନଙ୍କ ହାତରେ ନ ଥିଲା । ସହଜେ ତ ଖାଦ୍ୟ ପଦାର୍ଥ ଅତି ଅଭାବ, ଏଥିରେ ଯୁଦ୍ଧ ଚାଲିବ କିପରି ? ଯୁଦ୍ଧ ଭୂଇଁକୁ ଖାଦ୍ୟ ପଦାର୍ଥ ଯୋଗାଣକୁ ଠିକମତ ଚାଲୁ ରଖିବା ହେଲା ପ୍ରଧାନ କର୍ତ୍ତବ୍ୟ । ୪ଦିନ ଖାଦ୍ୟ ନ ପାଇଲେ ସିପାହୀ ଯୁଦ୍ଧ କରିପାରେନା ଏବଂ ପଛଘୁଞ୍ଚା ଦେବାକୁ ବାଧ୍ୟ । ନଈ ନାଳ ପୂର୍ଣ୍ଣ ଏ ଦୁର୍ଗମ ଜଙ୍ଗଲ ପଥରେ ଯାନବାହାନ ଅଭାବରୁ ଘୋଡ଼ା, ଖଚର, ହାତୀ ଏବଂ ବଳଦ ପିଠିରେ ଖାଦ୍ୟ ପଦାର୍ଥ ବୁହା ହେଲା । ଏ ଜନ୍ତୁମାନଙ୍କର ବି ଅଭାବ ପଡ଼ିଲା । ବିଶେଷ ଭାବେ ଏ ଜନ୍ତୁ ଜାପାନୀ ମାନଙ୍କର ନଥିଲେ । ହାତୀ, ଖଚର କୌଣସି ମତେ ଦୁଇଦିନ ନ ଖାଇଲେ ଚଳିପିବେ । କିନ୍ତୁ ବଳଦ ବାପୁଡ଼ା ବିଚରା ହାଲିଯାଏ । ଖାଦ୍ୟର ଅଭାବରେ ଏମାନେ ସେ ବଳଦ ଗୁଡ଼ିକୁ ମାରି ଖାଇ ପକାନ୍ତି ।

ସେ ଯାହାହେଉ, କୌଣସି ମତେ ୧୯୪୪ ପର୍ଯ୍ୟନ୍ତ ଏମାନେ ଖୁବ୍ ଧନ ଜୀବନ ହରାଇ ଇଂଫାଲ ପର୍ଯ୍ୟନ୍ତ ଆସିଲେ କିନ୍ତୁ ତାପରେ ଆଉ ନୁହେଁ । ତାଙ୍କ ହେଡ୍‌କ୍ୱାର୍ଟରରୁ ୧୯୪୪ ଜାନୁୟାରୀ ମାର୍ଚ୍ଚ ସୁଦ୍ଧା ଇଂଫାଲ ଦଖଲ କରିବାକୁ ଅର୍ଡର ଆସିଥିଲା । କିନ୍ତୁ ଜେନେରାଲ କାବେ ମାର୍ଚ୍ଚ ସୁଦ୍ଧା ନିଜର ସୈନ୍ୟବାହିନୀକୁ ପ୍ରସ୍ତୁତ କରି ପାରିଲେ ନାହିଁ । ତଥାପି ୧୯୪୨ ଓ ୪୩ ମସିହାରେ ଏମାନେ ବ୍ରିଟିଶ ଓ ଭାରତୀୟ ବାହିନୀଙ୍କୁ ନାକେଦମ କରି ପକାଇ ଥିଲେ । ଶେଷରେ ୧୯୪୪ ଅପ୍ରେଲ ପରେ ଏମାନଙ୍କର ପତନ ଆରମ୍ଭ ହେଲା ଏବଂ ସେମାନେ ଖସି ଖସି ପଛକୁ ଚାଲିଲେ ଓ ଆମ୍ଭେମାନେ ତାଙ୍କ ପିଚ୍ଛାଧରି ଆଗକୁ ଚାଲିଲୁ । ଚିଣ୍ଡୱିନ ନଦୀ ପୁଣି ପାରହେବାକୁ ପଡ଼ିଲା । ବର୍ମା ଭିତରେ ପୁଣି ପଶିଲୁ ।

ଶେଷରେ ୧୯୪୫ ମସିହା ମଧ୍ୟ ଭାଗରେ ଯୁଦ୍ଧ ଶେଷହେଲା । ଏବଂ ସେତିକି ଆମକୁ ନାମିତ କରାଗଲା **Occupational Forces.**

ଏ ଯୁଦ୍ଧରେ ବ୍ରିଟିଶ ବାହିନୀଙ୍କୁ କେତେ ବନ୍ଧୁର ବାଧା ବିଘ୍ନର ସମ୍ମୁଖୀନ ହେବାକୁ ପଡ଼ିଥିଲା, ତାହା ବର୍ଣ୍ଣନାତୀତ । ଯେଉଁମାନେ **Middle East force (M. E. F.), Persia and Iran force (P. A. I.)** ର ଜର୍ମାନ ବା ମିସିଲ ତରଫରେ ଲଢ଼ୁଥିଲେ ସେମାନଙ୍କର ଏ ଅନୁଭୂତି ନ ଥିବ । ଆଜି ଗୃହନାର ବର୍ବର ଆକ୍ରମଣବେଳେ ମୁଁ ଭାବି ପାରୁଛି ଆମର ଭାରତୀୟ ଜବାନମାନେ ଏ ଜଙ୍ଗଲ ଓ ପାହାଡ଼ ଯୁଦ୍ଧରୁ ବହୁତ କିଛି ଅଭିଜ୍ଞତା ହାସଲ କରି ତାକୁ କାର୍ଯ୍ୟକାରୀ କରିଥିବେ ଏବଂ ସେମାନଙ୍କର ଅଫିସରମାନେ ବହୁତ ଜାଇଦା ବି ଶିଖିଥିବେ ଓ ଶିଖାଇ ଥିବେ ମଧ୍ୟ । ଉଡ଼ାଜାହାଜ ଯୋଗେ ଫଟୋ ନେବା ଏ ଅଞ୍ଚଳରେ କେତେ ବିପଦପୂର୍ଣ୍ଣ ତାହା ଜଣେ ସାଧାରଣ ନାଗରିକର ପରିକଳ୍ପନାର ବାହାରେ । ଅବସ୍ଥା କିପରି ଥିଲା ତା ନ ଶୁଣିଲେ ତ ସହଜେ ଜାଣିବା କଷ୍ଟ ଏବଂ ଜାଣିଲେ ବିଶ୍ବାସ କରିବା ବି କଷ୍ଟ । ଜଙ୍ଗଲ ଭିତରେ ଛୋଟ ଛୋଟ ପେଟ୍ରୋଲ ( ୭ ରୁ ୧୦ ଜଣ ସିପାହୀଙ୍କୁ ନେଇ ଜଣେ ଲେନ୍ସ ନାଏକ, ନାଏକ କି ହାବଲଦାରଙ୍କୁ ବୁଲିବାକୁ ପଡ଼େ ତାଙ୍କୁ ପେଟ୍ରୋଲ କହନ୍ତି ) ସବୁ ବୁଲି ଖବର ସଂଗ୍ରହ କରନ୍ତି ଏବଂ ଶତ୍ରୁ ସୈନ୍ୟଙ୍କ ମିତ୍ରଧରନ୍ତି କିମ୍ବା ସେମାନଙ୍କର ଆସ୍ଥାନ ଦେଖି ଆସନ୍ତି । ମୁହାଁ ମୁହିଁ ହେଲେ ଯୁଦ୍ଧ ଚଳାନ୍ତି । ସେଥିରେ ମିଏ ମଲା ଗଲା ଏବଂ ଯେ ବଞ୍ଚିଲା ସେ ଖବର ଧରି ଆସିଲା । ତାଛଡ଼ା ଜାପାନୀ ଭାଷା ବୁଝିବା ଭାରି କଷ୍ଟ ଏବଂ ସେତେବେଳେ ସେ ଭାଷା ଜାଣିବା ଲୋକ **4rth Corps** ରେ ବହୁତ କମ୍ । ବଡ଼ ବଡ଼ ଅଫିସର ମୁଁ ଯାହା ଜାଣିଛି ପ୍ରାୟ ୧୫।୨୦ ଜଣ ସେ ଭାଷା ଜାଣିଥିଲେ ଏବଂ ତାକୁ ଟ୍ରାନ୍ସଲେଟ୍ କରି ସବୁ ଖବର ଯୋଗାଉଥିଲେ । ସେ ସମୟରେ **C/S D/C** ସବୁ ଖୋଲା ହେଲା ଅର୍ଥାତ୍ **The combined Services Detailed Interrogation Centres.**

ଦୁଇଟି ଦଳେ ସୈନ୍ୟ ଜଙ୍ଗଲ ଭିତରେ ପେଟ୍ରୋଲ କରୁଥାନ୍ତି । ହଠାତ୍ ପଡ଼ିଲେ ବାଘ ହାବୁଡ଼ରେ । ଏଣେ ଗୁଳି

ଫୁଟାଇଦେଲ ମରେ ନ ଫୁଟାଇଲେ ବି ମରେ । ଗୁଳି ଫୁଟିଲେ ଯଦି ପାଖରେ ଜାପାନୀମାନେ ଅଛନ୍ତି ସେମାନେ ନିଶ୍ଚୟ ଜାଣିପାରି ଏମାନଙ୍କର କ୍ଷତି ଘଟାଇବେ ଏବଂ ଯଦି ଗୁଳି ନ ଫୁଟାଉଛନ୍ତି ବାଘ ସ୍ୱାଙ୍କ ଭିତରୁ କାହାକୁ ହେଲେ ଖାଇବ ।

ମୋର ନିଜର ଅନୁଭୂତ କଥା କହୁଛି । ଆମେ ଇଂଫାଲ ରୁଡ଼ ବର୍ମା ଅଭିମୁଖେ ବାହାରୁଥାଉ । ଗୋଟିଏ ଯାଗାରେ ରାତି ହେଲା ଆମେ ପ୍ରାୟ ଅଫିସର ଓ ସିପାହୀ ମିଶି ୩୦ଜଣ ଥାଉ । ହଠାତ୍ ରାତିଅଧ ବେଳକୁ ଆମ ଟେଣ୍ଟ ଚାରିପଟେ ପଲେ ଗୟଳ । ସେମାନେ ଆଗକୁ ନ ଆସି ପ୍ରାୟ ଖଣ୍ଡେ ଦୂରରେ ଠିଆହୋଇ ସଁ ସଁ ଶବ୍ଦ କରିବାରୁ ଆମର ସେଣ୍ଟ୍ରି ବ୍ୟସ୍ତହୋଇ ସମସ୍ତଙ୍କୁ ଚୁପ୍‌ଚୁପ୍ ଉଠାଇ ଦେଲା । ମେସିନ୍‌ଗନ୍ ରେଡ଼ି ହୋଇ ଆଲୁଅ ଟିପା ହେଲା ବେଳକୁ ପଲେ ଗୟଳ । ଅବଶ୍ୟ ଗୁଳି ଫୁଟା ହୋଇନି । ଆଲୁଅ ତାଙ୍କ ଉପରେ ପଡ଼ିଲାକ୍ଷଣି ସେମାନେ ପଛକୁ ପଳାଇଗଲେ । ମନେକର ଯଦି ସେମାନେ ଠିଆ ନ ହୋଇ ସିଧା ଆମ ଆଡ଼କୁ ଚାଲି ଆସିଥାନ୍ତେ ନିଶ୍ଚୟତ କେତେଜଣ ମରିଥାନ୍ତେ ।

ସେହିପରି ଉଡ଼ାଜାହାଜର କଥା—ସେଥିରେ ଜଙ୍ଗଲ ଭିତରେ ଜାପାନୀ ମାନଙ୍କର ଆଡ଼ାରୁ ଫଟୋ ଉଠାଇବା ବଡ଼ କଷ୍ଟ । ଉଡ଼ାଜାହାଜ ଛାଡ଼ିଲା ବେଳକୁ ଭଲ ପାଗ, ଆସିଲା ହଠାତ୍ ମେଘ ଝଡ଼ ଓ ପ୍ରବଳ ବର୍ଷାଧାର—ବର୍ଷାଦିନର କଥା କେତେବେଳେ କଣ ହେବ କହି ହୁଏନି ସୁତରାଂ ଜାହାଜକୁ ରକ୍ଷା କରିବାକୁ ପଡ଼ିବ । ହଠାତ୍ ବି ଜାହାଜରୁ ରେଡ଼ିଓ ଟେଲିଫୋନରେ କିଛି ଶୁଭିବନି । ଖରାଦିନେ ଧୂଳି ପଟଳ ଆକାଶକୁ ଏପରି ଆଚ୍ଛାଦିତ କରି ଦେଇଥାଏ ଯେ ଫଟୋ ନେବା କଷ୍ଟକର । ସେତେବେଳେ ପୁଣି **4th Corps**ର ଆଜି କାଲିକାର ପରି ହରିକେନ୍ (**Harricane**)କି ସ୍ପିଟ ଫାୟାର (**Spit fires**) ନଥିଲା କେବଳ ଥିଲା (**Lysander**). ହରିକେନ୍ ସଙ୍ଗରେ ସ୍ୱାକୁ ତୁଳନା କରିଯାଇ ନପାରେ । ଲାଇସାଣ୍ଡରକୁ ଗଜ ଗମନୀ କହିଲେ ଅତ୍ୟୁକ୍ତି ହେବ ନାହିଁ !

କଥାରେ ଅଛି ଶତ୍ରୁକୁ ଯଦି ଜାଣିଥିବ କମ୍ପା ତାର ଗତିବଧି ଜାଣି ପାରିବ, ତାହାହେଲେ ଜୟ କରିବାର ଆଶା ବେଶୀ। 4th Corps ଘେରରେ ପଡ଼ିଲେ ମାତ୍ର ସବୁ ପ୍ରକାର ଚଡ଼ ବଡ଼ ମୂଣ୍ଡ ଖେଳିଲା। କାରଣ ଇଂଫାଲରେ ହାରିଯିବା ଅର୍ଥ ଭାରତ ସେମାନେ ନିଶ୍ଚୟ ଦଖଲ କରିବେ। ଏଥିରେ ତିଳେ ମାତ୍ର ସନ୍ଦେହ ନାହିଁ। ସେଥିପାଇଁ ସବୁ ଜାତିର ଲୋକ ଯଥା—ବ୍ରିଟିଶ, ଅଷ୍ଟ୍ରେଲିଆନ, ଗୁଇନିଜ ଜାତନ୍ ଭାରତୀୟ ଇତ୍ୟାଦି ଶିକ୍ଷିତ ଲୋକଙ୍କୁ ଭର୍ତ୍ତି କରି GST "Z" ଗଠନ କରାହେଲା ତାର ଅର୍ଥ ହେଲା—**General Headaqarters Intelligence Organisation.**

ସେମାନେ ଗୁପ୍ତଚର ଭାରି ଓ ପଦେ ପଦେ ବିପଦ ନେଇ ନାନା ପ୍ରକାର ବେଶ ଭୂଷାରେ ଶତ୍ରୁ ପକ୍ଷର ଜାଗା ମାନଙ୍କରେ ଆସ୍ଥାନ ମାଡ଼ି ରହିଲେ ଏବଂ ଯେଉଁଠି ରହିଲେ ସେହି ଇଲାକାର ଲୋକମାନଙ୍କୁ ହସ୍ତଗତ କରି ଖବର ସବୁ ପଠାଇଲେ। ସେମାନଙ୍କୁ ଖୁବ୍ ଶକ୍ତିଶାଳୀ ଓ୍ୱାରଲେସ ସେଟ ଯୋଗାଇ ଦିଆ ହୋଇଥିଲା। ଏମାନେ କେବଳ ଅଫିସର ଶ୍ରେଣୀୟ ଲୋକ ଏବଂ ସର୍ବସ୍ୱ ତ୍ୟାଗ କରିବାକୁ ପ୍ରସ୍ତୁତ ହୋଇ ଆସିଥାନ୍ତି। ଏକାଥରକେ ସେମାନଙ୍କୁ ଜଙ୍ଗଲ ଭିତରେ ବଢ଼ି ଦୁଇ ମାସ କାମ ଚଳାଇବାକୁ ପଡୁଥିଲା ଏବଂ ଦୁଇମାସ ପୂରିଗଲେ ସେମାନଙ୍କୁ ଭାରତ ଭିତରେ କିଛିଦିନ ଛୁଟିରେ କଟାଇବାକୁ ଦିଆ ହେଉଥିଲା। ବିଶେଷ ଭାବେ ଯେଉଁ ଲୋକମାନେ ପୂର୍ବରୁ ବର୍ମାରେ ଥିଲେ ଏବଂ ବିଶେଷ କରି **Forest Service**ର ଲୋକ ଏଥିରେ ଭର୍ତ୍ତି ହୋଇଥିଲେ।

ପାରିମାନଙ୍କୁ ବି ଶିକ୍ଷା ଦିଆ ହେଲା ଖବର ନେବା ଆଣିବାରେ। ପ୍ରଥମେ ସେମାନଙ୍କୁ ଖୁବ୍ ଉଚ୍ଚ ନେଇ ଉଡ଼ାଜାହାଜରୁ ତଳକୁ ଖସାଇ ଦିଆଯାଏ। ଏପରି ହେବା ମାତ୍ରେ ଖୁବ ଜୋରରୁ ଜାହାଜର ହାଓ୍ୱାରେ ସେମାନଙ୍କର ପର ସବୁ ଛିଣ୍ଡିଗଲା ଏବଂ ସେମାନେ ଠିକ୍ ପଥର ଖସି ପଡ଼ିଲା ପରି ତଳେ ପଡ଼ି ପଞ୍ଚତ୍ୱ ପ୍ରାପ୍ତ ହେଲେ।

ସେଇଠୁ ମୂଣ୍ଡ ଖର୍ଚ୍ଚ କରି ସେମାନଙ୍କୁ "ବ୍ରେନ୍‌କୋ" କାଗଜରେ ଗୁଡ଼ାଇ ଛଡ଼ା ହେଲା। କାଗଜଖଣ୍ଡ ଆସ୍ତେ ଆସ୍ତେ ପାରି ଦେହରୁ

ଖସେ ଏବଂ ପାଗ ତାର ଭାର ସମ୍ଭାଳ ପାରେ ଏବଂ ସେତେବେଳେ ଜଙ୍ଗଲାକାହାଜର ଯଥେଷ୍ଟ ଚଳକୁ ଆସି ସାଗଥାଏ ସୁତରାଂ ସହଜରେ ଲକ୍ଷ୍ୟ ସ୍ଥଳରେ ପଡ଼ନ୍ତେ ।

ଜାପାନୀମାନେ ବ ଏଣେ କୌଶଳ ଲଗାଇଥାନ୍ତି ବ୍ରିଟିଶ ପକ୍ଷର ଖବର ଜାଣିବା ପାଇଁ । ମଣିପୁରରେ ସେମାନେ ମଣିପୁର ରାଜବଂଶର କେତେକ ଲୋକଙ୍କୁ ହାତ କରି ତାଙ୍କ ଗୁପ୍ତ ସହଯୋଗ କରିଥାନ୍ତି । ସେମାନେ କିନ୍ତୁ "ମର ବା ମାର" ନୀତିକୁ ଖୁବ୍ ଶୀଘ୍ର ପ୍ରୟୋଗ କରନ୍ତି । ଫଳରେ ବେଶି ଭାଗ ମାରିବା ପରିବର୍ତ୍ତେ ମରନ୍ତି । ଯୁଦ୍ଧରେ ଯୁଦ୍ଧ ବନ୍ଦୀ ମାନଙ୍କ ଠାରୁ କଥା ଆଦାୟ କରିବା ବି କଷ୍ଟ । ସେଥିପାଇଁ ନାନା ପ୍ରକାର ନୀତି ଧରି ହୋଇଥାଏ । ଆଗ ଖୁସି କରାଇ କଥା ନେବାର ଚେଷ୍ଟା ହୁଏ ତେଣିକି ଧମକ ଓ ମାଡ଼ ।

କିନ୍ତୁ ଗୋଟିଏ କଥା, ଯୁଦ୍ଧ ସମୟରେ ଅଫିସରମାନଙ୍କ ଅପେକ୍ଷା ସିପାହୀ ଯୁଦ୍ଧ ବନ୍ଦୀଙ୍କ ବେଶି ପ୍ରୟୋଜନ । କାରଣ ଅଫିସର ଶ୍ରେଣୀର ଲୋକଙ୍କୁ ଭୁଲାଇବା ବଡ଼ କଷ୍ଟ । ସିପାହୀ ମାନଙ୍କୁ ସହଜେ ମନାଇ ହୁଏ । କାରଣ ତାର ଶିକ୍ଷା ଦୀକ୍ଷା ଟିକିଏ କମ୍ । ସେଥିପାଇଁ କଳେ ବଳେ କୌଶଳେ ତା'ଠୁ କଥା ଆଦାୟ ହୁଏ ଏବଂ ସିପାହୀ ମାନଙ୍କୁ ବଶ କରିବା ପାଇଁ ତାଙ୍କର ଭାଷା ଜାଣିବା ନିହାତି ଦରକାର । କାରଣ ମାତୃଭାଷା ପ୍ରତି ସେ ସ୍ୱତଃ ଆକୃଷ୍ଟ ହୋଇପଡ଼େ । "ମାତୃଭାଷା" କଣ ଓ କିପରି କାମଦିଏ ଯେଉଁମାନେ ମାତୃଭୂମି ଛାଡ଼ି ବାହାରକୁ ଯାଇଛନ୍ତି, ସେମାନେ ଏ କଥାର ଅର୍ଥ ଓ ମର୍ମ ସବୁ ବୁଝି ପାରିବେ ।

ଏସବୁ ଯୁଦ୍ଧ ଥିଲାବେଳେ ମଣିପୁରର ଲୋକମାନେ ବହୁତ ଦୁଃଖ ଓ ଦୈନ୍ୟ ଦେଇ ଗତି କରୁଥିଲେ । ଯୁଦ୍ଧ ହେବା ସଙ୍ଗେ ସଙ୍ଗେ ଦରଦାମ ସବୁ ହୁ ହୁ ହୋଇ ବଢ଼ିଗଲା । କୁଲି ଗୋଟିଏ ମୂଲ ନେଉଥିଲା ଚାରିଅଣା । ସେଠାରୁ ତାହା ୫ ଟଙ୍କାକୁ ଉଠିଗଲା । ଚାଉଳ ମହଣ ୭।୮ ଟଙ୍କାରୁ ୫୦।୬୦ଟଙ୍କାକୁ ବଢ଼ିଗଲା । ମଣିପୁରରେ ଏତେ ସୈନ୍ୟ ଜମା ହୋଇଗଲେ ଯେ ହିସାବ କରି ଦେଖା ଯାଇଛି ପ୍ରତି ତିନିଜଣ ମଣିପୁରୀଙ୍କୁ ଦୁଇଜଣ ସୈନ୍ୟ । ଅଣ୍ଡା ଗୋଟିକ ଆଠଅଣା । ମଣିପୁର ଭିତରେ ଯୁଦ୍ଧୀମାନଙ୍କୁ ମାଗଣା ବାହନ ଓ ସାର ଦିଆହେଲା ସକ ପନ

ପରିବା ଉତ୍ପାଦନ କରି ସୈନ୍ୟ ବାହିନୀକୁ ଯୋଗାଇବା ପାଇଁ । ମୋର ମନେ ଅଛି, ଆଜ୍ଞ ଆମକୁ ସେମାନେ ଯୋଗାଉଥିଲେ ସେରକୁ ଗୁରୁଙ୍କା କରି । ବାଇଗଣ ସେର ଦୁଇଟଙ୍କାରୁ ଅଢ଼େଇଟଙ୍କା ।

ଇଂଫାଲରେ କେତେ ସୈନ୍ୟ ଥିଲେ ତ କହୁଛି । ବର୍ତ୍ତମାନ ସେଠାରେ ସିଭିଲସ୍ଥାନ ମାନଙ୍କ ଅବସ୍ଥା କ'ଣ ହୋଇଥିବ ବିଚାର କରନ୍ତୁ । ମିଲିଟାରୀ ଦଳ ସବୁ ପହଞ୍ଚିବା ମାତ୍ରେ ଯେଉଁ ଘର ସୁବିଧା ହେବ ସେଘର ନିଆହେଲା । ଯେଉଁ କୋ.ଠ. ଇଚ୍ଛାହେଲା ସେଥିରେ ଅଫିସ ଖୋଲାହେଲା । କ୍ଷତି ପୂରଣ ପ୍ରଶ୍ନ ଉଠେନା । ସେ ସବୁ ପରେ ବିଚାର କରାଯିବ ଯୁଦ୍ଧପରେ ।

ଗୋଟିଏ ଗୋଟିଏ ଘରେ ୧୦।୧୫ଟି କୁଟୁମ୍ବ ରହୁଲେ । ଅନେକଲୋକ ଜଙ୍ଗଲକୁ ପଳେଇ ଥିଲେ ସେମାନେ ତାଙ୍କର ଗାଁ ଗଣ୍ଡା ଛାଡ଼ି, ସହରକୁ ଆସିଲେ କାରଣ ଜଙ୍ଗଲ ଭିତରେ ପ୍ରତିମୁହୂର୍ତ୍ତରେ ଭୟ । ହୁଏତ ଜାପାନୀ ମାନଙ୍କ ତରଫରୁ କମ୍ବା ବ୍ରିଟିଶ ମାନଙ୍କ ତରଫରୁ । ଏତ ସବୁଗଲା ସେଠାକାର ସେତେବେଳର ଅବସ୍ଥା—ସିଭିଲ ଶାସନ ପୁରାପୁରି ଅଚଳ । ମିଲିଟାରୀ ଶାସନ ଚାଲୁଥାଏ । ସେତେବେଳର ହାସପାତାଲ ଓ ରୋଗୀମାନଙ୍କର ଅବସ୍ଥା ଶୁଣିଲେ ଆପଣମାନେ ଜାଣିପାରିବେ ଯୁଦ୍ଧର ବିଭୀଷିକା କହନ୍ତି କ'ଣ । ଖାଲି ମିଲିଟାରୀ ହାସପାତାଲ ସବୁ ଖୋଲା ହୋଇଥାଏ । **I.G.H. (Indian General Hospital). B.G.H. (British General Hospital** ଓ **C.M.H. (Combined Military Hospitals)** ନାମରେ ସବୁ ଚାଲୁଥିବେ କେବଳ **Combined** ମିଶାମିଶି ଡାକ୍ତର ଖାନାରେ ଭାରତୀୟ, ଇଂରେଜ ଓ ଆଫ୍ରିକାନ ଏବଂ ଅନ୍ୟାନ୍ୟ ସବୁ ଜାତୀୟ ଲୋକଙ୍କର ଚିକିତ୍ସା ହୁଏ । ସେତେବେଳେ ସବୁ ଜାଣିଥିବେ **W.A.C. (I) WAS (B)** ଏମାନଙ୍କୁ କୁହାଯାଏ "ଓ୍ୟାକାଇଜ୍ ଓ ଓ୍ୱାସବିଜ" ଅର୍ଥ **Women's Auxiliory Corps (Indian)** ଏବଂ **Women's Auxiliory Service (Burma)** ବିଶେଷ ଭାବେ ଓ୍ୱାସବିଜମାନେ ଇଂଫାଲ ଓ ବର୍ମାଭିତରେ ବହୁ ଡାକ୍ତରଖାନା ମାନଙ୍କରେ କାମ କରନ୍ତି । ମୋବାଇଲ କାଣ୍ଟିନ ଲରିଧରି ଏମାନେ ବି କାମ କରୁଥାନ୍ତି ।

୧୯୪୩ ମସିହା ଅକ୍ଟୋବର ମାସରେ ଇଂଫାଲ ଭିତରେ ଏହିପରି କାଣ୍ଟିନ ପ୍ରଥମ କରି ଖୋଲଗଲା। **14th General Hospital** ଏବୁଠାରୁ ବଡ଼ ହାସପାତାଲ ସେତେବେଳେ। ଏମାନେ ବାରେଲ (ଘରଚର) ଠାରୁ ଆସି କାଙ୍ଗାଲ ଟେମ୍ପି ପାଖରେ ଡାକ୍ତରଖାନା ଖୋଲିଥାନ୍ତି। ଦିନକୁ ଦୁଇଶ ତିନିଶ ରୋଗୀ ଆସୁଥାନ୍ତି— ରୋଗୀ ଅର୍ଥ ଯୁଦ୍ଧରେ ଖଣ୍ଡିଆ ଖାବରା ଲାଗ ବେଶି। ଜାପାନୀମାନେ ପ୍ରାଣ ମୂର୍ଚ୍ଛା ଯୁଦ୍ଧ ଚଳାଇ ଇଂଫାଲ ଆଡ଼କୁ ଆସୁଥାନ୍ତି। ରୋଗୀର କରୁଣ ଚିତ୍କାର—ଖଟ ସବୁ ଭର୍ତ୍ତି ହୋଇ ତମ୍ବୁ ଭିତରେ ଓ ବାରଣ୍ଡାରେ ଶହ ଶହ ଆହତ ସୈନ୍ୟ ପଡ଼ିଥାନ୍ତି। କିଏ ବା ପାଣି ପାଇଁ ଆଉ କିଏ ଖାଇବା ପାଇଁ ଚିତ୍କାର କରୁଥାଏ। କାହାର ଯନ୍ତ୍ରଣାରେ ପାଟି ଫାଟି ପଡୁଥାଏ—ଏଣେ ଟିନ ଟିନ ଔଷଧ ଆସି ପହଞ୍ଚୁଥାଏ। ଡାକ୍ତରମାନେ ବି ଅକ୍ଳାନ୍ତ ପରିଶ୍ରମ କରି କାମ କରୁଥାନ୍ତି। ଯେଉଁ କେତୋଟି ସ୍ତ୍ରୀଲୋକ ନର୍ସ ସାଜି ବା ସିଷ୍ଟର ସାଜି ଗୋଟିଏ ଗୋଟିଏ ରୋଗୀ ପାଖକୁ ଯାଇ ସେବା ଶୁଶ୍ରୂଷା କରୁଥାନ୍ତି ସେମାନଙ୍କୁ ରୋଗୀମାନେ ମା ଓ ଭଉଣୀ ବୋଲି ଡାକି କାନ୍ଦୁଥାନ୍ତି। ଓଃ ସେ କି କରୁଣ ଦୃଶ୍ୟ। ଏହି କରୁଣ ଦୃଶ୍ୟ ମଧ୍ୟରେ ଯେତେବେଳେ ଖଣ୍ଡିଆ ଖାବଡ଼ା ଆହତ ଲୋକ ଶହ ଶହ ଆସି ଡାକ୍ତରଖାନା ମାନଙ୍କରେ ଉପସ୍ଥିତ ହେଉଥାନ୍ତି— କାହାର ଦେହ ରକ୍ତରେ ଜରଜର କିଏ ହାତକୁ ଜାକି ଧରିଚି, କାହାର ଜଣ୍ଡେ ଗୋଡ଼ ଉଡି ଯାଇଛି, କାହାର ଛାତି ଫାଟି ରକ୍ତ ବୋହୁଚି, ଜାଏ କେଉଁ ଭାଷରେ କଣ କହୁଛି କିନ୍ତୁ "ଈଶ୍ୱର" ଓ "ମା" ଦୁଇଟି ଶବ୍ଦ ବୁଝି ହେଉଚି।

ଏ ବୀଭତ୍ସ ତାଣ୍ଡବ ଲୀଳା ଦେଖିବାବେଳେ ଦେହ ଶିହରି ଉଠେ ଓ ମନରେ ଭାବାନ୍ତର ସୃଷ୍ଟି କାଚ ହୁଏ। ଫିଲ୍‌ଡ ଇଉନିଟ ହାସପାତାଲର କଥା ଗୁଡ଼। ତେବେ ଯା ହେଉ ଦିନ କ ଶିକ୍ଷିତ ଡାକ୍ତରମାନେ ଗ୍ଣ୍ଠ ଦମ୍ଭ କରି କାମ ସବୁ କରିଯାନ୍ତି। ମନେହୁଏ ସେ ତାଙ୍କ ଠାରେ ଦୟା ମାୟା ନାହିଁ। ଏ ସବୁ ଦେଖି ମୋର ମନେ ହେଲ ଯଦି ଡାକ୍ତର ମାନଙ୍କ ପାଖରେ ସର୍ଜିକାଲ ଛୁରି (Surgical Knife) ପ୍ରଭୃତି ନଥାନ୍ତା ସେ ସମୟରେ ବି କରତ ପାଆନ୍ତି କିମ୍ବା ଗୁଆକାତି ପାଆନ୍ତି ସେଥିରେ

ବ ସେମାନେ କାଟି ପକାଉନ୍ତି । ସେମାନଙ୍କର ସବୁ ଦେହ ଯୁଡ଼ା ହୋଇ ଯାଇଥାଏ । ପଗୃଶଲେ ବ ସେଇଆ କହନ୍ତି ।

ଏଣେ ଏ ସବୁ କରୁ କରୁ ଉପରୁ ପଡ଼େ ବୋମା ; କଏ ଟ୍ରେଞ୍ଚ ଭିତରକୁ ପଳାଇ କଏ ରାସ୍ତା ନ ପାଇ ହାମୁଡ଼େଇ ପଡ଼ଯାଏ । ସେମାନେ ଆଜ ଡାକ୍ତରଖାନା ଖୋଲିଚନ୍ତି ତ କାଲି ତାଙ୍କୁ ପଛକୁ ଯିବାକୁ ପଡ଼ିଲାଣି । ଡାକୋଟା ବିମାନରେ କାହାକୁ କୁମିଲା ନିଆ ହେଲାଣି ତ କାହାକୁ କଲିକତା ଏବଂ କେଉଁ ଆହତ ସୈନ୍ୟକୁ ଦିମାପୁର । "ପଛକୁ ହଟ" "ପଛକୁ ହଟ" ଶବ୍ଦ ଦୁଇ ଘଣ୍ଟା ଭିତରେ ଉଠାଅ । ଠିକ ଠିଆହେଲ—ହଠାତ୍ ଗୁଡୁମ୍ । ଆହା ରହିଗଲେ ଅଧା ରୋଗୀ—ଆଧୁନିକ ଆବଦାଓ୍ୟାର ପ୍ରଶ୍ନ ନାହିଁ । ପ୍ରାଇମସ୍ ଷ୍ଟୋଭ ବଡ଼ ଜିନିଷ—କେଟଲିରେ ହତିଆର ଢାଳି କଲି ଷ୍ଟେରେଲାଇଜେସନ୍ ହେଉଚ । ଖୁବ୍ ବେଶୀ ହେଲେ ଅତି ଦୁର୍ମୂଲ୍ୟ "ଲାଇସଲ" (Liysol) ଟିକିଏ । ପ୍ରେସର ଲ୍ୟାମ୍ପ ଇଲେକ୍ଟ୍ରିକ୍ର କାମ ଦିଏ । ରାତିରେ ଖଟିଆ ପାଖରେ ଲଣ୍ଠନଟିଏ ଜଳୁଥାଏ ।

ବାହାରେ ନିର୍ଜନ ଅନ୍ଧାର—ମଝିରେ ମଝିରେ ପେଚା ବୋବାଉ ଥାଏ । ଆଉ ବ କେତେ ପ୍ରକାର ଭୟଙ୍କର ଚଢ଼େଇ ରାବ ଦେଉଥାନ୍ତି । ଶିଆଳ ବ ରଡ଼ ଛାଡ଼େ । ସତେ ଯେପରି ସମସ୍ତେ ମଣିଷ ଜାତିର ଶତ୍ରୁ । କାହିଁକି ବା ନ ହେବେ ? ମଣିଷ ତ ମଣିଷକୁ ମାରି ଏପରି କରୁଛି । ହଜାର ହଜାର ଜୁଳୁଜୁଳିଆ ପୋକ ଘଞ୍ଚ ଘଞ୍ଚ ଗଛଲରେ ରାତିର ନିସ୍ତବ୍‌ଧତାକୁ ଆହୁରି ବଢ଼ାଇ ଦେଉଚନ୍ତି । ମୁଁ ବ ଗୋଟିଏ ଡାକ୍ତରଖାନାରେ ମେଲେରିଆ ରୋଗୀ ଭାବରେ ୩।୪ ଦିନ କଟାଇଚ । ରୋଗୀ ବେଶୀ ହେଲେ ନଦୀର ଷ୍ଟିମର ଯୋଗେ ବ୍ରହ୍ମପୁତ୍ର ଠାରୁ ଭାରତ ଭିତରକୁ ଓ ସିରାଜଗଂଜ ତରଫକୁ ପଠା ହେଉଥାନ୍ତି ।

ଜାପାନୀମାନେ ବ ଅଣା ହେଉଥାନ୍ତି—ଜୀର୍ଣ୍ଣ, ଶୀର୍ଣ୍ଣ ଅବସ୍ଥା ଭାଷା ଜଣା ନାହିଁ । ଇଂରାଜୀ କହି ପାରନ୍ତି ନାହିଁ । ଯନ୍ତ୍ରଣାରେ ଛଟପଟ ହେଉଥାନ୍ତି । ହାତ ଠାରି ମନର ବେଦନା ଜଣାନ୍ତି—ବିଶେଷ କରି ଗୃହାନ୍ତି ଖାଇବା ପାଇଁ ଭାତ ଓ ଅଣ୍ଡା । ନର୍ସ ବହୁତ କମ୍ । ସୁତରାଂ ପୁରୁଷ ନର୍ସ ( Male nursing orderlies ) ଆସିଲେ ।

ସେମାନେ ବି ପ୍ରସ୍ତ ଟ୍ରେନିଂ ପାଇ ନଥାନ୍ତି । କରୁ କରୁ ଯେଉଁ ପର୍ଯ୍ୟନ୍ତ ଗଲା । କିନ୍ତୁ ଜାପାନୀମାନେ ଠିକ୍‌ଏ ସୁସ୍ଥ ହେଲେ କେଉଁ ଆଡ଼କୁ ନିଆ ହୁଅନ୍ତି ତାଙ୍କୁ ଯିଏ ନିଏ ସେ ଜାଣେ ଆଉ କେହି ଜାଣନ୍ତି ନାହିଁ ।

ଫିଲ୍ଡ ହସପିଟାଲ ମାନଙ୍କରେ ସବୁଠୁ ଆଉ ଗୋଟିଏ ବିପଦ ହଜାର ହଜାର ଶାଗୁଣା । ସେ ଗୁଡ଼ାକ ଖାଲି ଗଛଡାଳରେ କି ଘର ଉପରେ ବସିଥିବେ । ହାତରେ କିଛି ଖାଇବା ଜିନିଷ ଧରି ବାହାର ପଡ଼ିଲ କି ନାହିଁ ଝାମ୍ପ ଦେବେ । ଝାମ୍ପ ଦେଇ ଦେଇ କା'ର ମୁଁହ ବି ଉଡ଼ିଯାଏ । ମଶା ଡାଆଁସ ତ ଭର୍ତ୍ତି । ଜଦା, ପିମ୍ପୁଡ଼ି ଓ ମୂଷା ବି କାହିଁକି ସେମାନଙ୍କର କର୍ତ୍ତବ୍ୟ ନ କରିବେ ? ସେତେବେଳେ ସମସ୍ତେ ବାଦ ସାଧନ୍ତି । ଶେଷରେ ଭୁଲି କୁଦି ବି ରୋଗୀ ହାତରୁ ରୋଟି ଟାଣି ନେଇ ପଳାଇ ଯାଏ । କିଏ "ଚ୍ଛେଇ" କରିଦେଲେ ଦାନ୍ତ ନିକୁଟି ଚଢ଼ି ଆସେ ସତେ ଯେପରି ସେବି ଚଡାଉ କରି ତୁମକୁ ସେ ଡାକ୍ତର ଖାନାରେ ଭର୍ତ୍ତି କରିଦେବ ।

ରୋଗୀ ଏ ସବୁ ଦେଖେ ଆଖି ବୁଜିଦିଏ । ଯନ୍ତ୍ରଣାରେ ଛଟପଟ ହୋଇ ସେ କ'ଣ ଭାବୁଥାଏ ସେ ତାହା ଜାଣେ । ନର୍ସ କି ଡାକ୍ତରବାବୁ ସେ ବାଟଦେଇ ଗ୍ଲଲଗଲେ ପଛରେ ସେ ହାତ ଯୋଡ଼େ ଭଗବାନଙ୍କ ଉଦ୍ଦେଶ୍ୟରେ କି ଡାକ୍ତର କିମ୍ବା ମିଷ୍ଟର ମାନଙ୍କ ଉଦ୍ଦେଶ୍ୟରେ ତାହା ଅଜଣା ରହିଯାଏ ଆଉ ଅଜଣା ରହିଯାଏ ଯେତେବେଳେ ଶତ୍ରୁପକ୍ଷ ମାଡ଼ି ଆସୁଥାନ୍ତି । ଏହିପରି ଡାକ୍ତରଖାନା ସବୁ ଯେଉଁ ରୋଗୀମାନଙ୍କୁ ସ୍ଥାନାନ୍ତରିତ କରିବାର ଉପାୟ ନ ଥାଏ ସେମାନଙ୍କୁ ପୋଡ଼ିଜାଳି ଦିଆହୁଏ ।

ବ୍ରିଟିଶମାନେ ବି ଏପରି କରିଥିଲେ । ଜାପାନୀମାନେ ବି ଏପରି କରିଥିଲେ । ଆମେ ତ ବ୍ରିଟିଶ ବାହିନୀର ଲୋକ ସୁତରାଂ ପଛକୁ ହଟିଲାବେଳେ କେତେ କଣ ହୋଇଛି ଜାଣିନୁ କିନ୍ତୁ ଆଗକୁ ଗଲାବେଳେ "ଉଖ୍ରୁଲ୍" ପାଖରେ ଜାପାନୀମାନଙ୍କର ଗୋଟିଏ ହାସପାତାଲର ଦୃଶ୍ୟ ଦେଖିଲୁ—କେତୋଟି ଅଗ୍ନିଦଗ୍ଧ ଶରୀର ପଡ଼ି ରହିଥିଲା ଏବଂ ସେହିମାନେ କେବଳ ଜାଣିଥିବେ କେତେ ମଲେ କେତେ ଗଲେ ।

ଦରି ଇଂଫାଲ୍ ଯୁଦ୍ଧର ବର୍ଣ୍ଣନା କା ବୁଠାରୁ ବେଶି ଦେଖିଛି ।

ଇଂଫାଲର ମୃତ୍ୟୁ ସଂଖ୍ୟା ଆମେ ଶୁଣିବାରେ ଏ ପର୍ଯ୍ୟନ୍ତ ପୃଥିବୀର ଇତିହାସରେ କୌଣସି ଯୁଦ୍ଧର ମୃତ୍ୟୁସଂଖ୍ୟା ସହିତ ତୁଳନୀୟ ନୁହେଁ । କିଏ ଖାଦ୍ୟ ବିନା ମଲା, କିଏ ଶୋଷରେ ମଲା, କିଏ ସାପ କାମୁଡ଼ାରେ ମଲା, କିଏ ପ୍ଲେଗରେ ମଲା, କିଏ ମ୍ୟାଲେରିଆ, କାଛୁ କୁଣ୍ଡିଆ, ଔଷଧ ଅଭାବରୁ ମଲା । କେତେ ଜାପାନୀ "ହାରାକିରି" କରି ମଲେ, କେତେ ବୋମା ମାଡ଼ରେ ମଲେ, କେତେ ଯୁଦ୍ଧରେ ମଲେ, କେତେ ପାହାଡ଼ ଉପରୁ ଖସି ମଲେ । ଖାଲି ମଲେ, ତାର ହିସାବ କେହି ରଖିନାହାନ୍ତି । ସେଠାରେ ଜଳବାୟୁ, ପାଗ, ପ୍ରକୃତି ସମସ୍ତେ ମଣିଷ ଉପରେ ଦାଉ ସାଧିଲେ । ମଣିଷ ବେଖାତିର ଭାବ ଦେଖାଇ ଲଢ଼ାଇ ବରଣ କରିଥିଲା ମଲା । ଜଣେ ଜିତିଲା ଓ ଅନ୍ୟ ଜଣେ ହାରିଗଲା, ସେତ ଲାଗିଛି ଏବଂ ଲାଗିଥିବ ।

ସୁନ୍ଦର ଇଂଫାଲ କୁତ୍ସିତ ରୂପ ଧାରଣ କରିଥିଲା । ଯୁଦ୍ଧର ଠିକ୍ ପୂର୍ବରୁ, ଯୁଦ୍ଧର ପ୍ରସ୍ତୁତିରେ, ଯୁଦ୍ଧ ସମୟରେ ଓ ଯୁଦ୍ଧ ପରେ । ଯିଏ ବଞ୍ଚିରହିଲା ସେ ଦେଖିଥିବ ମୁଁ ବି ଦେଖିଛି କିନ୍ତୁ ସମସ୍ତେ ସବୁ ଦେଖି ନ ଥିବେ କି ମୁଁ ବି ସବୁ ଦେଖିନି ; ଦେଖିଛି କେତେ ଓ ଶୁଣିଛି କେତେ । ସେ ପୁରା ନୁହେଁ କି ପୁରା ହୋଇ ପାରେନା ।

ମାର୍ଚ୍ଚ ତାରିଖ ୧୯୮୪ ମସିହାରେ ପୃଥିବୀଠାରୁ ଇଂଫାଲ ଆଲଗା ପଡ଼ିଗଲା ଏବଂ ୪ମାସ ଧରି ବିଚ୍ଛିନ୍ନ ହୋଇ ପଡ଼ିଥିଲା ବାହ୍ୟ ଜଗତରୁ । ଅବଶ୍ୟ ଆକାଶ ପଥରେ ନୁହେଁ । ସେହି ଚାରିମାସର ଇତିହାସ ବଡ଼ ଭୟଙ୍କର ଓ ଭୟାନକ ।

ଏହି ଇଂଫାଲରେ ଆମ କମ୍ପାନୀ ପହଞ୍ଚିବା ପରେ ମୁଁ ଖାଲି କିପରି ସବୁ ବୁଲିବି ଓ ଜାଣିବି ଏ ଆଶାରେ ଟିକିଏ ସମୟ ପାଇଲେ ବାହାରକୁ ପଳାଇଯାଏ । କ୍ରମେ ମୋର କେତେକ ବନ୍ଧୁ ହୋଇଗଲେ । ଗୋବିନ୍ଦ ସିଂ ଆମ କମ୍ପାନୀରେ ସିଭିଲିଆନ କ୍ଲର୍କ ହୋଇ କାମ କରୁଥିଲେ । ତାଙ୍କ ସଙ୍ଗେ ଘନିଷ୍ଠତା ଜମି ଉଠିଥିଲା । ତା ଘରକୁ ଯାଏ, ଦିନେ ଦିନେ ଟିକିଏ ସନ୍ଧ୍ୟା ଗଡ଼ିଯାଏ କଥାର ସୁଅରେ । କଥା ଲହରରେ କଣ ବି କହି ହୋଇଯାଏ କାରଣ ମୁଁ ଟିକିଏ ଗପୁଡ଼ି ।

ଭାରତରେ ସେତେବେଳେ "ଭାରତଛାଡ଼ ଆନ୍ଦୋଳନ" ଖୁବ୍ ଜୋର ସୋରରେ ଲାଗିଥିବାରୁ ଭାରତୀୟମାନଙ୍କୁ ଗୋଡ଼େ ଗୋଡ଼େ ଜଗିବା ବ୍ରିଟିଶମାନଙ୍କର ପ୍ରଧାନ କର୍ତ୍ତବ୍ୟ । ଏହିପରି ହେଉ ହେଉ ମୁଁ ବି କଣ କହିଥିବି (ଆଜି ମନେ ନାହିଁ) ।

ଦିନେ ଗୋବିନ୍ଦ ସିଂ ଘରୁ ଫେରୁ ଫେରୁ ରାତି ୮ଟା । କମ୍ପାନୀ କମାଣ୍ଡର ପଚାରିଲେ "ଏତେ ରାତିଯାଏ କେଉଁଠି ଥିଲ ? ତୁମର ଗତିବିଧି ସନ୍ଦେହ ଜନକ" ।

ମନାକରି ଦେଲି ଏବଂ ସତକଥା କହିଲି ।

"କ'ଣ କଥା ହେଉଥିଲ" ବୋଲି ପଚାରିବାରୁ ସବୁ କହିଲି । ସେ କ'ଣ ଭାବିଲେ କେଜାଣି ମୋତେ "ଅଣ୍ଡର ଆରେଷ୍ଟ" କଲେ ଓ କ୍ୱାର୍ଟର ଗାର୍ଡରେ ରଖିଲେ ଅର୍ଥାତ୍ ମୋତେ ହାଜତରେ ରଖାଗଲା ।

କ୍ୱାର୍ଟର ଗାର୍ଡରେ ରହିଲି—ଦଣ୍ଡ ହେଲା ମୋ ପାଇଁ ଦୁଇ ଦିନ ଅଧିକା ପରେଡ୍ (Extra Parade) ଫିଲ୍ଡରେ କ୍ୱାର୍ଟର ଗାର୍ଡ କହିଲେ । ବଡ଼ ତମ୍ବୁ ପଡ଼ିଥାଏ—ଚାରିପଟେ ତାର (Birbed wire) ଘେର—ଟେଣ୍ଟରେ ରହିବାକୁ ହେବ । ସଙ୍ଗୀନ୍‌ଧାରୀ ସିପାହୀ ଜଗୁଆଳ । ବଡ ଅଫିସର ହେଲେ କାମ ପ୍ରସ୍ତୁତ ଦିଆଯାଏନି—ମଝି ମଝିଆ ଅଫିସରମାନଙ୍କୁ ଖାଲି ପରେଡ । ସିପାହୀ ଶ୍ରେଣୀର ଲୋକଙ୍କୁ କାମ ଓ ପରେଡ ଉଭୟ । ଅବଶ୍ୟ ଦୋଷର ଗୁରୁତ୍ୱ ଦେଖି ମୋ ଭାଗ୍ୟକୁ ପଡ଼ିଲା ଦିନ ଦୁଇଟାରୁ ୪ଟା ପର୍ଯ୍ୟନ୍ତ ବନ୍ଧୁକ ଧରି ଖରାରେ ମାର୍ଚ୍ଚିଂ କରିବା—କେତେବେଳେ ଡବଲ ଅପ (ଦୌଡ଼ିବା) ବରଗ ଓ୍ୱାରେଣ୍ଟ ଅଫିସର ମୋ ପ୍ରତି ଦୟା ଦେଖାଇ ଦୁଇ ଘଣ୍ଟାରୁ ଘଣ୍ଟାଏ ପରେଡ଼ ନିଏ ଆଉ ଘଣ୍ଟାଏ ଖାଲି ଛିଡ଼ା କରାଇ ଦିଏ । ସେହି ତମ୍ବୁ ଭିତରେ ଖିଆ ପିଆ । ବାହାରକୁ ଯାଇ ପାରିବ ନାହିଁ । ଖଣ୍ଡେ ଦୁଇ ଖଣ୍ଡ ମିଲିଟାରୀ ମାଗାଜିନ୍ ଯଥା—''ଫଉଜି ଆଖବର'' "ଆର୍ମି ଡାଇଜେଷ୍ଟ" ପଢ଼ିବାକୁ ଦିଆହୁଏ ।

ଦୁଇ ଦିନ ପରେ ବାହାରକୁ ଆସି ମନେ ମନେ ବିଦ୍ରୋହ ଭାବ ଜାତ ହେଲ—ଭାବିଲି ଏ ଗୋରା ଲୋକମାନଙ୍କ ସଙ୍ଗେ ସରଳ ଭାବ ନ ଦେଖାଇବାକୁ ଭଲ। ଏ ଜାତି ଖୁବ୍ ସ୍ୱାର୍ଥପର। ମୋ ଦେଶ ଭାଇ ସଙ୍ଗେ କଥା କହିବା ପାପ ଏବଂ ସେଥିପାଇଁ ମୋତେ ଦଣ୍ଡ ଭୋଗ କରିବାକୁ ପଡ଼ିଲା। "ଏଥର ଅନ୍ୟାଗସ୍ତା ଧରିବା" ଭାବ ଚୁପ୍ ରହିଲି। ଏପରିରେ କିଛିଦିନ ରହିବା ପରେ ଶୁଣିଲି I. N. A ଏ ସାଂଗାରେ ଖୁବ୍ ତତ୍ପର ଏବଂ ନେତାଜୀ ବୋଷ ନିଜେ କମାଣ୍ଡର ହୋଇ ସୈନ୍ୟ ଗୃଲନା କରୁଅଛନ୍ତି ଏବଂ ସେମାନେ ଆସ୍ତେ ଆସ୍ତେ ଇଂଫାଲ ଆଡ଼କୁ ଅଗ୍ରସର ହେଉଅଛନ୍ତି—"ଆରାକାନ" ତରଫରେ ବି ସେମାନେ ସିଲ୍‌ଚର ଆଡ଼କୁ ଗତି କରୁଛନ୍ତି।

ଏ କଥା ଶୁଣିବା ମାତେ କିପରି ସବୁ ଖବର ମିଳିବ ତାହା ଚେଷ୍ଟାରେ ଥାଏ—ମୁଁ ତ ସପ୍ଲାଇ ବିଭାଗରେ ଥାଏ। ଆମ କମ୍ପାନୀର ଜଣେ ଗୋରା (ଅଷ୍ଟ୍ରେଲିଆନ୍) ସର୍ଜେଣ୍ଟ ଥାଏ। ତାର କାମ Wireless ସେଟ ଧରି ସବୁ ଖବର ରଖିବା ଏବଂ ଶତ୍ରୁ ପକ୍ଷର ଖବର କମାଣ୍ଡରଙ୍କୁ ଜଣାଇବା ସୁତରାଂ ତା ସଙ୍ଗେ ବନ୍ଧୁତା ଆରମ୍ଭ କଲି। ଷ୍ଟୋରରୁ ଭଲ ଭଲ ସିଗାରେଟ, ଭଲ ମଦ, ଭଲ ଟିନ୍‌ଫ୍ରୁଟ ଓ ଟିନ୍‌ମିଟ (ଟିଣ ଭିତରେ ଥିବା ଫଳ ଓ ମାଂସ) ଦିଏ। କ୍ରମେ କ୍ରମେ ବନ୍ଧୁତା ଜମି ଉଠିଲା ଏବଂ ମୁଁ ସବୁବେଳେ ବ୍ରିଟିଶ ସରକାରର ସ୍ତୁତି ଗାନକରିବାରେ ଥାଏ।

କ୍ରମେ ସେ ବିଶ୍ୱାସ କରିଗଲା ଏବଂ Ear phone ମୋତେ ବାଢ଼ାଇ ଦେଲା। ମୁଁ ପ୍ରତିଦିନ ନେତାଜୀଙ୍କ ଓଜସ୍ୱିନୀ ଭାଷଣ ରେଙ୍ଗୁନ୍‌ରୁ ଶୁଣେ ଏବଂ ସେ ଭାରତର ଯେତେ ସୈନିକ ବ୍ରିଟିଶ ସରକାରଙ୍କ ତରଫରେ ଥାନ୍ତି ତାଙ୍କୁ ନିମନ୍ତ୍ରଣ କରୁଥାନ୍ତି I.N.A.ରେ ଯୋଗ ଦେବାକୁ। କେଉଁଦିନ କେତେ ଭାରତୀୟ ସୈନ୍ୟ ବ୍ରିଟିଶ ପକ୍ଷତ୍ୟାଗ ତାଙ୍କ ପକ୍ଷରେ ଯୋଗଦେଲେ ତାହା ବି ପ୍ରଚାର ଚାଲିଥାଏ। ଇଚ୍ଛା ହେଉଥାଏ ଶୀଘ୍ର ନେତାଜୀଙ୍କ ସୈନ୍ୟମାନେ ଇଂଫାଲକୁ ଚାଲି ଆସନ୍ତେ ଯଦି ଆମେବି ଚାଲିଯାନ୍ତୁ। ମୁଁ ସବୁ ଖବର ନେଇ ଆମ ଭାରତୀୟ ସିପାହୀଙ୍କ ମଧ୍ୟରେ ପ୍ରଚାର ଚଳାଏ ଖୁବ୍ ସାବଧାନତାର ସହିତ। ନୋହିଲେ ଧରା ପଡ଼ିଲେ ଗୁଳି ଟରେ ପ୍ରାଣଯିବ। କ୍ରମେ ଏପରି

ହେଲ ଯେ, ସବୁ ସିପାହୀ କ ହିନ୍ଦୁ କ ମୁସଲମାନ କ ଖ୍ରୀଷ୍ଟିଆନ ସବୁ ମୋ କଥା ଶୁଣିଲେ ଓ ପ୍ରତ୍ୟେକ କଥାରେ ମୋର ମତାମତ ପଚ୍ଛରିଲେ । ବୁଝିଲି ପ୍ରତ୍ୟେକ ଲୋକ ସୁବିଧା ପାଇଲେ I.N.A. କୁ ଚାଲିଯିବେ ।

ଠିକ୍ ଏହି ସମୟରେ ଉତ୍ତର ଭାରତରେ ଗୋଟିଏ ଘଟଣା ଘଟିଲା—ଏ ଘଟଣାଟି କେତେଦୂର ସତ୍ୟ ତାହା ମୁଁ କହି ପାରିବ ନାହିଁ କିନ୍ତୁ ସେ ସର୍ଜେଣ୍ଟଠାରୁ ତାହା ଶୁଣିଲି—ଏହିପରି ଆହୁରି କେତୋଟି ଘଟଣାରୁ ବିଶେଷ ଭାବେ ଭାରତୀୟମାନଙ୍କ ମନୋବୃତ୍ତି ବ୍ରିଟିଶ ସରକାରଙ୍କ ପ୍ରତି ପୁରା ବଦଳି ଗଲା । କଥାଟି ମଜା ଏବଂ ସାଂଘାତିକ ବି କିନ୍ତୁ ସେତେବେଳର ଆଇନ୍ ଓ ପ୍ରେସର କଟକଣା ଯୋଗୁଁ ବାହାର ଦୁନିଆକୁ ବାହାରିପାରି ନ ଥିବ ।

ଖୁବ୍ ଘମାଘୋଟ ଯୁଦ୍ଧ ଲାଗିଥାଏ—ଜର୍ମାନୀମାନେ ପ୍ରାୟ ହାରୁଥିଲେ—ମିତ୍ର ପକ୍ଷ ଆନନ୍ଦ ହେଉଥାନ୍ତି—ଦକ୍ଷିଣ ପୂର୍ବ ଏସିଆରେ ସମସ୍ତ ଶକ୍ତି ଆଣି ଠୁଳ କରୁଥାନ୍ତି—ଗୋଟିଏ ଗୋରା ବାଟାଲିୟନ ଛୁଟିରେ ଭାରତକୁ ଯାଉଥାନ୍ତି । ସେମାନଙ୍କୁ ଉତ୍ତର ଭାରତର କୌଣସି ଏକ ଗ୍ରୀଷ୍ମାବାସକୁ ପଠା ହେଉଥାଏ ଏବଂ ତାଙ୍କ ଯାଗାରେ ଗୋଟିଏ ଭାରତୀୟ ବାହିନୀ ଆସୁଥାନ୍ତି ବର୍ମା ସୀମାନ୍ତକୁ । ଗୋରା ସୈନ୍ୟମାନେ ଗୋଟିଏ ମିଲିଟାରୀ ସ୍ପେସାଲ୍ ଗାଡ଼ିରେ ଯାଉଥାନ୍ତି—ଆଲିଗଡ଼ ଷ୍ଟେସନରେ ସେ ଦୁଇଟି ଗାଡ଼ି କ୍ରସ୍ କରିବାର ଥାଏ—ଭାରତୀୟ ସୈନ୍ୟ ବାହିନୀର କମାଣ୍ଡରଙ୍କ ପିଲାଛୁଆ ବୋଧହୁଏ ସେହି ସହରରେ ଥିଲେ ଏବଂ ତାଙ୍କୁ ବିଦାୟ ଦେବା ଉଦ୍ଦେଶ୍ୟରେ ଭାରତୀୟ କମାଣ୍ଡର ଷ୍ଟେସନକୁ ଆସିବାକୁ ତାଙ୍କ ସ୍ତ୍ରୀ ଓ ପିଲାଛୁଆଙ୍କୁ ତାର କରିଥିଲେ—ଆଗ କିନ୍ତୁ ଗୋରା ସ୍ପେଶାଲ ଟ୍ରେନଟି ପହଞ୍ଚିଲା—ତେଣୁ ସେ କମାଣ୍ଡରଙ୍କ ସ୍ତ୍ରୀ ପ୍ଲାଟଫର୍ମ ଭିତରକୁ ଆସି ତାଙ୍କ ସ୍ୱାମୀଙ୍କୁ ଖୋଜି ବସିଲେ । କିନ୍ତୁ ଦେଖିଲେ ଯେ ସମସ୍ତେ ସେ ଟ୍ରେନରେ ଗୋରାଲୋକ । ତେଣୁ ହତାଶ ହୋଇ ଫେରୁଥିବା ସମୟରେ ତାଙ୍କୁ ଏବଂ ତାଙ୍କ ଦୁଇ ଝିଅଙ୍କୁ କେତେ ଜଣ ଗୋରା ସିପାହୀ ଜବରଦସ୍ତି ଗୋଟିଏ କମ୍ପାର୍ଟମେଣ୍ଟକୁ ଟେକି ନେଲେ । ସେମାନେ ଏ କାଣ୍ଡରେ ମୂର୍ଚ୍ଛା ହୋଇଗଲେ—ଠିକ୍

ସେହି ସମୟରେ ଆସାମଗାମୀ ଭାରତୀୟ ସ୍ପେସାଲ ଗାଡ଼ିଟି ପହଞ୍ଚିଲା— କମାଣ୍ଡର ଓଲ୍ଡଲାଇ ତାଙ୍କ ପିଲା ଛୁଆଙ୍କୁ ଖୋଜିଲେ--ପ୍ଲାଟଫର୍ମ ବାହାରକୁ ଯାଇ ଦେଖିଲେ ତାଙ୍କ କାର ଡ୍ରାଇଭର ଥର ଥର ସବୁକହିଲା— ସେଥିରେ ସେ ଉତ୍ତ୍ୟକ୍ତ ହୋଇ ଅସ୍ତ୍ର ଶସ୍ତ୍ରରେ ସୁସଜ୍ଜିତ ଦୁର୍ଦ୍ଦମ ଭାରତୀୟ ସୈନ୍ୟମାନଙ୍କୁ ହଠାତ୍ ଅର୍ଡର ଦେଲେ ଗୋରା ସ୍ପେଶାଲ ଟ୍ରେନଟିକୁ ଅବରୋଧ କରିବାକୁ ଏବଂ ଫାୟାର କରିବାକୁ ।

ଭାରତୀୟ ସିପାହୀ ମାନଙ୍କ ରକ୍ତ ତାତିଗଲା । ଚଳେଇଲେ ସେମାନେ ଗୁଳି । ଟଳି ପଡ଼ିଲେ ୪।୫ ଜଣ ଗୋରା ସୈନ୍ୟ । ତାଙ୍କ କମାଣ୍ଡର ବଡ଼ ଅଡୁଆରେ ପଡ଼ି ଆସି ଭାରତୀୟ କମାଣ୍ଡରଙ୍କୁ କ୍ଷମା ମାଗିଲେ ଏବଂ ଦୋଷୀ କଣ ହୋଇଛି ସଙ୍ଗେ ସଙ୍ଗେ ବୁଝିବେ ବୋଲି ପ୍ରତି ଶ୍ରୁତି ଦେଲେ । ହଠାତ୍ ଭାରତର ଗୁରିଆଡୁ ମିଲିଟାରୀ ଗାଡ଼ିମାନ ଆଳି ଗଡ଼କୁ ଧାଇଁଲା । ଗୋରାମାନଙ୍କ ଗାଡି ଖୋଜାହେବା ପରେ ଦେଖାଗଲା ଗୋଟିଏ କମ୍ପାର୍ଟମେଣ୍ଟ ରେ ସ୍ତ୍ରୀ ଲୋକ ୩ ଜଣ ମୂର୍ଚ୍ଛା ହୋଇ ପଡ଼ିଛନ୍ତି । ଏ ସବୁ ଏତେ ଚଞ୍ଚଳ ହୋଇଗଲା ଯେ କେହି କିଛି ଜାଣି ପାରି ନଥିଲେ—ସଙ୍ଗେ ସଙ୍ଗେ ଭାରତୀୟ କମାଣ୍ଡର କହିଲେ ଏପରି ହେଲେ ସାରା ଭାରତରେ ବର୍ତ୍ତମାନ ସିପାହୀ ବିଦ୍ରୋହ ହୋଇଯିବ ଏବଂ ଆମେ ସମସ୍ତେ ଏକା ଦିନକେ ତୁମର ଆକାଶ ବାହିନୀ, ନୌବାହିନୀ, ପଦାତିକ ବାହିନୀକୁ ଗୁଳିରେ ଟଳାଇ ଦେବୁ । କାଟକ ବାହୁବଳେ ବିଚାର ବାଜା—ତୁମର ପୁଣି ଏତେ ସାହସ !

ଏତିକିରେ ଦିଲ୍ଲୀର ପ୍ରଧାନ ସେନାପତି ବି ଧାଇଁଲେ ଏବଂ ଯେଉଁ ଗୋରା ୪।୫ ଜଣ ଏପରି କୁକର୍ମ କରିଥିଲେ ସେମାନଙ୍କୁ ଆରେଷ୍ଟ କରାଗଲା ଏବଂ ମିଲିଟାରୀ ଆଇନ ଅନୁଯାୟୀ ସେମାନଙ୍କୁ କଡ଼ା ସଜା ଦିଆହେଲା ।

ଭାରତୀୟ ବାହିନୀ ଗଲେ ବର୍ମା ସୀମାନ୍ତକୁ । ଏ କଥା କେତେଦୂର ସତ ମୁଁ ନ ଦେଖିଲେ ସୁଦ୍ଧା ବିଶ୍ୱାସ କଲି । କାରଣ ମୋର ସେ ସର୍ଜେଣ୍ଟ ସାଙ୍ଗ କହିଲେ ଏବଂ ଗୋରା ଟମିମାନଙ୍କର ଏତାଦୃଶ ବ୍ୟବହାର ପାଇଁ ମୋତେ କ୍ଷମା ଭିକ୍ଷା ମାଗିଥିଲେ । ଭାରତୀୟ ହିସାବରେ ଏ କଥା ସବୁ ସୀମାନ୍ତ ସୈନ୍ୟମାନଙ୍କ ମଧ୍ୟରେ ନାନା

ଖବରେ ବ୍ୟାପିଗଲା । ସ୍ୱତଃ ଭାରତୀୟମାନେ I.N.A. ପ୍ରତି ଆକୃଷ୍ଟ ହେଲେ—ମୁଁ ଶୁଣିଛି ସେ ଦିନ Wirelessରେ ପ୍ରାୟ ୫୦୦ ଭାରତୀୟ ସୈନ୍ୟ ସୁବିଧା ଦେଖି ବର୍ମା ସୀମାନ୍ତରେ ନେତାଜୀ ବୋଷଙ୍କ ସୈନ୍ୟ ବାହିନୀରେ ଭର୍ତ୍ତି ହେଲେ ।

ସେ ଦିନ "ପାଲେଲ" ଆଉ "ଟିଡିମ" ପାହାଡ଼ ପାଖରେ ଯୁଦ୍ଧ ଚାଲୁଥାଏ । I.N.A. ମାନେ ଆଣ୍ଡାମାନ ଦଖଲ କଲେଣି । ଖୁବ୍ ଜୋର୍ ସୋର୍ ରେ ଜାପାନୀ ମାନଙ୍କ ସାହାଯ୍ୟରେ ମାଡ଼ ଚାଲି ଥାଆନ୍ତି । ଭାରତ ଭିତରକୁ "ଚିଣ୍ଡି-ଉଇନ" ନଦୀର ଦୁଇଧାରରେ ଯୁଦ୍ଧ ଚାଲିଥାଏ—ଶୁଣୁଥାଏ ନଦୀର ଦୁଇପଟରେ ସୈନ୍ୟମାନେ ଜମା ହୋଇଛନ୍ତି ଗୋଳି ବର୍ଷଣ ଚାଲୁ ଛି—ଲୁଚି ଲୁଚି ଜଙ୍ଗଲ ଭିତରେ ନିଜର ଆସନ ମାଡ଼ି ଚାଲି ଛୁଟାଉଛନ୍ତି (Jungle warfare) ଆମ ପଟୁ ଲଢ଼ୁ-ଥିଲେ ଗୁର୍ଖା ବାହିନୀ, ସେପଟୁ ଜାପାନୀ—ଉଡ଼ାଜାହାଜମାନେ ଖୋଜି ଖୋଜି ବୋମା ବର୍ଷଣରେ ବ୍ୟସ୍ତ । ପ୍ରାୟ ପ୍ରତି ଘଣ୍ଟାଏ, ଦୁଇଘଣ୍ଟା ଅନ୍ତରରେ ସାଇରେନ ବାଜି ଉଠୁଚି—ଆମେ ଖାଲି ଟ୍ରେଞ୍ଚକୁ ଦୌଡ଼ିବାରେ ବ୍ୟସ୍ତ । ଟିକିଏ ସମୟ ପାଇଲେ ମୁଁ ସେ ସର୍ଜେଣ୍ଟର ତମ୍ବୁ ଭିତରକୁ ଦୌଡ଼ୁଛି—

କ୍ରମେ ସନ୍ଧ୍ୟା ହେଲା—ସର୍ଜେଣ୍ଟ ମୋତେ ଆଜି Wireless ଶୁଣାଇ ଦେଲାନି । ଯେତେହେଲେ ତ ସେ ଗୋରା—ମୁଁ କିନ୍ତୁ ତାର ମୁହଁକୁ ଦେଖି ବୁଝି ପାରିଲି ଆଜିର ଖବର ନିଶ୍ଚୟ ସାଂଘାତିକ, ବେଶି ପଚାରିବାରୁ ବିରକ୍ତ ହୋଇ ଖୁବ୍ ଜୋର୍ ରେ ସିଗାରେଟ୍ ଟାଣୁଥାଏ । ରାତି ପ୍ରାୟ ୭ଟା, କହିଲା—"Go on bed down we are having rough days coming up" ଯାଅ ଶୋଇପଡ଼, ଆମ ମାନଙ୍କ ପାଇଁ ଖରାପ ଦିନ ଆସୁଛି--

ମୁଁ ଆଉ ତା ସଙ୍ଗେ ବିଶେଷ କଥାବାର୍ତ୍ତା ନ କରି ମୋ ତମ୍ବୁକୁ ଫେରି ଆସିଲି । ବୋମା ମାଡ଼ର ଭୟରେ ଶିରସ୍ତ୍ରାଣ (Helmet)କୁ ପାଖରେ ରଖି ବୁଟ୍‌ପଟି ନ ଫିଟାଇ ଶୋଇବାକୁ ଚେଷ୍ଟା କଲି—ନିଦ ହେଉ ନଥାଏ ।

ପ୍ରାୟ ୪ ଘଣ୍ଟା ଚାଲିଗଲା—ବାଜିଲା ସାଇରନ, ଉଠି ଦଉଡ଼ିଲି

ଟ୍ରେଞ୍ଚକୁ । ଉଡ଼ାଜାହାଜର ଜଳନ୍ତା ଆଲୁଅରେ ଗଛପତ୍ର ସବୁ ଝଲସି ଉଠୁଥାଏ—ଜାହାଜ ଗୁଡ଼ାକ ତାଇଭ କରୁଥାନ୍ତି ପୁଣି ଉପରକୁ ଉଠୁଥାନ୍ତି—ଏତେ ତୀକ୍ଷଣ ଆଲୁଅ ଯେ ଯେପରି ଛୁଞ୍ଚିଟିଏ ପଡ଼ିଲେ ବି ଦେଖାଯିବ । ବୋମା ବର୍ଷଣର ଗୁଡୁମ୍ ଗୁଡୁମ୍ ଶବ୍ଦ ସବୁ କମ୍ପୁଥାଏ ଏବଂ କାଳେ ଆମ ଉପରେ ବୋମା ପଡ଼ିବ ସେଥିପାଇଁ ଆମେ ବି ଟ୍ରେଞ୍ଚ ଭିତରେ କମ୍ପୁଥାଉ—ପ୍ରାୟ ୫ ଘଣ୍ଟା ବୋମା ବର୍ଷଣ ପରେ **All Clear** ସାଇରେନ୍ ବାଜିଲା—ସେତେବେଳକୁ ପ୍ରାୟ ରାତି ୪ଟା, ମୁଁ ଆଉ ଟ୍ରେଞ୍ଚ ଭିତରୁ ନ ବାହାରି ସେଇଠି ରହିଲି । ୬ଟାରେ ବାହାରିଲି ।

ସକାଳର ଖବର ଯେ ରାତିରେ ବୋମା ମାଡ଼ରେ କିଛି କ୍ଷତି ହୋଇନି । ଶତ୍ରୁ ପକ୍ଷରୁ ୪ଟି ଲଢ଼ୁଆ ଜାହାଜକୁ ଆଣ୍ଟି ଏୟାର କ୍ରାଫ୍ଟ ସାହାଯ୍ୟରେ ଖସାଇ ଦିଆ ହୋଇଛି । ମୁଁ କିନ୍ତୁ ସବୁ ଗୁପ୍ତ ଖବରରୁ ଜାଣିଲି ୪ଟା ଜାପାନୀ ଜାହାଜକୁ ଖସାଇ ଦିଆ ହୋଇଛି ସତ କିନ୍ତୁ ଆମ ପକ୍ଷରୁ ପ୍ରାୟ ୨୦୦ ପର୍ଯ୍ୟନ୍ତ ହେବ ଲୋକ ମରିଚନ୍ତି ।

ସେତେବେଳେ ଇଂଫାଲରେ ପ୍ରାୟ ପ୍ରତିଦିନ ବୋମା ବର୍ଷଣ ହେଉଥାଏ । ଉପରୋକ୍ତ ଘଟଣାର ଦୁଇଦିନ ପରେ ଇଂଫାଲ୍ ସହର ଠାରୁ ୪ ମାଇଲ ଉତ୍ତରକୁ ମୁଁ ଯାଇଥାଏ ଆମର ଗୋଟିଏ ଫିଲ୍ଡ ସପ୍ଲାଇ ଡିପୋ **(F.S.D.)**ର ଏକାଉଣ୍ଟ ଚେକ୍ କରିବାକୁ—ହଠାତ୍ ପାଖର ଜଙ୍ଗଲ ଭିତରୁ କମାଣ ଗୋଳା ଆସିଲା । କମାଣ ଗୋଳା ଗୁଡ଼ିକ ଡିପୋର ବହୁତ ପାଖରେ ପଡୁଥାଏ ।

ହଠାତ୍ ଅର୍ଡର ହେଲା ଡିପୋକୁ ଛାଡ଼ି ପଳାଅ । ସବୁ ଜିନିଷ ପୋଡ଼ି ଦିଅ । ସେଠିକାର ଯେତେ କର୍ମଚାରୀ ସମସ୍ତଙ୍କୁ ସଙ୍ଗେ ସଙ୍ଗେ ନିର୍ଦ୍ଦେଶ ହେଲା ନିଜର ସମସ୍ତ ଜିନିଷ ପୋଡ଼ି ଦିଅ । କେବଳ ବନ୍ଧୁକ ଗୋଳା ବାରୁଦ ଧରି ପଳାଇ ଆସ—କ୍ରମେ କମାଣର ଗୋଳା ବହୁତ ଛୁଟିଲା—ଏମାନେ ପୋଡ଼ିବା ପୂର୍ବରୁ ସବୁ ଛାରଖାର ହେବାକୁ ବସିଲା । ସଙ୍ଗେ ସଙ୍ଗେ ପେଟ୍ରୋଲ ଡିପୋରେ ନିଆଁ ଲଗାଇ ଦିଆଗଲା । ନିଜ ନିଜର ସମସ୍ତ ଜିନିଷ ଯେ ଯୁଆଡ଼େ ଫିଙ୍ଗି ପଳାଇ ଗଲେ । ଡିପୋରେ ୧୫୦ ଜଣ ମିଲିଟାରୀ ଲୋକ ଓ ୩୦୦ ସିଭିଲିଆନ କାମ କରୁଥିଲେ ।

ପ୍ରଥମେ କମାଣ ଗୋଳା ବର୍ଷଣବେଳୁ ତ ସିଭିଲଆନମାନେ ପଳେଇଲେ । ସଙ୍ଗେ ସଙ୍ଗେ ସେମାନେ କେତେ ଗୁଡ଼ିଏ ଟ୍ରକ ଧରି ଇଂଫାଲ ସହର ଆଡ଼କୁ ଗୁଳଲେ—

ମୁଁ ବି ପଳାଇଲି ଆମ ହେଡ଼କ୍ୱାଟର ଟ୍ରକରେ—ଯେମେ ଯେତେବେଳେ ସବୁ ଘୋଡ଼ା ପୋଡ଼ି ସରିଗଲା ସେତେବେଳକୁ ସେହି ଡିପୋରେ ପ୍ରାୟ ୩୦ ଜଣ କର୍ମଗ୍ରୂଗ୍ରୀ ରହିଗଲେ । ସମସ୍ତେ ପ୍ରାଣ ବିକଳରେ ଟ୍ରକରେ ବସିଲେ—ଡ୍ରାଇଭରର ଦେଖା ନାହିଁ । ସବା ଶେଷରେ ଜଣେ ଲାନ୍‌ସ ନାଏକ ଦଉଡ଼ୁ ଦଉଡ଼ୁ ଗୋଡ଼ରେ ଖଣ୍ଡେ ଛୁଟିକା ବାଜିଲା ଏବଂ ତାର ରକ୍ତ ଧାର ଧାର ହୋଇ ବହୁଥାଏ । ସେ ଦୌଡ଼ି ଯାଇ ଡ୍ରାଇଭର ସିଟ୍‌ରେ ବସିଗଲା—ଲୋକମାନେ ବ୍ୟସ୍ତ ହେଉଚନ୍ତି । ଡ୍ରାଇଭର ପ୍ରାଣ ବିକଳରେ ଅନ୍ୟ ଗାଡ଼ିରେ ପଳାଇ ଗଲଣି । ଲାନ୍‌ସ ନାଏକଟି ଜଣେ ମୁସଲମାନ ଏବଂ ପେଶାବାରର ଲୋକ । ସେ ଅନେକଥର ଟ୍ରକରେ ସପ୍ଲାଇ ଜିନିଷ ସବୁ ନଆଆଣ କରିଚି । ଡ୍ରାଇଭର ପାଖରେ ଆଗ ସିଟ୍‌ରେ ବସିଚି—ହଠାତ୍ ତା ମୁଣ୍ଡରେ ବୁଦ୍ଧି ଠୁକିଲା । ସେ ଟ୍ରକ ଷ୍ଟାର୍ଟ କରି ଚଳାଇଲା ସେ ତା ଜୀବନରେ ଦିନେ ସୁଦ୍ଧା ଗାଡ଼ି ଚଲାଇ ନଥାଏ କି ତାର ଲାଇସେନ୍‌ସ ନାହିଁ । ଆଶ୍ଚର୍ଯ୍ୟ କଥା ଗୋଡ଼ରୁ ରକ୍ତ ଧାରଧାର ବହୁଛି ଏବଂ ସେ ବିନା ଆକ୍‌ସିଡେଣ୍ଟରେ ଗାଡ଼ି ଚଲାଇ ଆଣିଛି—ଆଣି ଆମ କମ୍ପାନୀ ହେଡ଼କ୍ୱାଟରର ପ୍ରାୟ ଏକ ଫର୍ଲଙ୍ଗ ଦୂରରେ ଗାଡ଼ି ଅଟକିଛି ଏବଂ ତାର ଚେତା ବୁଡ଼ି ଯାଇଛି—ହେଡ଼କ୍ୱାଟର ଗାଡ଼ି ଚେକ୍ ହେବା ପରେ ସେହି ଟ୍ରକ ନ ମିଳିବାରୁ ତାକୁ ଖୋଜା ଲଗିଲା । ହଠାତ୍ ସେଥିରୁ ସିପାହୀ ମାନେ ବାହାରି ସବୁ ଘଟଣା କହିଲେ—ସେ ଗାଡ଼ି ଯଦି ଆଉ ଦୁଇ ମିନିଟ୍ ଲେଟ୍ ହୋଇଥାନ୍ତା ସେ ସମସ୍ତଙ୍କ ପ୍ରାଣ ଓ ଗାଡ଼ି ନଷ୍ଟ ଯାଇଥାନ୍ତା—ତା ପରେ ଲାନ୍‌ସ ନାଏକଙ୍କୁ ଡାକ୍ତରଖାନାକୁ ନିଆ ହେଲା ଏବଂ ୧୫ ଦିନ ପରେ ଭଲ ହେଲା । ତାକୁ ସେହି ବୀରତ୍ୱ ପାଇଁ M.C. (ମିଲିଟାରୀ କ୍ରସ) ମିଳିଥିଲା ।

ଏହି ଘଟଣାର ଦିନକ ପରେ ଆମେସବୁ ଅଫିସରେ ବସିଛୁଁ ପ୍ରାୟ ଦିନ ଗୋଟାକ ବେଳେ ବୋମା ବର୍ଷଣ ହେଲା—ଯେ ଯେଉଁ ଆଡ଼େ

ପଳେଇଲେ ଟ୍ରେଞ୍ଚଭିତରକୁ । ମୋର ଜଣେ ସହକର୍ମୀ ଘର ପେଶାବାର ନାମ ଇନ୍ଦରଜିତ୍ ଉସିନ୍ ଆଗ ଟ୍ରେଞ୍ଚରେ ପଶିଗଲେ ଏବଂ ଗଲାବେଳେ ଖୁଲାରେ ତାର ହେଲମେଟ (Helmet) ଲୁହାର ଟୋପି ଗୁଡ଼ିଗଲେ, ସେଇଟା ବସ୍ତାଦେଇ ମୁଁ ଦୌଡ଼ିଲା ବେଳେ ଟ୍ରେଞ୍ଚଭିତରୁ କହୁଛି "ଆରେ ଭାଇ ମେରି Helmet ଗୁଟ୍ଟେ ଦିଆ ମେହେରବାନି କରକେ ହମାରି Helmet ଲା ଦିଜିଏ" ।

ମହା ଅସମ୍ଭବ ଲୋକ । ତୋ ଜୀବନକୁ ଏତେ ଲୋଭ ? ହେଉ ପୁଣି ଦଉଡ଼ି ଅଫିସ ଟେବୁଲ ଉପରୁ ତା ହେଲମେଟ ଆଣି ତାକୁ ଧରାଇ ଦେଲି ଏବଂ ଦେଖିଲା ବେଳକୁ ସବୁ ପାଖର ଟ୍ରେଞ୍ଚ ଗୁଡ଼ିକ ଭର୍ତ୍ତି ହୋଇଗଲାଣି । ଅଫିସଠାରୁ ଅଧଫର୍ଲଙ୍ଗ ଦୂରରେ ଆଉ ଗୋଟିଏ ଟ୍ରେଞ୍ଚ ଥିଲା ସେଠାକୁ ଦୌଡ଼ିଲାବେଳକୁ ସେବି ଭର୍ତ୍ତି ହୋଇ ଯାଇଛି । ଏହି ସମୟରେ ଗୋଟିଏ ବୋମା ପଡ଼ିବାର ଶବ୍ଦ ଶୁଭିଲା ମୁଁ ଆଉ ଟ୍ରେଞ୍ଚ ନ ଖୋଜି ଗୋଟିଏ ନାଳିଆ ଥିଲା, ଦୁଇପାଖରେ ଘଞ୍ଚ ଜଙ୍ଗଲ, ସେଇଟା ଭିତରେ ଢୁକିଗଲି ଏବଂ ତଳକୁ ମୁହଁ ମାଡ଼ି ଶୋଇଗଲି । ପ୍ରାୟ ଘଣ୍ଟାଏ ଖଣ୍ଡେ ବୋମା ପଡ଼ିଲା ପରେ ଅଲକ୍ଲିଅର ସାଇରେନ୍ ବାଜିଲା ।

ଉଠିଲି, ବହୁତ ସମୟ ପଡି ପଡ଼ି ଖରାପ ଲାଗୁଥାଏ ଉଠି ସେଇଟା ନାଳିଆ ଭିତରେ ମୋର ଷ୍ଟେନ୍‌ଗନ୍ ଧରି ଟିକିଏ ଭିତରକୁ ଗଲି । ପ୍ରାୟ ଅଧଫର୍ଲଙ୍ଗ ଦୂର ଯାଇଛି କି ନାହିଁ ଦେଖିଲି ଦୁଇଟି ମଣିପୁରୀ ଯୁବତୀ ମୁହଁମାଡ଼ି ପଡ଼ିଛନ୍ତି । ତାଙ୍କୁ ଦେଖି ପ୍ରଥମେ ସ୍ତ୍ରୀଲୋକ ବୋଲି ଚିହ୍ନି ହେଲାନି । ତେଣୁ ଷ୍ଟେନଗନକୁ ବାଗେଇ ଧରି ଗୁଲିଲି ।

ବୁଟ୍‌ର ଶବ୍ଦ ଶୁଣି ସେମାନେ ଅତର୍କିତ ଏବଂ ଚଟାପଟ ଉଠିପଡ଼ି ହାତ ଉପରକୁ ଟେକି ଦେଲେ ତାର ଅର୍ଥ ଆମକୁ ମାରନାହିଁ । ସେମାନେ ବୋଧେ ମୋତେ ଭାବିଲେ ଶତ୍ରୁପକ୍ଷର ଲୋକ ବୋଲି । ମୁଁ ପାଖକୁ ଯାଇ ତାଙ୍କୁ ବୁଝାଇବାରୁ ସେମାନେ ହାତ ତଳକୁ କଲେ । ଦେଖିବାକୁ ଦୁଇଜଣ ଭଦ୍ରଘରର ଝିଅପରି ଜଣା ପଡୁଥାନ୍ତି । ବଙ୍ଗଳା ଭଲ ବୁଝିଲେ ଓ କହିଲେ । ତାଙ୍କୁ ପଚାରିବାରେ ସେମାନେ ଏଇଆଡ଼େ ବୁଲି ଆସିଥିଲେ ଗୋଲାପ ଫୁଲ ତୋଳିବାକୁ । ହଠାତ୍ ବୋମାବର୍ଷଣର ଆବାଜ ପାଇ ଏପରି ପଡ଼ିଥିଲେ ଏବଂ ଅଲକ୍ଲିଅର ଶବ୍ଦକୁ ତାଙ୍କର ଧ୍ୟାନ

ନାହିଁ । ସେମାନେ ଅନୁରୋଧକଲେ ନେଇ ତାଙ୍କ ସରେ ଗ୍ରହଦେବାକୁ '
ତାଙ୍କଘରକୁ ଗଲି । ଆମ କମ୍ପାନୀଠାରୁ ଅଧମାଇଲ ଦୁର ହେବ ।

ତାଙ୍କ ଘର ବାରଣ୍ଡାରେ ଯାଇ ବସିଚ, ଦେଖିଲି ଦୁଇ ଗୃଟା ମିଲଟାସି ବୁସ୍‌କୋଟ ତାଙ୍କର ଭିତର ବାରଣ୍ଡାରେ ଓହଳା ହୋଇଛି । ମୋର ସନ୍ଦେହ ହେଲା, ସ୍ବାଙ୍କ ଭିତରୁ କେହି Fifth Columnist (ଗୁଇନ୍ଦା) କାମ କରୁଥିବେ ପରା । ହଠାତ୍ ପଗ୍ଚରିବା ଠିକ ବିଚୃକ ଭାବ ଏଆଡ଼ୁ ସେଆଡ଼ୁ ପଗ୍ଚରି କ୍ରମେ କଥା ପକାଇଲି । ସେମାନେ ପ୍ରଥମେ ମନାକଲେ । ପରେ କହିଲି ମୁଁ I.N.A.କୁ ଯିବାକୁ ଇଚ୍ଛା କରୁଛି ସୁବିଧା ପାଇଲେ ଗ୍ଚଲି ଯାଆନ୍ତି ।

ଏତକ କହିବା ପରେ ସେ ଦୁଇଜଣ ମଣିପୁରି ଭାଷାରେ କଣ କଥା ହେଲେ ଏବଂ କହିଲେ ଆପଣ ଆମ ସଙ୍ଗରେ ଗଲେ ଏଠାରୁ ୬୦ମାଇଲ ଦୁରରେ ଆମେ ପହଞ୍ଚାଇ ଦେବୁ ଓ ସେଠାରେ ଆପଣ ସବୁ ଜାଣି ପାରିବେ । ମୁଁ ଆଜ କିଛି ଖାଦ୍ୟ ପଦାର୍ଥ ଧରି ସନ୍ଧ୍ୟାବେଳକୁ ତୁମଘରକୁ ଆସିବି ସେଠାରୁ ପଳେଇବା । ସେ ହଁ କଲେ । ମୁଁ ସେଠାରୁ ଉଠି ଗ୍ଚଲି ଆସିଲି । ଆସିବା ପରେ ଅନେକ ଭାବଚିନ୍ତି ସ୍ଥିର କଲି ଯଦି ଯୁଦ୍ଧ ଯେଉଁପରି ଭାବରେ ଗ୍ଚଲୁଚି ଆଜ ଖୁବ୍ ବେଶୀ ହେଲେ ୭ଦିନ ମଧ୍ୟରେ ପାହାଡ଼ ତଳକୁ ସବୁ ଜାପାନୀ ଓ I.N.A. ଲୋକେ ଗ୍ଚଲି ଆସିବେ ଏବଂ ସେତେବେଳେ ଅତି ସହଜରେ ତାଙ୍କସଙ୍ଗେ ମିଶି ଏପରି କାହିଁକି କରିବି । କିଏ ଜାଣେ ସେମାନେ କିଛି ବଦମାସି କରି ପାରନ୍ତି ମୋ ସାଙ୍ଗରେ ତେବେ ଦେଖାଯାଉ ତାଙ୍କର ଉଦ୍ଦେଶ୍ୟ କଣ ?

କ୍ରମେ ସନ୍ଧ୍ୟାହେଲା । ପ୍ରାୟ ରାତି ଆଠଟାରେ ମୁଁ କହିଥିବା ରାସ୍ତାରେ ଷ୍ଟେନଗନ୍‌ଟି ଧରି ଗ୍ଚଲିଲି ପ୍ରାୟ ୨ମିନିଟ ରାସ୍ତାରେ ଯିବାପରେ ଜଣେ ଗୋରା ମେଜର ଠିଆ ହୋଇଚି । ତାଙ୍କୁ ଦେଖିଲି ମାତ୍ରେ ମୁଁ ଠିଆହୋଇ ପଗ୍ଚରିଲି Whose that ?

ଏତିକିରେ ମୋ ମୁହଁ ଉପରେ ଟର୍ଚ୍ଚଲାଇଟ ପଡ଼ିଲା । ମୁଁ ଷ୍ଟେନଗନ ଉଠାଇବାରୁ ସେ କହିଲେ "I am a Major" So me your identity card, ଦେଖାଇବାରୁ କହିଲି ଦୁଇଜଣ ସିଆଙ୍କ ପାଖକୁ ଯାଉଛି । ମୋର ସନ୍ଦେହ, ସେମାନେ ଗୁଏନ୍ଦା କାମକରନ୍ତି

ତାଙ୍କୁ ଠକ ଆଣି ଆରେଷ୍ଟ କରବ—କହଲ ଆଚ୍ଛା ଯାଅ—ଗଲ । ଯିବା ପୂର୍ବରୁ ଦେଖିଲ ତାଙ୍କ ବାରଣ୍ଡାରେ ଆଉଜଣେ ଗୋରା ଅଫିସର ଠିଆ ହୋଇଥିଲ । ମୋତେ ଦେଖି ଭିତରକୁ ପଳାଇଲ । ସେମାନେ ସହାସ୍ୟ ବଦନରେ ମୋ ପାଖକୁ ଆସି ନମସ୍କାର ଜଣାଇ ତାଙ୍କ ବାରଣ୍ଡାକୁ ଉଠିବାକୁ କହିଲେ । ହଠାତ୍ ମୁଁ ତାଙ୍କ ଆଗପଟକୁ ବୁଲିପଡ଼ି ଷ୍ଟେନଗନ ଉପରକୁ ଫୁଟାଇଲ ଏବଂ ତାଙ୍କ ଗୁଡ଼ିକୁ ଲକ୍ଷ୍ୟକରି କହିଲି, ସାମନାକୁ ଚାଲ, ନୋହିଲେ ଗୁଳିକରି ଉଡ଼ାଇଦେବ ।

ସେମାନେ ଡରି ଡରି ଦୁଇପାଦ ଯାଇଚନ୍ତି କି ନାହିଁ ସେହି ମେଜର ସେମାନଙ୍କ ଘରୁ ହଠାତ୍ ବାହାରି ପଡ଼ିଲ ଏବଂ ମୋ ପାଖକୁ ଆସି କହିଲ—

**Leave them Surgent······they are ours. You tested but instead you cought them. Keep it secret.,** ସର୍ଜେଣ୍ଟ ଛାଡ଼ିଦିଅ ସେମାନେ ଆମର ଲୋକ । ତୁମକୁ ପରୀକ୍ଷା କରୁଥିଲେ କିନ୍ତୁ ଓଲଟା ତୁମେ ତାଙ୍କୁ ଧରିଲ । ଏହାକୁ ଗୁପ୍ତରେ ରଖିବ । ହସ ବୃଷ୍ଟି ହେଲ ।

ସେଠାରେ ବସିଲ ଟିକଏ ପରେ ପଳାଇ ଆସିଲ ଏବଂ ଭାଗ୍ୟକୁ ପ୍ରଶଂସା କରିବାକୁ ବାଧ୍ୟ ହେଲ । ନୋହିଲେ ନିଶ୍ଚୟ ମରିଥାନ୍ତି ।

ତହିଁଆରଦିନ ୧୧ଟା ବେଳକୁ **L,of,C, Sub-area office**ରୁ ଖଣ୍ଡେ ଚିଠି ମିଳିଲ ତୁମକୁ ଧନ୍ୟବାଦ । ତୁମେ **Fifth columnist** ମାନଙ୍କୁ ଧରିବାପାଇଁ ପ୍ରକୃତ ଚେଷ୍ଟା କରୁଛ । ସେଥିପାଇଁ ତୁମର ବାହାଦୁରୀକୁ ପ୍ରଶଂସା କରିବା ସଙ୍ଗେ ସଙ୍ଗେ ଏହି ଧନ୍ୟବାଦ ପତ୍ର ଦିଆଗଲ ଯାହାକି ତୁମ ଚାକିରୀରେ ଭବିଷ୍ୟତ ପାଇଁ ବହୁତ ସାହାଯ୍ୟ କରିବ ।

ଇଂଫାଲରେ ସେତେବେଳକୁ ଗୋଟିଏ ଦିନ ଗୋଟିଏ ଯୁଗପରି ଲାଗୁଥାଏ । ପ୍ରତ୍ୟେକ ଦିନ ଯୁଦ୍ଧର ଘନଘଟା ଘୃଦ୍ଧି ହୋଇ ଆସୁଥାଏ । କେଉଁ ଦିନ କେତେ ଭାରତୀୟ ମଲେ ଓ କେତେ ଭାରତୀୟ ବର୍ମା ସୀମାନ୍ତ ଦେଇ I.N.Aରେ ଭର୍ତ୍ତି ହେଲେ କହିବା ଅସମ୍ଭବ । ଜାପାନୀମାନଙ୍କ ଗରିଲା ଯୁଦ୍ଧ ଦିନୁ ଦିନ ଭୟାବହ ହୋଇ ଉଠୁଥାଏ, ତା'ଛଡ଼ା ଇଂଫାଲ ଓ ବର୍ମା ସରହଦ ଲାଗିଛି, ସୁତରାଂ କେଉଁଠି କିଏ ଲଢାଇ କରୁଛି କହିବା ବି ମୁସ୍କିଲ । ଇଂରେଜମାନେ କହୁଥାନ୍ତି ଆମେ ଆଗକୁ ବଢ଼ୁଚୁ, ଅପର ପକ୍ଷର ବି ସେହି ପ୍ରଚାର । ମିଲିଟାରୀରେ କେଉଁଠି କେତେ ମଲେ କେତେ ବଞ୍ଚିଲେ ଏ ସବୁ ଚର୍ଚ୍ଚା କରିବାର ସମୟ ନଥାଏ, ସୁବିଧା ନ ଥାଏ ଏବଂ ସୁଯୋଗ ବି ଦିଆଯାଏ ନାହିଁ । ସମସ୍ତେ ନିଜ ନିଜ କାର୍ଯ୍ୟନେଇ ବ୍ୟସ୍ତ । ତେବେ ଅଙ୍କ ଆକାରରେ ସଂଖ୍ୟାର ହିସାବ ନଜାଣିଲେ ସୁଦ୍ଧା ପରିସ୍ଥିତି ଜଣାଇ ଦେଉଥାଏ ଯେ ଆମେ ହାରୁଚୁ, କିନ୍ତୁ ପ୍ରାୟ ୭୦ ଭାଗ ଭାରତୀୟ ବାହିନୀ ଏହି 'ହାରିବା' ଭିତରେ ହିଁ ଯେପରି 'ଜୟ' ରହିଚି ତାହାହିଁ ଅନୁଭବ କରୁଥାନ୍ତି । ବାହାରକୁ ଜଣାଇଦିଆ ଯାଉଥାଏ ଆମେ ଜିତୁଚୁ କିନ୍ତୁ ଇଂରେଜଇଲେ ସୁଦ୍ଧା ଭାରତୀୟମାନେ ସହଜରେ ଭୁଲୁ ନଥାନ୍ତି ।

ସେ ଦିନ ମୁଁ ଇଂଫାଲରୁ "ପାଲେଲ" ରୋଡ଼ରେ ଯାଉଥାଏ । ଗୋଟିଏ ଗଛ ମୂଳରେ କେତେ ଗୁଡ଼ିଏ ଗୋରା ସୈନ୍ୟ ଥାଆନ୍ତି । ୨।୪ ଜଣ ପଞ୍ଜାବୀ ସୈନ୍ୟ ବି ତାଙ୍କ ସଙ୍ଗେ ବସିଥାନ୍ତି । ଲରୀରେ ମୁଁ, ଡ୍ରାଇଭର ଓ ହେଲ୍‌ପର ଛଡ଼ା ଆଉ କେହି ନଥାନ୍ତି । ୩ ଟନ (ଟ୍ରକ) ଗାଡ଼ିରେ ଭର୍ତ୍ତି ହୋଇଥାଏ ଚିନି । ଏମାନଙ୍କର ବେଶଭୂଷା ଦେଖି ମୋର ମନରେ ଭୟ ତଥା ଦୟା ଉଦ୍ରେକ ହେଲା । ବାଧ୍ୟ ହୋଇ ଗାଡ଼ି ବନ୍ଦକରି ତାଙ୍କ ପାଖକୁ ଗଲି । କିଛି ସମୟ ଆଳାପ

କରିବାରେ ଜଣାଗଲା ସେମାନେ "ମନ୍ତ୍ରାଚଣ୍ଡିଆ" । ମୋର ସେ ପର୍ଯ୍ୟନ୍ତ ଧାରଣା ନଥିଲା ସୈନ୍ୟ ବିଭାଗରେ ଏ ବି ଗୋଟିଏ ବିଭାଗ ବୋଲି, ଅର୍ଥାତ୍ ଯୁଦ୍ଧ ବିଭାଗରେ ସବୁ ଅଲଗା ଅଲଗା ବିଭାଗ ପରି ଯାଙ୍କର ଖାଲି କାମ ହେଲା ଯୁଦ୍ଧ ଭୂଇଁରେ ଯେତେ ଲୋକ ମରିବେ ତାଙ୍କର ଶବ ସତ୍କାର କରିବା ।

ଆପଣମାନେ ହୁଏତ ଆଶ୍ଚର୍ଯ୍ୟ ହେଉଥିବେ ଯେ ଏମାନେ ସବୁ ଖବର ଜାଣନ୍ତି । ଗୋଟିଏ ଉଦାହରଣ ଦେଲେ ସହଜରେ ବୁଝିହେବ ।

ଯୁଦ୍ଧ ଭୂଇଁରେ ଗୋଟିଏ ଗୋଟିଏ ଅଞ୍ଚଳରେ ସବୁ ଭାଗ ହୋଇଥାଏ ତାକୁ 'ଏରିଆ' କୁହନ୍ତି । ଏରିଆରେ ଜଣେ ଜଣେ କମାଣ୍ଡର ଥାନ୍ତି, ବ୍ରିଗେଡ଼ିଅର ପାହ୍ୱାର । ସେମାନେ ସବୁ ଜାଣି ପାରନ୍ତି ଠିକ୍‌ନକ୍ସି କଥା । ତାଙ୍କ ପାଖରେ ପ୍ରତ୍ୟେକ ଘଣ୍ଟାର ଖବର ଥାଏ । କେତେ ମଲେ କେତେ ଗଲେ, କେତେ ଆସିଲେ ସବୁ କଥାରେ ସେହିମାନେହିଁ ଜଣେ ଜଣେ ସେନାପତି । ସେମାନେ ଗୋଟିଏ ଗୋଟିଏ ଯାଗାରେ ବସି ସୈନ୍ୟ ଚାଳନା କରୁଥାନ୍ତି । ମ୍ୟାପ ଉପରୁ ହିସାବ କରି ସେମାନେ ସବୁ ଅର୍ଡ଼ର ଦେଉଥାନ୍ତି । ଉପର ଆର୍ମି କମାଣ୍ଡର ପାଖରୁ ତାଙ୍କୁ ବି ଅର୍ଡ଼ର ଆସୁଥାଏ । ଆର୍ମି କମାଣ୍ଡର ମାନେ ତାଙ୍କ ଉପରୁ ଅର୍ଡ଼ର ବି ପାଉଥାନ୍ତି ।

ଏହି ଭାବରେ ଯୁଦ୍ଧ ଚାଳନା ହୁଏ । ଏରିଆ କମାଣ୍ଡରଙ୍କୁ ଜଣା ଆମର ବାହିନୀ କେତେ ଆଗକୁ ମାଡ଼ି ଚାଲିଲେ ଓ କେତେ ପଛକୁ ହଟିଲେ, କେତେ ମଲେ ଓ କେତେ ବଞ୍ଚିଲେ ଏ ସବୁ ଗୁପ୍ତରେ ରହେ । କୌଣସି ଯାଗାରେ ଯଦି ଆମ ପକ୍ଷର ଲୋକ ଆଗକୁ ଚାଲିଲେ ତାହା ହେଲେ ସେମାନେ ଯେଉଁଠି ଯୁଦ୍ଧ କରୁଥାନ୍ତି ନିଶ୍ଚୟ କେତେ ମରିଥିବେ, ବୋମା ମାଡ଼ ହେଲେ ସେଥିରେ ବି ମରନ୍ତି । ମେସିନ୍‌ଗନ୍ ହେଲା କି 'ମରଟାର' ଫାୟାର ହେଲା କିଛି ମଲେ, ଏହିପରି ସବୁ ଯେତେ ମରନ୍ତି ଏ ଯେଉଁ ଶବ ସତ୍କାର କରିବା ଦଳ ଖବର ପାଆନ୍ତି । ସେହି ଅନୁସାରେ ସେମାନେ ଯାଇ ନିଜ ନିଜର କାମ ଚଲାନ୍ତି ।

ଫିଲ୍ଡରେ ଭାରତୀୟ ସୈନ୍ୟ ବାହୁନୀରେ ୩ ପ୍ରକାର ଶବ ସତ୍କାର କରା ହୋଇଥାଏ । ଗୋଟିଏ ବଡ଼ ଗାତରେ ମଲା ଲୋକ କମ୍ବା ତାର କୌଣସି ଅଙ୍ଗ ବିଶେଷ ଯାହା ମିଳାଲା ତାକୁ ପକାଇ ଦେଇ ତା ଉପରେ ଘିଅ ବା କରୋସିନ୍ ଯାହା ଯେତେବେଳେ ମିଳେ ତାକୁ ନିଆଁ ଲଗାଇ ଦିଆହୁଏ । ଘିଅ କହିଲେ ଅବଶ୍ୟ ମଇଁଷି ବା ଗୁଆଘିଅ ନୁହେଁ । ତାର ଅନ୍ୟନାମ **Oil Cwking** । ମୁସଲମାନ ବା ଖ୍ରୀଷ୍ଟିଆନ ହେଲେ ସେମାନଙ୍କୁ ପୋଡ଼ ଦିଆଯାଏ । ମୃତ୍ୟୁ କହିତ ଫିଲ୍ଡକୁ ଗଲେ ଦୁଇଟି **Identify Dise** ଦିଆ ହୋଇଥାଏ ଏବଂ ସେଥିରେ ତାଙ୍କର ଉଲ୍ଲେଖ ଥାଏ ତାହା ଏହିଠାରେ ବିଶେଷ କାମ ଦିଏ । ନମ୍ବର ଓ ଜାତ ଦେଖି ଜାଣିହୁଏ ମୃତ ବ୍ୟକ୍ତି କିଏ ଏବଂ ତାର ନମ୍ବର କ'ଣ । ସେତକ ଜାଣିଲେ ବାକି ସବୁକଥା ରେକର୍ଡ଼ ଅଫିସରୁ ଆପେ ଆପେ ମିଳିଯାଏ ।

ରାସ୍ତାରେ ଏ ଦଳ ବସି ଥିବାରୁ ବୁଝିଲି ନିଶ୍ଚୟ ଏଠି ଗୁଡ଼ାଏ ମରିଥିବେ । ତାଙ୍କର କମାଣ୍ଡରଙ୍କୁ ପଚାରିବାରେ ସେ ହଁ କଲେ । କପଡ଼ ଶବ ସବୁ ପଡ଼ିଛନ୍ତି ଦେଖିବାରେ ମୋହ ଏଡ଼ି ନପାରି ତାଙ୍କର କମାଣ୍ଡରଙ୍କୁ କହିବାରୁ ସେ କହିଲେ—

"କାହିଁକି ଦେଖିବ । ଦେଖିଲେ ତୁମର ମନ ଖରାପ ହେବ ଏବଂ ଏ ସବୁ କାହାରିକୁ ଦେଖାଇବାକୁ ମନା । ଆମର ଏ ସବୁ ଦୈନନ୍ଦିନ ଘଟଣାରେ ପରିଣତ ହେଲାଣି ସୁତରାଂ ଆମକୁ ଦେହ ସୁହା ।"

ତଥାପି ତାଙ୍କୁ ଅନୁରୋଧ କରିବାରେ ସେ ଦେଖାଇ ନେଲେ । ରାସ୍ତା ଉପରୁ ପ୍ରାୟ ୨ ଫର୍ଲଙ୍ଗ ଉପରେ ତାଙ୍କର ଟେଣ୍ଟ ପଡ଼ିଥାଏ । ସେଠାରୁ ପ୍ରାୟ ଏକ ଫର୍ଲଙ୍ଗ ଦୂରରେ ପ୍ରାୟ ୫୦ ଫୁଟ ଲମ୍ବା ୩୦ ଫୁଟ ଓସାର, ୧୦।୧୨ ଫୁଟ ଗଭୀର ଗୋଟିଏ ଗାତରେ ହିନ୍ଦୁ ଶବ ଭର୍ତ୍ତି ହୋଇଚନ୍ତି ଆଉ ୨୦।୨୫ ହାତ ଦୂରରେ ସେହିପରି ଆଉ ଗୋଟିଏ ଗାତ ସେଥିରେ ସବୁ ମୁସଲମାନ, ଉଃ ! କି ବିଭତ୍ସ ସେ ଦୃଶ୍ୟ । ଖାଲି କଟା ଗୋଡ଼ଟାଏତ କେଉଁଠି ମୁଣ୍ଡଟାଏ, ଛିଣ୍ଡା ହାତଟାଏ । ଏହିପରି ଭର୍ତ୍ତି ବିଚରା ଘରେ ମରିଥିଲେ କିଏ କାନ୍ଦିଥାନ୍ତା—ଶବ ଉପରେ ଫୁଲ ଯଜଡ଼ା ହୋଇ ବାଜା ବଜାଇ ଦାହ କରିବାକୁ ମାଲ ଭାଇମାନେ ଉଠାଇ

ଥାନ୍ତେ "ରାମ ନାମ ସତ୍ୟହେ" କୁହା ହୋଇଥାନ୍ତା କିନ୍ତୁ ଏଠାରେ ? ମନେ ପଡୁଥିଲା ସେ ଦିନ—

ଲଭିବ ଏଥି ମୋର ଜୀବନ ଦୀପ
ଏ ବାରତା ନପିବ ଜନ ସମୀପ

ଇଂଫାଲରେ ଯୁଦ୍ଧ ଚାଲିବା ସମୟରେ ଭାରତୀୟ ଇଂରେଜ ବାହିନୀ ମଧ୍ୟରେ ମନ ଅମେଳ ସବୁବେଳେ ଥାଏ । ସେତେବେଳକୁ ଭାରତୀୟ ମାନଙ୍କୁ ବିଶେଷ ଭାବେ ସନ୍ଦେହ କରା ହେଉଥାଏ । ଗୋଟିଏ ଗୋଟିଏ ଘଟଣାରୁ ତାହା ଆହୁରି ଉଗ୍ର ହୋଇ ଉଠୁଥାଏ ।

ଦିନକର କଥା—ଗରିଲା ଯୁଦ୍ଧ ଚାଲିଥାଏ । ପାହାଡ଼ ପର୍ବତ ହେବା ଏହି ଅଞ୍ଚଳରେ ବଡ ଅସୁବିଧା । ଦୁଇଟା ପାହାଡ଼ ମୁହାଁ ମୁହିଁ ଅଛି, ବିପରୀତ ଦିଗରୁ ଗୁଳି ଚାଲନା ହେଲେ ତାର ଜବାବ ଏ ପଟୁ ଯାଏ । ଏପରି ସ୍ଥଳରେ ଯେଉଁମାନେ ଟ୍ରେଞ୍ଚରେ ଲଢୁଥାନ୍ତି ସେମାନେ 'ମୋରଚା' ଭିତରେ ହେଉ ବା ବାହାରେ ହେଉ ଫାୟାର ଚଳାଇଥାନ୍ତି । କମାଣ୍ଡରଠାରୁ ଅର୍ଡର ଅନୁସାରେ କିଛି ସମୟ ଲଢ଼ାଇ ପରେ ଅନ୍ୟଦଳ ତାଙ୍କୁ "କଭରିଂ ଫାୟାର" ଦେଇ ଦେଇ ଯାଆନ୍ତି ଓ ହଟୁଥିବା ଦଳ ବିଶ୍ରାମ ପାଇଁ ରିଟାୟାର୍ଡ କରନ୍ତି ।

ସେଦିନ ଗୋଟିଏ ପାହାଡ ଉପରେ ଭାରତୀୟ ସୈନ୍ୟଙ୍କୁ ଲଢିବାକୁ ପଡୁଥାଏ । ପାହାଡ଼ ତଳେ ଗୋରା ସୈନ୍ୟମାନେ ତାଙ୍କୁ ରିଲିଭ୍ କଲେ ସେମାନେ ତଳକୁ ଆସି ବିଶ୍ରାମ କରି ଥା'ନ୍ତେ ଓ ଖିଆ ପିଆ କରନ୍ତେ । ଖିଆପିଆ ମାନେ ଶୁଖା ବିସ୍କୁଟ ଓ ପାଣି କିମ୍ବା ଚା' । ଯଦି ସୁବିଧା ହୁଏ ସପ୍ଲାଇ ବିଭାଗର କୌଣସି କମ୍ପୋଜିଟ ପ୍ଲାଟୁନ ରନ୍ଧା ଜିନିଷ କିଛିଏ ନେଇ ପହଞ୍ଚାଇ ଥାଆନ୍ତି ତାକୁ ଖାଆନ୍ତି ସେ । ଦିନ ବାର ଘଣ୍ଟା ବିତିଲା ପରେ ଭାରତୀୟ ସୈନ୍ୟମାନେ ବିଶ୍ରାମ ଚାହିଁଲେ, ତଥାପି ଗୋରା ସୈନ୍ୟମାନେ ନ ଯାଇ ଆରାମ କରିବାକୁ ଲାଗିଲେ । ଭାରତୀୟ ସୁବେଦାର ମେଜର ସିଗନାଲ ଦେଇ ଦେଇ ନ ଆସିବାରୁ ତାଙ୍କର ରାଗ ହେଲା । କମାଣ୍ଡର ଅର୍ଡର ଆଉ ମାନିବେ କ'ଣ ? ଶତ୍ରୁ ପକ୍ଷକୁ ଗୁଳି ନ ଚଳାଇ ମେସିନ ଗନରୁ ତଳକୁ ଗୁଳି ଚଳାଇ ଦୁଇ ଶହ ଗୋରା ସୈନ୍ୟଙ୍କୁ ଟଳେଇ ଦେଲେ । ଗୋରାମାନଙ୍କ ଭିତରେ ଭାଳେଣି

ପଡ଼ିଲା । ଏଣେ ଦୁଇଶହ ଖଣ୍ଡେ ଲୋକଙ୍କୁ ମାରିବା ଖବର କମ୍ପାନୀ କମାଣ୍ଡର ପାଖରେ ପହଞ୍ଚିବା ପୂର୍ବରୁ ଧଳା ପତାକା ଦେଖାଇ ଦେଲେ । ଆଉପଟ ପାହାଡ଼ରୁ ଧଳା ପତାକା ଦେଖାଗଲା—ମାନେ "ଶାନ୍ତି ଗୃହୀ" । ଅନ୍ୟ ପଟୁ ଧଳା ପତାକା ଦେଖାଯିବାରୁ କ୍ରମେ ପାହାଡ଼ ତଳକୁ ଓହ୍ଲାଇ ପତାକା ଧରି ବିପରୀତ ପାହାଡ଼କୁ ଯାଇ ଜାପାନୀମାନଙ୍କ ସଙ୍ଗେ ମିଶିଗଲେ ଏବଂ ନିଶ୍ଚୟ I. N. A. ସଙ୍ଗରେ ମିଶିଥିବେ । ୧୯୪୨ ଆନ୍ଦୋଳନରେତ ବ୍ରିଟିଶମାନେ ଯାହା ବିବ୍ରତ ହୋଇଥିଲେ, ପରେ ପରେ I. N. A. ଗଠନ ଓ ନିଜ ସୈନ୍ୟ ବାହିନୀ ମଧ୍ୟରେ ଏକରକମ ଅସନ୍ତୋଷ ସେମାନଙ୍କୁ ଭାରତ ଛାଡ଼ିବାକୁ ବାଧ୍ୟ କଲା ।

ଦିନେ ଇଂଫାଲରୁ "ଟାମୁ" ଯିବାକୁ ପଡ଼ିଲା । ଜଣେ କ୍ୟାପ୍‌ଟେନ୍, ମୁଁ ଓ ତେର ଜଣ ସିପାହୀ ଗୋଟିଏ ତିନିଟନ ଲରିରେ ବସି ଯାଉ ଥାଉଁ । ସଙ୍ଗରେ ଥାଏ କେବଳ ଫିଲ୍‌ଡ କିଟ୍‌ । "ପାଲେଲ" ପାଖରେ ସନ୍ଧ୍ୟା ହୋଇ ଯିବାରୁ ରହିବାକୁ ବାଧ୍ୟ ହେଲୁ । କାରଣ ସନ୍ଧ୍ୟା ପରେ ମଟରରେ ଲାଇଟ ଦେଇ ଯିବା ମନା ; ଯେହେତୁ ସେତେବେଳକୁ ଗରିଲା ଯୁଦ୍ଧ ଓ ଜଙ୍ଗଲ ଭିତରେ ଯୁଦ୍ଧ (**Jungle warfare**) ଘମାଘୋଟ ଲଗିଥାଏ । ପ୍ରାୟ ପାଞ୍ଚଟାବେଳକୁ ଜଙ୍ଗଲ ଯାଗା ହୋଇଥିବାରୁ ଅନ୍ଧାର ହୋଇ ଆସୁଥାଏ । ରାସ୍ତାକଡ଼ରେ ପାହାଡ଼ କଟା ହୋଇ ଗୋଟିଏ ଫିଲ୍‌ଡ ସପ୍ଲାଇ ଡିପୋ ପ୍ରତିଷ୍ଠା ହୋଇଥାଏ । ସେହିଠାରେ ରାତିଟା କଟାଇ ସକାଳେ ଆଗକୁ ଯିବାର ସ୍ଥିର ହେଲା । ଲରି ବନ୍ଦ କରି କମ୍ପାନୀ କମାଣ୍ଡରଙ୍କ ପାଖକୁ ଗଲୁ । ତାଙ୍କୁ କହିବାରେ ସେ କହିଲେ—

"ଦେଖନ୍ତୁ ଯାଗାର ବହୁତ ଅଭାବ—ପାହାଡ଼ କାଟି ଆମ୍ଭେମାନେ ତମ୍ବୁ ପକାଇ ରହିଛୁ—୬ଜଣ ରହିବା ଯାଗାରେ ୧୫ ଜଣ ରହିଛନ୍ତି । ସୁତରାଂ ଦୁଃଖର ସହିତ କହିବାକୁ ପଡୁଛି ଯାଗା ମୁଁ ଦେଇ ପାରିବି

ନାହିଁ । ଆପଣ କିନ୍ତୁ ଖାଦ୍ୟ ଜିନିଷ ଯାହା ଇଚ୍ଛା ତାହା ନେଇ ଯାଇ ପାରନ୍ତି ।”

ଏହି ସମୟରେ ସେହି କମ୍ପାନୀର ଜମାଦାର ସାହେବ (ଯେ କି ଜଣେ ଗୁର୍ଖା) କହିଲେ—

“ଆପଣମାନେ ଏ ପାହାଡ଼ ଉପରକୁ ଉଠନ୍ତୁ । ପ୍ରାୟ ୩୦୦ ଫୁଟ ଉପରକୁ ଗଲେ ଦେଖିବେ ୨।୩ଟି କୁଡ଼ିଆ ଘର ଅଛି, ସେଇଠି ରାତିଟା କୌଣସି ମତେ କଟାଇ ନେବେ ।”

ତାଙ୍କ କଥା ମାନି ଉପରକୁ ଉଠିଲୁ ଏବଂ ପ୍ରକୃତରେ ପ୍ରାୟ ୩୦୦ ଫୁଟ ଉପରେ ଖଣ୍ଡେ ତାଳପତ୍ର ଘେରା କୁଡ଼ିଆ । ଭିତରେ ବାଉଁଶ ପଟା ହୋଇ ଖଟ ପରି ସାଙ୍ଗ ସବୁ କରା ହୋଇଛି । ଠିକ୍ ସେହି କୁଡ଼ିଆ ଠାରୁ ଆଉ ୨୦।୩୦ ଫୁଟ ଉପରକୁ ଆଉ ଖଣ୍ଡେ ଛୋଟ କୁଡ଼ିଆ । ସୁତରାଂ ସେହି କୁଡ଼ିଆ ଭିତରେ ରାତି କଟାଇବାର ସ୍ଥିର ହେଲା । ଆମେ ତଳ ବଖରାରେ ପହଞ୍ଚି ଦେଖିଲୁ ସେ କୁଡ଼ିଆ ଗୁଡ଼ିକ ଅପରିଷ୍କାର ହୋଇ ପଡ଼ିଛି—ଗୋଟିଏ ମଲା ମଣିଷର ଖପୁରୀଟାଏ ଗଡ଼ୁଛି ସେ ଘରେ ଏବଂ କେତେ ଛିଣ୍ଡାକନା (ବର୍ମୀଙ୍କ ମାନଙ୍କର ଲୁଙ୍ଗି ଓ ସାର୍ଟର ଅଂଶ ବିଶେଷ ପରି ଜଣା ପଡୁଥାଏ) ପଡ଼ିଥାଏ । ସଫା ସୁତୁରା କରି ସେହି ବଡ଼ କୋଠରୀଟିରେ ସବୁ ସିପାହୀମାନେ ରହିଲେ । ଉପରେ ଥିବା ସାନ ବଖରାଟିରେ ମୁଁ ଓ କ୍ୟାପ୍ଟେନ୍ ରହିଲୁ । ସେତେବେଳେ ସେ ଅଞ୍ଚଳରେ ଜାପାନୀମାନେ ଉଡ଼ାଜାହାଜରୁ ଚାଉଳ ବସ୍ତା ପକାଉଥାନ୍ତି । ପ୍ରଚୁର ଚାଲିଥାଏ । ସାଧାରଣ ନାଗରିକମାନେ ଖାଇବାକୁ ପାଉ ନ ଥିବାରୁ ଏବଂ ବାହାର ଜଗତରୁ ଛିନ୍ନ ହୋଇ ପଡ଼ିଥିବାରୁ ଆମ୍ଭେମାନେ ଖାଦ୍ୟ ଯୋଗାଉଛୁ ।

କିନ୍ତୁ ପ୍ରକୃତ ଉଦ୍ଦେଶ୍ୟ ତା ନୁହେଁ । ଉଦ୍ଦେଶ୍ୟ ଜୀବାଣୁ ଯୁଦ୍ଧ । ଚାଉଳ ପ୍ରକୃତରେ ମିଳୁ ନଥାଏ । ଲୋକମାନେ ଖାଇବା ବିନା ମରୁଥାନ୍ତି—ଚାଉଳ ପାଇଲେ ନିଶ୍ଚୟ ଖାଇବେ । ସେହି ଚାଉଳ ଭିତରେ ପ୍ଲେଗର ଜୀବାଣୁ ଛାଡ଼ି ଦିଆ ଯାଉଥାଏ । ଖାଇଲା ମାତ୍ରେ ରୋଗ ହେବ ଏବଂ ଏହା ସଂକ୍ରାମକ । ସୁତରାଂ ପାଖରେ ଥିବା ସୈନ୍ୟବାହିନୀ ସେଥିରେ ବି ରୋଗାକ୍ରାନ୍ତ ହେବେ । ତା'ଛଡ଼ା ଯେତେ ନଈ ନାଳ ଅଛି ସେଥିରେ

କଲେରା ଜୀବାଣୁ ଗୁଡ଼ିଥାନ୍ତି । ସେଠାରୁ ପାଣି ପିଇଲେ ବ ଅଳ୍ପକ୍ଷଣରେ ଗୁଡ଼ାଏ ଲୋକ ମରିବେ—କ୍ରମେ ସୈନ୍ୟ ସଂଖ୍ୟା ହ୍ରାସ ପାଇଯିବେ ଏବଂ ଯୁଦ୍ଧରେ ଜୟ ଲାଭ କରିବା ସହଜ ହେବ । ସେଥିପାଇଁ ସେତେବେଳେ ବ୍ରିଟିଶ ସରକାର ତରଫରୁ ବ ଏହାର ପ୍ରତିରୋଧ ପାଇଁ ପ୍ରଚୁର ଗୁଳିଥାଏ ଏବଂ ନଈ ନାଳର ପାଣି ବ୍ୟବହାର କରିବାକୁ ମନା ହୋଇଥାଏ ।

ସେହି କୁଡ଼ିଆ ଘରେ ରାତି ରହିବାର ବନ୍ଦୋବସ୍ତ ହେଲା ଉଦ୍ଧରୁ ପାଖ ନାଳରୁ ପାଣି ଆଣି ପ୍ରଥମେ ଫୁଟାଇବାକୁ ପଡ଼ିଲା ଏବଂ ତା ପରେ ସେଥିରେ ଗେଷେଇ ହେବାର ପ୍ରସ୍ତାବ ହେଲା କିନ୍ତୁ ପିଇବା ପାଇଁ ନିଜ ନିଜର ପାଣି ବୋତଲର ପାଣି ବ୍ୟବହାର କରିବାକୁ ଆଦେଶ ଦିଆ ହେଲା । ପ୍ରାୟ ସନ୍ଧ୍ୟା ୭ଟା ସୁଦ୍ଧା ଖିଆପିଆ ସାରି କୁଡ଼ିଆ ଭିତରେ ଅନ୍ଧାରରେ ଶୋଇ ରହିଲୁ । ରାତି ପ୍ରାୟ ୧୨ଟା ହେବ । ସମସ୍ତଙ୍କୁ ନିଧୁମ ନିଦ ହୋଇଛି । ଏପରି ସମୟରେ ତଳ କୁଡ଼ିଆରୁ ଜଣେ ସିପାହୀ ଆମ କୁଡ଼ିଆକୁ ଆସି ମୋତେ ହଲାଇ ଉଠାଇଲା ଏବଂ ଭୟାତୁର କଣ୍ଠରେ କହିଲା—

"ବାବୁଜୀ ଉଠିୟେ—ଦୁସ୍‌ମନ୍ ଆକେ ହାମ୍‌ଲା କର୍‌ଦିଆ—ଉଠିୟେ ।"

ଏକଥା ଶୁଣି ମୋର ଅକଲ ଗୁଡୁମ । ମୁଁ ଉଠି କ୍ୟାପ୍‌ଟେନକୁ ଉଠାଇଲି । ସାହେବ ଆମର ବେଶ୍ ହୁଇସ୍କି ପକେଇ ନିଦରେ ଭୋଳ । ଉଠାଇ ଉଠାଇ ମୋଟେ ଉଠୁ ନ ଥାଏ । ଶେଷରେ ତା କାନ ପାଖକୁ ମୁହଁ ନେଇ "କ୍ୟାପ୍‌ଟେନ, କ୍ୟାପ୍‌ଟେନ" ଡାକଗୁଡ଼ ଶୁଭିବାରୁ ଉଠିଲା କହିଲା "ସାର୍ ସବୁ ସରିଗଲା । ଆମ ଉପରେ ଶତ୍ରୁପକ୍ଷ ଆକ୍ରମଣ କଲେଣି ତଳ କୁଡ଼ିଆକୁ । ଉଠନ୍ତୁ ଯିବା ତଳକୁ ।" ସେଇଠି ବସି ତାର ପିସ୍ତଲକୁ ସଜାଡ଼ ନେଲା । ମୁଁ ମୋର ଷ୍ଟେନଗନକୁ ଠିକ୍ କରି ଚାଲିଲୁ ତଳକୁ । ତଳ କ୍ୟାମ୍ପରେ ଆସି ପହଞ୍ଚିଲା ବେଳକୁ ଆମର ସିପାହୀମାନେ ଭୟତ୍ରସ୍ତ ହୋଇ ବସିଚନ୍ତି । ତାଙ୍କ ମଧ୍ୟରୁ ଜଣେ ସେ ବାଉଁଶ ଘଡ଼ତଳେ କମ୍ବଳଟାଏ ଘୋଡ଼ାଇ ହୋଇ ଠିକ୍ ବରଡ଼ାପତ୍ର ପରି ଥରୁଚି, ବାକି ସମସ୍ତେ ଡରରେ ଗୁନିଆ ହୋଇ ଅଧାପ୍ରାଣ, ଆମକୁ ଦେଖି ବୋଧହୁଏ ତାଙ୍କର ଟିକିଏ ଚେତା ପଶିଲା । ଏସବୁ ଢଙ୍ଗ ରଙ୍ଗ

ଦେଖି କିଛି ବୁଝି ହେଲନା । କାହିଁ କେଉଁଠି ଶତ୍ରୁ ? ଭାବିଲି ବୋଧହୁଏ ଶତ୍ରୁ କେଉଁଠାରେ ଲୁଚି ରହିଛନ୍ତି କାରଣ ଯୁଦ୍ଧରେ ବାହାବୁଙ୍ଗା, ଯେଉଁ ପକ୍ଷ ଯେତିକି ଲୋକଙ୍କୁ ବନ୍ଦୀ କରିପାରନ୍ତି । ଠିକ୍‌ଏ ଗୃଢ଼ିର ଆଡ଼କୁ ଅନାଇ ଯେଉଁ ସିପାହୀଟି କାନ୍ଦୁଥିଲା ତା' ପାଖକୁ ଯାଇ ତା ହାତକୁ ଯେପରି ମୁଁ ଧରି ପକେଇଛି ସେ ଗୋଟାଏ ରଡ଼ି ଛାଡ଼ିଲା । ତାର ରଡ଼ି ଶୁଣି ମୁଁ ଡରି ପଛକୁ ଡେଇଁ ପଡ଼ିଲି । ତାପରେ ତାକୁ ଦୁଇଜଣ ସିପାହୀ ଜବରଦସ୍ତି ଧରି ଉଠାଇଲେ । ତାପରେ ସେ କାନ୍ଦ କାନ୍ଦ କହିଲା—

"ସାହେବ ; କିସିନେ ମେରେ ଇହାଁ କାଟା—ଦେଖିୟେ ସାବ୍ ବହୁତ ଦରଦ ହୋତା ହୈ" (ଦେଖନ୍ତୁ ସାହେବ କିଏ ମୋର ଏଠାରେ କାମୁଡ଼ି ଦେଇଛି, ବହୁତ ପୀଡ଼ା ଲାଗୁଛି । )

ସତକୁ ସତ ଦେଖିଲା ବେଳକୁ ତାର ଜଙ୍ଘରେ ଦାନ୍ତ ଚିହ୍ନ ବସି ଯାଇଛି । ଆଉ ଜଣକ ବି କହିଲା "ମୋ ଗାଲରେ କିଏ ଜଣେ ଖୁବ୍ ଯୋରରେ ଚାପୁଡ଼ାଏ ପକାଇଛି । ଦେଖିଲା ବେଳକୁ ତା ଗାଲରେ ପାଞ୍ଚ ଆଙ୍ଗୁଳି ଦାଗ ବସି ଯାଇଛି ।

ଏ ସବୁ ଦେଖି ଓ ଶୁଣି ଆଶ୍ଚର୍ଯ୍ୟ ଲାଗିଲା । କ୍ୟାପ୍‌ଟେନ ଦାରୁଭୂତ ମୂରାରୀଙ୍କ ପରି ଠିଆ ହୋଇଥାଏ । ସେତିକିବେଳେ ସିପାହୀମାନଙ୍କ ମଧ୍ୟରୁ କିଏ ଜଣେ କହିଲା—

"ଆଜ୍ଞା ! ଏ ଭୂତର କାରବାର ।" ଏ କଥା ଶୁଣି ସାହେବ ରାଗିଯାଇ କହିଲା—

"ବାଜେକଥା କୁହନାହିଁ । ତେବେ କାହିଁକି ଏପରି ହେଲା ? କିଏ ଆସି ଏପରି କାମୁଡ଼ିଲା ବା ମାରିଲା ? ତା ଛଡ଼ା ଏତେଲୋକ ଯେ ଘରଭିତରେ ଥାଇ ଥାଉ୍ କେହି କିଛି ଦେଖି ପାରିଲେ ନାହିଁ !" ସାହେବ ମୋତେ ଇଂରାଜୀରେ କହିଲା—

"ମୁଁ ଭାବୁଛି ଏ ଶତ୍ରୁପକ୍ଷର ଚାଲକି । ଏପରି ଡରେଇ ଦେଲେ ଆମେ ଭୟପାଇଯିବା ଏବଂ ସେମାନେ ନିର୍ଭୟରେ ଆମକୁ ବାନ୍ଧି **Concentration** କ୍ୟାମ୍ପକୁ ନେଇଯିବେ—ସୁତରାଂ ଆଉ ବିଳମ୍ବ ନ କରି ବାହାରକୁ ଚାଲି ଆସ ।"

ତା କଥା ମାନି ସମସ୍ତେ ବାହାରକୁ ଆସିଲେ । ବାହାରକୁ ଆସି ଗୋଟିଏ ବ୍ୟୂହ ରଚନା କରି ଠିଆ ହୋଇଗଲୁ । ଅର୍ଥାତ୍ ସବୁ ସିପାହି ଯାକ ବନ୍ଧୁକରେ ଗୁଳି ଭର୍ତ୍ତି କରି ଗୋଲେଇ ହୋଇ ଠିଆ ହୋଇଗଲେ । ସମସ୍ତଙ୍କ ମୁହଁ ବାହାରକୁ । ସମସ୍ତଙ୍କୁ ଅର୍ଡ଼ର ଦିଆ ହେଲା ଘୋଡ଼ା ଉଠାଇଥିବା ପାଇଁ ଏବଂ କିଛି ଜିନିଷ ଦେଖିବା ମାତ୍ରେ ଫାୟାର କରିବାକୁ । ସାହେବ ଗୋଲେଇ ମଝିରେ ଠିଆ ହେଲା ଏବଂ ତା ପାଖରେ ମୁଁ ବି ଠିଆ ହୋଇ ରହିଲି ।

ଭାରି ଡର ଲାଗୁଥାଏ ସେତେବେଳକୁ । ପ୍ରାୟ ନିଶ୍ଚିନ୍ତ ଯେ ଶତ୍ରୁ ପକ୍ଷର କେହି ଲୋକ ଆମେ ରହିଥିବାର ଖବର ପାଇ ବୋଧହୁଏ ଖବର ଦେବା ପାଇଁ ଯାଇଛି ଏବଂ ଆମେ ନିଶ୍ଚୟ ବନ୍ଦୀ ହେବୁ ଆଜି । କ୍ୟାପ୍‌ଟେନର ଅର୍ଡ଼ର—ବନ୍ଦୀ ହେବା ନାହିଁ, ଆମେ ଯୁଦ୍ଧ କରିବା । ବଞ୍ଚିଲେ ତ ଭଲ କଥା ମଲେ ବି ଭଲ । ବନ୍ଦୀ ହୋଇଯିବା ପ୍ରଶ୍ନ ଉଠୁନି । ପ୍ରକୃତରେ ସେ ମସୟର ଅବସ୍ଥା ବର୍ତ୍ତମାନ ଭାବି ହେଉ ନାହିଁ । ମୁଁ ଭାବୁଥାଏ ୧୩ଖଣ୍ଡ ରାଇଫଲରେ ଆମେ କି ଯୁଦ୍ଧ କରିବୁ ? ଆଗରୁ ତ ଡର ଆମ୍ଭେମାନେ ଅର୍ଦ୍ଧ ମୃତ । ମିଛରେ ଆମେ କି ଯୁଦ୍ଧ କରିବୁ ? ଗୋରା ସାହେବ ସିନା ତା ଦେଶ ପାଇଁ ପାଗଳ । ମୁଁ କାହିଁକି ମିଛରେ ମରିବି ? ତଥାପି ଅର୍ଡ଼ର ଅନୁଯାୟୀ କାମ କରିବାକୁ ପଡ଼ିବ । ଦେଖାଯାଉ ଭାଗ୍ୟରେ କଣ ଅଛି ।

ପ୍ରାୟ ଅଧଘଣ୍ଟାଏ ବିତିଗଲା । କିଛି କୁଆଡୁ ନାହିଁ । ଖାଲି ଛନକା ଲାଗୁଥାଏ । ହଠାତ୍ ଆମେ ଠିଆ ହୋଇଥିବା ଜାଗାର ପ୍ରାୟ ୫୦।୬୦ଗଜ ଦୂରରୁ ଗଛପତ୍ର ଦୋହଲି ଉଠିଲା—ପବନ ହଠାତ୍ ଖୁବ୍ ଜୋରରେ ବହିଲେ ଯେପରି ଶୁଭେ ସେହିପରି ଶୁଭିଲା । ଥରି ଉଠିଲି ମୁଁ । ଛାତି ଅଠା ଅଠା ଲାଗିଲା । ମୋର ଅବସ୍ଥା କ'ଣ ହୋଇଥିଲା ଏବ୍ରେକ୍ଷଣି ମନେ ପକାଇ ଭାଷାରେ ପ୍ରକାଶ କରିବା ଅସମ୍ଭବ । ଗଛପତ୍ର ହଲିବା ସଙ୍ଗେ ସଙ୍ଗେ ଗୋଟିଏ କରୁଣ ଧ୍ୱନି ଭାସି ଆସିଲା ଠିକ୍ ସେହି ସ୍ଥାନରୁ, ଯେଉଁଠି ଗଛ ପତ୍ର ହଲିଲା । କିନ୍ତୁ ଆଖିକୁ କିଛି ଦିଶୁ ନ ଥାଏ । ଘନ ଅନ୍ଧାର ମଧ୍ୟରେ କିଏ ଜଣେ ଯେପରି କହିଲା—

"ଓଃ, ମରଗସ୍ଥା, ମରଗସ୍ଥା । ସିନା ପେଗୋଲ ଲଗା ହେ, ଓଃ, ଥୋଡ଼ା ପାନି···ଥୋଡ଼ା ପାନି" ।

ତା'ପରେ ଆଉ କିଛି ନାହିଁ । ସବୁ ନିସ୍ତବ୍ଧ । ଜଙ୍ଗଲର ନିସ୍ତବ୍ଧତା, ରାତିର ଗମ୍ଭୀରତା ଓ ଆମର ଅବସ୍ଥା ଆମକୁ ଭୟତ୍ରସ୍ତ କରି ପକାଇଲା । ସମସ୍ତେ ବାକ୍‌ଶକ୍ତି ରହିତ । ଦଶ ମିନିଟ୍ ପ୍ରାୟ ଗୃଲିଗଲା । କ୍ୟାପ୍‌ଟେନ ଚୁପ୍ କରି ମୋ କାନରେ କହିଲେ—

"ଦେଖ, ଏ ଜାପାନୀମାନେ ଅତି ଜଘନ୍ୟ କୌଶଳ କରି ଆମକୁ ଧରିବାକୁ ବସିଛନ୍ତି ।"

ପୁଣି ସାହସ ଟିକିଏ ହେଲା । ଲୋକ ଯେତେବେଳେ ବିପଦରେ ପଡ଼େ, ସାହସ ଆସିଯାଏ । ସେହି ନିୟମ ଅନୁଯାୟୀ ଆଉ ବେଶୀ ନ ଡରି ଯେକୌଣସି ପରିସ୍ଥିତିର ସମ୍ମୁଖୀନ ହେବାକୁ ପ୍ରସ୍ତୁତ ହୋଇ ରହିଲୁ ।

ପ୍ରାୟ ପନ୍ଦର ମିନିଟ୍ ଗୃଲିଗଲା । ହଠାତ୍ ପୁଣି ବିପରୀତ ଦିଗରୁ ସେହିପରି ଶବ୍ଦ ହେଲା । ଯେପରି ଗଛରେ ବାଦୁଡ଼ି ଗଛରେ ରହି ଫଡ଼ଫଡ଼୍ କରନ୍ତି, ସେହିପରି ଶବ୍ଦ । ପୁଣି ଭାସି ଆସିଲା ଆଉ ଏକ ଶବ୍ଦ । ଏଥର କରୁଣ ସ୍ୱରରେ ନୁହେଁ ; ଗାରଭ ବ୍ୟଞ୍ଜକ ଶବ୍ଦରେ ।

"ଯାଓ ଆଗେ ବଢ଼ୋ, ଆବ ରୁକ୍‌ଗୟା ଥା, ମୈନେ ଆଗ୍ ଲଗାଦିଆ—ଯାଓ ତୁ' ପିଓ ଔର ଆଗେ ବଢ଼ୋ, ଦୁସ୍‌ମନ୍ ନଜଦିକ୍ ହେ—"

ଏହା ଶୁଣି ବିସ୍ମୟ ଆହୁରି ବଢ଼ିଗଲା । କୌଣସି ଲୋକର ଦେଖା ନାହିଁ, ଏ କ'ଣ ? ସମସ୍ତଙ୍କ ମୁହଁରେ ସେହି ପ୍ରଶ୍ନ ବାଚକ ଚିହ୍ନ ।

ଏଥର ନିଶ୍ଚିତ୍ତଭାବେ ଜାଣିଲୁ, ଏ ଜାପାନୀ ଶତ୍ରୁ ନୁହେଁ । ସାହେବର ମନରେ ଯେଉଁ ଜାପାନୀ ଭୂତ ଧରିଥିଲା, ସେ ଭୂତ ଓହ୍ଲାଇ ଗଲା । ବର୍ତ୍ତମାନ ଏ ପରିସ୍ଥିତିକୁ ନେଇ ସେ ଆଲୋଚନା ଚଳେଇଲେ ମୋ ସଙ୍ଗେ । କ୍ରମେ ଅନ୍ୟ ସିପାହୀମାନେ ଏଥିରେ ଯୋଗ ଦେଲେ ।

ବହୁତ ଭୂତ କଥା ପଢ଼ିଲି। ଭୂତ ଅଛି କି ନାହିଁ। ଭୂତ କ'ଣ, ଏ ବିଷୟରେ କେହୁ କିଛି ସିଦ୍ଧାନ୍ତ କରି ନଥିଲେ ସୁଦ୍ଧା ସେ ଦିନର ମୋ ଅନୁଭୂତି ଆଜିଯାଏ ମୋ ମନରେ ଅଲିଭା ଦାଗ ହୋଇ ରହିଛି। ତା'ପରେ ସମସ୍ତେ ବ୍ୟୂହ ଭାଙ୍ଗି ଗଲୁ। ଯେଉଁଠି ସନ୍ଧ୍ୟାବେଳେ ସେ ରୋଷେଇ ହେଉଥିଲା। ରୋଷେଇ ଯାଗାରେ ନିଆଁ ସବୁ ଲିଭା ହୋଇ ଥିଲି ବୋଲି ରୋଷେୟା କହିଲା। କାରଣ ଫିଲ୍ଡରେ ସନ୍ଧ୍ୟାପରେ ରୋଷେଇ ହେବା ଯାଗାକୁ ଭଲଭାବେ ପରୀକ୍ଷା କରି, ନିଆଁ ଲିଭିଲା କି ନାହିଁ ଦେଖିବାର ନିୟମ ଏବଂ ନିୟମର ବ୍ୟତିକ୍ରମ ହେଲେ ତା'ର ଦଣ୍ଡ ବିଧାନ ଅଛି। ସୁତରାଂ ଆମକୁ ବିଶ୍ୱାସ କରିବାକୁ ହେଲା। କିନ୍ତୁ ସେ 'ଶବ'ର କଥା ଅନୁଯାୟୀ ଦେଖିଲୁ ନିଆଁ ଜଳୁଛି। ସିପାହୀଙ୍କୁ କାମୁଡ଼ା ଠାରୁ ଆରମ୍ଭ କରି ଏ ପର୍ଯ୍ୟନ୍ତ ଯାହା ସବୁ କିଛି ହୋଇଥିଲା ସବୁ ଭୌତିକ କାଣ୍ଡ ବୋଲି ଆମକୁହିଁ ବିଶ୍ୱାସ କରିବାକୁ ପଡ଼ିଲା। ସାହେବ ବି ଆମ ସଙ୍ଗେ ଏକମତ ହୋଇ ବିଲାତର ଅନେକ ଗପ କହି ବସିଲା।

ଶବକୁ ଡରୁଥିଲୁ; ବର୍ତ୍ତମାନ ଭୂତକୁ ଡରି ଆଉ କେହି ସେ କୁଡ଼ିଆ ଭିତରକୁ ଗଲୁନାହିଁ। ସମସ୍ତେ ସେ ନିଆଁକୁ ଘେରି ବସିଲୁ ଏବଂ ଫିଲ୍ଡର ନିୟମକୁ ଭାଙ୍ଗି ନିଆଁ ଜଳେଇ ବସିଲୁ। ଚା' ପିଆ ଚାଲିଲା। ଟିକିଏ କ'ଣ ଖସ୍ ଖସ୍ ହେଲେ ଦେହ ଶୀତେଇ ଉଠୁଥାଏ। ସାହେବ 'ରମ୍' ଆହୁରି ଜୋରରେ ପିଇ ଚାଲିଲା। ଆମ ଭିତରୁ ବି କିଏ କେମିତି ପଳେଇଲେ। କ୍ରମେ ସକାଳ ହେଲା। ଉପରୁ ତଳକୁ ଓହ୍ଲାଇ ସେ ଜମାଦାରକୁ ଆମ କ୍ୟାପ୍ଟେନ୍ ଡାକିଲା ଏବଂ କହିଲା—

"ଗଢରେ ଗୋଟିଏ ଭୂତ ଘରେ (Haunted house) ଆମକୁ ରଖାଇ ବଡ଼ ହଇରାଣ କଲେ। କିଏ ଯଦି ମରି ଯାଇଥାନ୍ତା କଣ ହୋଇଥାନ୍ତା ?"

ଜମାଦାର କହିଲା—"ବର୍ମାରେ ଯେତେବେଳେ ପ୍ରଥମେ ବୋମା ମାଡ଼ ହେଲା ସେତେବେଳେ ସବୁ ଭାରତୀୟ ଏବଂ ଅନ୍ୟାନ୍ୟ ସବୁ ଦେଶର ଲୋକ କୌଣସି ଉପାୟ ନ ପାଇ ଚାଲି ଚାଲି ଭାରତକୁ ପଳାଇ ଆସୁଥାନ୍ତି। ତାଙ୍କ ପାଇଁ ବିଶ୍ରାମ ଦେବା ଲାଗି ସରକାର ପ୍ରତି ୨୦।୩୦ ମାଇଲ ଅନ୍ତରରେ ଜଙ୍ଗଲ ଓ ପାହାଡ଼ରେ ଏପରି ଖଣ୍ଡେ ଖଣ୍ଡେ କ୍ୟାମ୍ପ

କରିଥିଲେ । ସନ୍ଧ୍ୟା ହେଲେ ଲୋକ କମା ହୁଅନ୍ତି ଏବଂ ସକାଳୁ ପୁଣି ଉଠି ଆଗକୁ ଚାଲନ୍ତି । କିନ୍ତୁ ସକାଳ ହେଲାବେଳକୁ ପ୍ରାୟ ଅଧା ମରି ଯାଇଥାନ୍ତି । ବାଟରେ ଖାଇବାର କିଛି ନଥାଏ । କେବଳ ଗଛର ପତ୍ର ଓ ଫଳ ଖାଇ ଯା'ର ଭାଗ୍ୟ ଜୋର ସେ ବଞ୍ଚିପାରେ । ବୋଧହୁଏ କେହି ମରିଥିବ ଏବଂ ସେହି ମୃତ ଆତ୍ମା ଘୂରି ବୁଲୁଥିବ । ତୁମ୍ଭେମାନେ ଯେତେବେଳେ ସେ କୁଡ଼ିଆ ଭିତରେ ରହିଲ ତାଙ୍କ ଜାଗାରେ ଶୋଇ ଥିବାରୁ ତୁମ ସିପାହୀଙ୍କ ପ୍ରତି ସେ ଆତ୍ମା ସେପରି ବ୍ୟବହାର କଲା ଏବଂ ତୁମକୁ ଦେଖି ସେ ସବୁ କହିଲା ।"

ଏସବୁ ମୁଁ ଶୁଣିଲି । ଭୂତ, ପ୍ରେତରେ ମୋର ନିଜର ବିଶ୍ୱାସ ନାହିଁ । ଭୂତ ଅଛି କି ନାହିଁ ମୁଁ ନିଜେ ଜାଣେନା । କିନ୍ତୁ ସେ ଦିନର ଗୋଟିଏ ଘଟଣା ଏବଂ ବର୍ମାର "ମିଂଜିୟାନ" ଜେଲ ଭିତରର ଆଉ ଗୋଟିଏ ଘଟଣା ମୋ ମନରୁ ପାଶୋରି ଯିବ ନାହିଁ । କେବଳ ମୋର ଅନୁଭୂତି ସବୁ ପାଠକ ମାନଙ୍କ ଆଗରେ କହିବାର କଥା, ଯାହାକି ନିର୍ଘଟ ସତ । ସିଦ୍ଧାନ୍ତ ପାଠକମାନେ ନିଜେ କରନ୍ତୁ ।

ତିନି ଆଉଦିନ ସକାଳୁ ଏ ଭୂତ ଦେଖା ପଡ଼ା ଉପରେ ଚର୍ଚ୍ଚା କରୁ କରୁ ପାଲେଲ ଅଭିମୁଖେ ଚାଲିଲୁ । ସେଠାରେ ପହଞ୍ଚି କିଛି ଦିନ ଭାବ ପତ୍ର ଦେଖି ମୋତେ ପୁଣି ଇଂଫାଲ ଫେରି ଆସିବାକୁ ପଡ଼ିଲା । ପ୍ରାୟ ପ୍ରତିଦିନ ଖାଲି ଖବର "ଅମୁକଠି ଏତେ ମଲେ—ଅମୁକଠି ଅମୁକଠି ଆମ ଫୌଜ ଆଗକୁ ଚାଲିଲେ । I.N.A. ସୈନ୍ୟ ବହୁତ ବନ୍ଦୀ ହେଲେ, ଜାପାନୀମାନେ ହାରୁଛନ୍ତି·····" ଏ ଖବର ଶୁଣିବା ଛଡ଼ା ଆଉ ବିଶେଷ କିଛି ନଥାଏ ।

ହଠାତ୍ ଦିନେ ଶୁଣିଲୁ ଆମ୍ଭେମାନେ ବନ୍ଦୀ । କିପରି ବନ୍ଦୀହେଲୁ ଏହାର ଅର୍ଥ ମୁଁ ବୁଝି ପାରିଲି ନାହିଁ । ସକାଳ ୬ଟାରେ ସ୍ପେସିଆଲ ପରେଡ଼ ଡକାହେଲା—ନିଜେ କର୍ଣ୍ଣେଲ ଆସି ବୁଝେଇଲେ—

"ଆମର ଜୀବନ ବର୍ତ୍ତମାନ ସଙ୍କଟାପନ୍ନ । ଖାଲି ଆମେ ନୋହୁ ଏଠାରେ ଥିବା ସମସ୍ତ ୪ର୍ଥ କୋର (4rth Crops)ର ଲୋକ ବର୍ତ୍ତମାନ ବନ୍ଦୀ ଅବସ୍ଥାରେ ପଡ଼ିଲେ । ଗତକାଲି ଜାପାନୀମାନେ ଆମର ଯୋଗା ଯୋଗ ବ୍ୟବସ୍ଥାକୁ ଅକାମୀ କରି ଦେଇଛନ୍ତି । ଶତ୍ରୁପଟ୍ଟ ଆମେ ଘେରରେ ପଡ଼ି ଯାଇଛେ—ଜଣେ ଦୁଇଜଣ ନୁହେଁ ୫୦ ହଜାର ମିତ୍ରପକ୍ଷ ସୈନ୍ୟ । ତା ଭିତରେ ଲଢୁଆ ବାହିନୀ (Fighting Force) ଠାରୁ ଆରମ୍ଭ କରି ପାଇଓନିୟର ସୈନ୍ୟ (କୁଲିକାମ, ରାସ୍ତାକାମ କରିବା ଲୋକ) ପର୍ଯ୍ୟନ୍ତ । ଆମର L. of C (Line of Communication) ବାହ୍ୟଜଗତରୁ ବିଚ୍ଛିନ୍ନ କରି ଦିଆ ହୋଇ ଜାପାନୀମାନେ ଆଗକୁ ବଢ଼ିବାରେ ଲାଗିଛନ୍ତି । ସେମାନେ ଅଳ୍ପଦିନ ଭିତରେ ସିଲଚର ଭିତରକୁ ପଶିଯାଇ ପାରନ୍ତି । ସେଥିପାଇଁ ଆପଣମାନଙ୍କୁ ବିଶେଷ ସତର୍କ ରହିବାକୁ ହେବ । ଆପଣମାନେ ସମସ୍ତେ ସଦା ସର୍ବଦା ନିଜ ନିଜର ପୋଷାକ ପିନ୍ଧି ରହିବେ । ଲୁହାର ଶିରସ୍ତ୍ରାଣ (ଟୋପି Helmet) ସବୁବେଳେ ପାଖରେ ଥିବ । ନିଜ ନିଜର ଆଗ୍ନେୟାସ୍ତ୍ର ପାଖେ ପାଖେ ରଖିବେ ।

"ବିଶେଷ ଭାବେ ସିଭିଲିଆନ ପୋଷାକ କିମ୍ବା ନିଜର ସଉଖୀନ ଜିନିଷ କମ କରି ଦିଅନ୍ତୁ ; ଦରକାର ପଡ଼ିଲେ ସେ ଗୁଡ଼ିକ ପୋଡ଼ି ଦିଆଯିବ । ଯେ କୌଣସି ସମୟରେ ଓ ଯେ କୌଣସି ଅବସ୍ଥାରେ ଆପଣମାନେ ଥାଆନ୍ତୁ ନା କାହିଁକି ହୁକୁମ ମାତ୍ରେ ଅନ୍ୟଠାକୁ ଯିବାକୁ ପଡ଼ିବ କିମ୍ବା ଯେ କୌଣସି କାମ କରିବାକୁ ପଡ଼ିବ । ବର୍ତ୍ତମାନ ଆମ ପାଖରେ ଖୁବ୍ କମ୍ ଖାଇବା ଜିନିଷ ଅଛି । ତାକୁ ଜଗିରଖି ସମସ୍ତଙ୍କୁ ଯୋଗାଇବାକୁ ପଡ଼ିବ । ନଷ୍ଟ ଯେପରି ମୋଟେ ନ ହୁଏ ସେଥିପ୍ରତି ସମସ୍ତଙ୍କୁ ଧ୍ୟାନଦେବାକୁ ପଡ଼ିବ । ଦରକାର ପଡ଼ିଲେ ଖାଦ୍ୟ କମକରି ଦେବାକୁ ହେବ । ଆପଣମାନଙ୍କୁ ଓଳିଏ ଖାଇ ବି ଓଳିଏ ଉପବାସ ରହିବାକୁ ପଡ଼ିପାରେ । ଉଡ଼ାଜାହାଜରୁ ଆକାଶ ଛତା ସାହଯ୍ୟରେ କିଛି ଖାଦ୍ୟ ଆମେ ପାଇପାରୁ କିନ୍ତୁ ତାହା କିଛି ନୁହେଁ, ସେ ଖାଦ୍ୟ ଯେ ଆମ ମିତ୍ରପକ୍ଷ ସୈନ୍ୟଙ୍କ ପାଖରେ ପହଞ୍ଚିବ ତାର କିଛି ନିର୍ଦ୍ଦିଷ୍ଟ ହିସାବ ନାହିଁ । ଶତ୍ରୁପକ୍ଷ ସୈନ୍ୟଙ୍କର ଏହି ସମ୍ମୁଖ (front)ରେ ଖାଦ୍ୟପଦାର୍ଥର ବିଶେଷ

ଅଭାବ । ସେମାନେ ସବୁବେଳେ ଆମର ଖାଦ୍ୟ ଯୋଗାଣ ବ୍ୟବସ୍ଥାକୁ ଅକାମୀ କରି ଖାଦ୍ୟ ନେଇ ଯିବାକୁ ଚେଷ୍ଟିତ ଅଛନ୍ତି । ଆମର ବିଭାଗ ଯୋଗାଣ କରିବା ସୁତରାଂ ଆମକୁ ସମସ୍ତଙ୍କ ଅପେକ୍ଷା ଅଧିକ ଦୃଷ୍ଟି ଦେବାକୁ ପଡ଼ିବ । କୌଣସି ପ୍ରକାର ଅସାଧୁତା କିମ୍ବା ବିଶୃଙ୍ଖଳା ଦେଖା ଦେଲେ ସେ ଯେ କୌଣସି ଜାତି (Nationality)ର ହେଉନା କାହିଁକି ତାଙ୍କୁ ସଙ୍ଗେ ସଙ୍ଗେ ଗୁଳିକରି ମାରିଦିଆ ଯିବ । ବିନା ଅନୁମତିରେ କେହି କୌଣସି ସମୟରେ ବାହାରକୁ ଯାଇପାରିବେ ନାହିଁ । ଅନୁମତି ନେଇଗଲେ ସୁଦ୍ଧା ସନ୍ଧ୍ୟା ୫ଟା ପୂର୍ବରୁ ସମସ୍ତେ ନିଜ ନିଜର ଇଉନିଟ ଭିତରକୁ ଆସିବାକୁ ବାଧ୍ୟ । ଇଉନିଟ ବାହାରେ କୌଣସି ଲୋକର କୌଣସି ହାନିଲାଭ ପାଇଁ ସୈନ୍ୟବିଭାଗ ଦାୟୀ ରହିବେ ନାହିଁ । ପ୍ରତ୍ୟେକ ଦିନ ପାଇଁ "ପାସ୍" ଶବ୍ଦ ମନେରଖିବାକୁ ହେବ । ସେହି ପାସ୍ (Pass) ଶବ୍ଦ ମନେ ରଖି ନ ପାରିଲେ କୌଣସି ସୈନ୍ୟ ବାହିନୀର ଗାର୍ଡଦ୍ୱାରା ପ୍ରାଣ ଚାଲିଗଲେ କେହି ଦାୟୀ ହେବେନାହିଁ । ବାହ୍ୟ ଜଗତକୁ କେହି ଚିଠିପତ୍ର ଦେଇ ପାରିବେ ନାହିଁ । କେବେ ପୁଣି ତା'ର ଚାଲୁହେବ ତା କହିହେବ ନାହିଁ । ଆମକୁ ସଙ୍ଗଠିତ ଭାବରେ ଭିତରେ ରହି ଲଢ଼ିବାକୁ ହେବ । 11th Armyର କମାଣ୍ଡର ଜେନେରାଲ ସ୍ଲିମ୍ ଖୁବ୍ ସାହସ ଏବଂ ଦମ୍ଭର ସହିତ ଲଢ଼ାଇ ଚଲାଇଛନ୍ତି । ଆମର ଆଶା ଓ ବିଶ୍ୱାସ ଖୁବ୍ ଶୀଘ୍ର ଆମେ ଏ ବନ୍ଦୀ ଜୀବନରୁ ମୁକ୍ତ ପାଇବା । ଆପଣମାନେ ଧୈର୍ଯ୍ୟର ସହିତ ଶୃଙ୍ଖଳାକୁ ମାନି ଚଳିବେ ବୋଲି ମୋର ଆଶା । ପ୍ରତ୍ୟେକ ଦିନର ଡେଲିଅର୍ଡ଼ରରେ ଦୈନିକ ହିସାବ ନିକାଶ ଆପଣମାନଙ୍କୁ ବତାଇ ଦିଆଯିବ ।"

ଏ ସବୁ ଶୁଣି ଦେହରୁ ଝାଳ ବୋହିଗଲା, ତେବେ ଉପାୟନ୍ତ ନଥାଏ । ସାହସ ନ ହରାଇ ଦି'ଗୁଣ ଉତ୍ସାହରେ ଆମେ କ୍ୟାମ୍ପ ଭିତରକୁ ଚାଲିଲୁ । କି ଅନୁଭୂତି ହେବ ତାକୁ ଅପେକ୍ଷା କରି ରହିଲୁ । ସେଇଠୁ ପ୍ରତ୍ୟେକ ଇଉନିଟ୍‌କୁ ଗୋଟିଏ ଗୋଟିଏ ସିନ୍ଦୁକ ଆକାରରେ ରଖା ଗଲା । ତାକୁ Box system କୁହାଯାଏ । ଅର୍ଥାତ୍ ଯେପରି ବାକ୍ସଟିଏ ଥାଏ ଏବଂ ତାର ତାଙ୍କୁଣୀ ରହିଥାଏ । ବାକ୍ସ ଭିତରେ କୌଣସି ଜିନିଷ ରହି ସାରିଲେ ତାଙ୍କୁଣୀ ବନ୍ଦକରି ଦେଲେ ବାକ୍ସଟିକୁ

ନିର୍ବିଘ୍ନରେ ଗୋଟିଏ ଯାଗାକୁ ନିଆଯାଇ ପାରେ, ଏବଂ ବାକ୍ସ ଭିତରେ ଥିବା ସମସ୍ତ ଜିନିଷ ନିଜର ଅକ୍ତିଆରରେ ରହିବ । ସେହିପରି ଯେତେ ଗୁଡ଼ିଏ ସୈନ୍ୟ ବାହିନୀ ବନ୍ଦୀହୋଇ ରହିଥିଲେ ତାଙ୍କୁ ଏପରି ଭାବରେ ସଜାଇ କ୍ୟାମ୍ପ ସବୁ କରାହୋଇ ଯେ ଯଦି ଶତ୍ରୁ ପକ୍ଷର କୌଣସି ଲୋକ ଆମର ସରହଦ ଭିତରେ ଢୁକି ଯାଏ ତାକୁ ବାକ୍ସଟିର ଡାକୁଣୀ ଦେଲା ଭଳି ସଙ୍ଗେ ସଙ୍ଗେ ଧରା ଯାଇପାରିବ, ଏବଂ ବାକ୍ସ ଭିତରେ ଭର୍ତ୍ତିକଲା ପରି ତାକୁ ରଖାଯାଇ ପାରିବ । ୫୦,୦୦୦ ଲୋକ ସଂଖ୍ୟା କିଛି କମ ନୁହେଁ ଏବଂ ଏମାନେ ପ୍ରାୟ ୪୦।୫୦ ମାଇଲ ଏରିଆ ଭିତରେ ରହୁଚନ୍ତି । ସେଥିପାଇଁ ଗୋଟିଏ ଗୋଟିଏ ଇଉନିଟ୍‌କୁ ଗୋଟିଏ ଗୋଟିଏ ବାକ୍ସ (Box) ବୋଲି କୁହାହେଲା ଏବଂ ସବୁ ବାକ୍ସ ଗୁଡ଼ିକ ଭିନ୍ନ ଭିନ୍ନ ନାମକରଣ କରାହେଲା । ଯଥା—ପକ୍ଷୀ, ପଶୁ, ପିମ୍ପୁଡ଼ି, ମାଛ, ମାଛି ଇତ୍ୟାଦି (Birds Box, Beasts Boxes)। ପକ୍ଷୀ ବାକ୍ସକୁ ପୁଣି ବିଭକ୍ତ କରାହୋଇ ଭିନ୍ନ ପକ୍ଷୀର ନାମକରଣ ଅନୁସାରେ ଇଉନିଟ୍‌କୁ ନାମକରଣ କରାହେଲା । ଉଦାହରଣ ସ୍ୱରୂପ ସପ୍ଲାଇ କମ୍ପାନୀକୁ ପକ୍ଷୀ ନାମ କରଣ କରାହେଲା । ଏବଂ ସପ୍ଲାଇ କମ୍ପାନୀର ବିଭିନ୍ନ ଇଉନିଟ୍‌ର ନାମ ବିଭିନ୍ନ ପକ୍ଷୀ ବିଶେଷର ନାମ ଅନୁସାରେ ନାମିତ ହେଲା । ସେହିପରି ପଶୁ, ମାଛି, ମାଛ ଇତ୍ୟାଦି । ଆମକୁ ଗୋଟିଏ ପକ୍ଷୀର ନାମ ଦିଆ ହୋଇଥିଲା ।

ଆମ ଇଉନିଟର ନାମ ହେଲା "କାନାରୀ" (Canary)କାହାର ହେଲା କୋଇଲି (Cuckoo)କାହାର କୁଆ (Crow) ଇତ୍ୟାଦି ।

ପ୍ରତିଦିନ ସକାଳ ୭ଟା ସୁଦ୍ଧା ବେତାର (Wireles) ସାହାଯ୍ୟରେ ସବୁ ହେଡ଼ କ୍ୱାଟରକୁ ଖବର ଜଣାନ୍ତି ଗତ ୨୪ ଘଣ୍ଟାରେ ନିଜ ନିଜର ଅବସ୍ଥା, ମାନେ ଆମର ସବୁ ଭଲ କି କିଛି ବିପଦ ଆମ ଉପରେ ଆସିଛି । ତା ଛଡ଼ା ପ୍ରତ୍ୟେକ ଘଣ୍ଟାରେ ନିଜ ନିଜ ହେଡ୍ ଅଫିସକୁ ଅବସ୍ଥା ଜଣାଉ ଥାନ୍ତି । ଏ ସବୁ ଖୁବ୍ ଗୁପ୍ତରେ ରହେ । କେବଳ ଖବର ଦେବା ଏବଂ ଖବର ପାଇବା ବ୍ୟକ୍ତିଛଡ଼ା ଆଉ କେହି ଜାଣନ୍ତି ନାହିଁ ଏବଂ ଏହି ବେତାର ଯନ୍ତ୍ରର ରକ୍ଷଣା ବେକ୍ଷଣ ଭାର (Wireles incharge) ଜଣେ ଜଣେ ଗୋରାଙ୍କୁ ଦିଆହେଲା । ଖବର ବି ଜଣାଇ-

ବାର ଏକ ଅଭିନବ ଉପାୟ ଥାଏ । ମାନେ ଖବର ଜଣାଇବା ଲୋକ ଯାହା କହୁଥାଏ ଅନ୍ୟପଟରୁ ଖବର ପାଇବା ଲୋକ ବି ସେଇଆ କହୁଥାଏ । ଧରନ୍ତୁ (Canary) ବକ୍ସ ସକାଳୁ ଖବର ଦେଲା—

"Hallow canary Hallow canary—canary OK"

ସେ ପଟରୁ ଜବାବ ଆସିଲା—Hallow canary, Hallow canary, canary O.K."

ଏହି ରକମ ଯଦି କୌଣସି ପଟ କେହି କିଛି ବୁଝି ପାରିଲେ ନାହିଁ, କୁହାଯିବ—

Hallow canary, Hallow canary I say again, Canary I say again."

ଏ ସବୁ ଗୁପ୍ତରେ ଥାଏ ଏବଂ ଏପରି କଥା ଶତ୍ରୁ ପକ୍ଷ ବି ତାଙ୍କ ବେତାରରୁ ସବୁ ଶୁଣୁ ଥାନ୍ତି, ଶୁଣିଲେ ବି କିଛି ବୁଝିବା ବଡ଼ ମୁସ୍କିଲ । ତାଛଡ଼ା ପ୍ରତ୍ୟେକ ଅକ୍ଷରକୁ ନେଇ ଶବ୍ଦ ଗଠିତ ହୋଇ ଥାଏ ଏବଂ ସେହି ଶବ୍ଦରୁ ସବୁ ଅର୍ଥ ବାହାରେ । ତାକୁ ଅନ୍ୟମାନେ ଜାଣି ନଥାନ୍ତି ସୁତରାଂ ବୁଝି ପାରନ୍ତି ନାହିଁ । ସେତେବେଳେ ଏହି ପ୍ରକାର ଶାସନରେ ଆମର ଅବରୋଧ ଜୀବନ ଚୃଲିଲା । ଏଠାରେ ଆମେ ସବୁ ଧରା ହୋଇ (Captured) ବନ୍ଦୀ ହୋଇ ଥିଲୁଁ ସୁତରାଂ Concentrated କ୍ୟାମ୍ପକୁ ଯାଇନୁ । ଆମେ କେବଳ ଡାଙ୍ଗା ଘେରାରେ ପଡ଼ିଲା ପରି Cordoned ହୋଇ ରହି ଥିଲୁ । ଏ ଜୀବନରେ କଷ୍ଟ କମ୍ ନାହିଁ ।

ପୂର୍ବରୁ Pass word କଥା କହୁଛି । ସାଧାରଣତଃ କ୍ୟାମ୍ପର ଗେଟ୍ ଜଗୁଆଳୀମାନେ ବନ୍ଧୁକ ଧରି ପହରା ଦିଅନ୍ତି ଏବଂ ରାତିରେ କୌଣସି ଲୋକ ଆସିଲେ କହନ୍ତି—

Halt who comes there ? ଏବଂ ଆଗନ୍ତୁକ "Friend" କହିଲେ ଜଗୁଆଳି କୁହେ—

"Pass friend" ରାସ୍ତାରେ ଚୃଲିଯିବାର ଥିଲେ ସେ ଲୋକ ଚୃଲିଯାଏ କିନ୍ତୁ କ୍ୟାମ୍ପ ଭିତରକୁ ଆସିବାକୁ ହେଲେ ତାର Pay Book କିମ୍ବା Identity Card ପରୀକ୍ଷା କରା ହୋଇ ଛଡ଼ାଯାଏ । କିନ୍ତୁ ଏଠାରେ ତାହା ନୁହଁ ପ୍ରତ୍ୟେକ ଇଉନିଟକୁ ଗୋଟିଏ

ଶତ୍ରୁ କୁହା ଯାଇଥାଏ ଯେଉଁଥିରେ କି ପହରାବାଲା କି ଦିନ କି ରାତି ସବୁବେଳେ ସେହି ଦିନକ ପାଇଁ ସେ ଶବ୍ଦ ପଚାରିବ ଏବଂ ତାର ଉତ୍ତରଟି ସେ ପାଇଲେ ଛାଡ଼ିବ ନୋହିଲେ ନାହିଁ । ଏହା କେବଳ ମିଲଟାରି ପାଇଁ । ସିଭିଲିଆନଙ୍କ ପ୍ରଶ୍ନ ଉଠୁନି ଏଠାରେ, ସେମାନେ କୌଣସି ମିଲଟାରି ଗ୍ରାଉଣ୍ଡ ପାଖକୁ ଯିବାକୁ ବି ମନା । ଧର ଅନ୍ୟ କୌଣସି ୟୁନିଟର ଲୋକ ଆମ ୟୁନିଟକୁ ଆସିଚନ୍ତି ରାତିରେ ତେବେ ସେମାନେ ନିଜ ୟୁନିଟରୁ ଆମର ପାସ୍ (Pass word) ଜାଣି ଆସିଥିବେ ସେହି ଅଞ୍ଚଳର ସବୁ ଇଉନିଟର Pass word ସବୁ ଇଉନିଟ କମାଣ୍ଡରମାନେ ଜାଣିଥାନ୍ତି ଏବଂ ତାହା ତାଙ୍କ ପାଖରେ ଗୁପ୍ତ ଭାବରେ ରଖା ହୋଇଥାଏ । ଉଦାହରଣ ସ୍ୱରୂପ ଆମର ଜଗୁଆଳୀ ପଚାରିଲା "Halt" ଲୋଟା (Lota) ଉତ୍ତର ଦିଆ ହେବ "Rose" (ଗୋଲାପ) ଅର୍ଥାତ୍ ସେ ଦିନର ପାସ୍ ଓ୍ୟାର୍ଡ ହେଲା Rose ଏବଂ Challange word ହେଲା "Lota" । ଏହିସବୁ Security ଭିତର ଦେଇ ଜୀବନର ଗତି ଚାଲିଥାଏ ।

ବାହାର ଜଗତରୁ କିଛି ଖବର ନାହିଁ ସୁତରାଂ ଭାରି ଖରାପ ଲାଗୁଥାଏ—ଦେଖୁ ଦେଖୁ ମାସେ କଟିଗଲା କିନ୍ତୁ ଆମର ଅବସ୍ଥା ଖରାପ ଆଡ଼କୁ ଗତି କରୁଥାଏ, ଭଲ ଆଡ଼କୁ ନୁହେଁ । କ୍ରମେ ଆମର ଖାଇବା କୋଟା କମାଇ ଦିଆ ହେଉଥାଏ । ଚାଉଳ ଦୈନିକ ୨୪ ଆଉନ୍ସରୁ ଜଣକୁ ୧୩ ଆଉନ୍ସ କରି ଦିଆ ହେଲା । ସେହି ଅନୁପାତରେ ମଧ୍ୟ କ୍ରମେ କ୍ରମେ ଆମର ସପ୍ଲାଇ ଡିପୋରୁ ସବୁ ଜିନିଷ ଆସ୍ତେ ଆସ୍ତେ ସରିବାକୁ ବସିଲା ଏବଂ ବାହାରୁ ଖାଇବା ଜିନିଷ ଯୋଗାଣ ବନ୍ଦ ହୋଇଗଲା । ଏଣେ ଜଙ୍ଗଲ ଯୁଦ୍ଧ ଏବଂ ଗରିଲା ଯୁଦ୍ଧ ଖୁବ୍ ଜୋର୍‌ରେ ଚାଲିଥାଏ । ଦେଖୁ ଦେଖୁ ଦୁଇ ମାସ ଗଲା । ଖାଦ୍ୟ ପଦାର୍ଥ ଆହୁରି କମ୍ କରି ଦିଆ ହେଲା ଏବଂ ଖାଇବା ଜିନିଷ ସଙ୍ଗରେ ୨ ଗୋଟି କରି ବଟିକା ବି ଖାଇବାକୁ ଦିଆ ହେଲା । ବଟିକା ଗୁଡ଼ିକର ଗୁଣ ଉପଯୁକ୍ତ ପରିମାଣରେ ଖାଦ୍ୟ ନ ଖାଇଲେ ସୁଦ୍ଧା ଦେହର ଶକ୍ତି କମିବ ନାହିଁ । ଜଣା ପଡୁଥାଏ ଯେପରି ଶତ୍ରୁପକ୍ଷର ଆକ୍ରମଣ ପ୍ରଚଣ୍ଡ ହୋଇ ଉଠୁଚି ।

ଏହି ସମୟରେହିଁ I. N. A. ମାନଙ୍କର ଉତ୍ସାହ ଶତଗୁଣ ବଢ଼ିଲ ଓ ସେମାନେ ଖୋଲଖୋଲା ଭାବରେ ଆକ୍ରମଣ କଲେ । Blod is thicker than water ରୀତିର ଭାରତୀୟ ସୈନ୍ୟବାହିନୀ ତାଙ୍କୁ ସାହାଯ୍ୟ କରିବାରେ ଲଗିଲେ । କିଏ ଭାରତୀୟ ସୈନ୍ୟ ଓ କିଏ ନେତାଜୀଙ୍କର ସୈନ୍ୟ ଚିହ୍ନିବା ମୁସ୍କିଲ ହେଲ । ନେତାଜୀଙ୍କର ସୈନ୍ୟମାନେ ବି ଆମର ଖାଦ୍ୟ ଗୋଦାମରୁ ଖାଦ୍ୟ ଜିନିଷ ନେଇ ଚାଲିଗଲେ । ବ୍ରିଟିଶ ତରଫରୁ ଭାରତୀୟ ସୈନ୍ୟମାନେ ଯାଇ ନେତାଜୀଙ୍କ ବାହିନୀରେ ମିଶୁଥାନ୍ତି ସୁତରାଂ ତାଙ୍କ ସବୁ କାଇଦା କାନୁନ ଜଣାଥାଏ ।

ମୋର ମନେ ଅଛି ଦିନେ ଆମର ଡିପୋରୁ ପ୍ରାୟ ୫୦୦୦ ସୈନ୍ୟଙ୍କର ଦୁଇ ସପ୍ତାହର ଖାଇବା ଜିନିଷ ସେମାନେ ଧରି ଚାଲିଗଲେ । ଜିନିଷ ନେବାର ଦିନକ ପରେ ହିସାବ ସମୟରେ ସବୁ ଧରା ପଡ଼ିଲ । ଏହିପରି ସବୁ କାମରେ ଭାରତୀୟ ବାହିନୀଙ୍କ ଉପରେ ବ୍ରିଟିଶ ସରକାରଙ୍କର ପୁରା ଆସ୍ଥା ତୁଟିଗଲ ।

ଏପରି ସମୟରେ ଶୁଣାଗଲ ଯେ I. N. A. ବାହିନୀ ଭାରତର ଦୁଇଟି ଗାଁରେ ପ୍ରବେଶ କଲେଣି ଏବଂ ସେମାନେ କ୍ରମଶଃ ଅଗ୍ରଗତି କରୁଛନ୍ତି । ପ୍ରକୃତରେ ଇଂଫାଲ ଓ ଦିମାପୁର ବେସ୍ଡ଼ ଜାପାନୀମାନଙ୍କ ହାତରେ ପଡ଼ିଲ ଏବଂ ସେମାନେ ଘାଟି ଯାଗା ସବୁକୁ ଜଗି ରହିଲେ । ଆସାମଠାରୁ ଏବଂ ଚଟ୍ଟଗ୍ରାମ ଠାରୁ ବ୍ରିଟିଶମାନେ ରାତିମଧ୍ୟ ଲଢ଼େଇ କଲେ । ଏହି ସମୟରେ ଜାପାନୀମାନେ ନେତାଜୀଙ୍କ ସଙ୍ଗେ ବିଶ୍ୱାସ ଘାତକତା କଲେ ! ଯଦି ସେତିକି ହୋଇ ନଥାନ୍ତା ତେବେ ଇତିହାସର ରୂପ ଭିନ୍ନ ଧରଣର ହୋଇଥାନ୍ତା ।

ଜାପାନୀମାନେ ଆଗରୁ ଫମ୍ପା ଆବାଜ ଦେଇ ଭାରତର ସୀମାକୁ ଚଳିଲେ । ଆଣ୍ଡାମାନ ଦ୍ୱୀପକୁ ଦଖଲ କରି ନେତାଜୀଙ୍କ ହାତରେ ଦେବାରୁ ନେତାଜୀଙ୍କର ଏବଂ ତାଙ୍କ ଆଜାଦ ସରକାରର ବିଶ୍ୱାସ ହୋଇଗଲ ଯେ ଜାପାନୀମାନେ ଆମର ପୃଷ୍ଠ ପୋଷକତା କରୁଛନ୍ତି । ଜାପାନୀମାନଙ୍କର ଖାଦ୍ୟ ପଦାର୍ଥ ଖୁବ୍ ଅଭାବ ହେଲା । ଦକ୍ଷିଣ ପୂର୍ବ ଏସିଆର ସବୁ ଦ୍ୱୀପପୁଞ୍ଜ ଧ୍ୱସ୍ତ ବିଧ୍ୱସ୍ତ ହୋଇ ପଡ଼ିଥାଏ । ସୁତରାଂ ଖାଦ୍ୟ

ଉପୃନ୍ତ ବା ଖାଦ୍ୟ ଯୋଗାଣ ଅସମ୍ଭବ ହୋଇ ପଡ଼ିଲା । ଜର୍ମାନୀମାନେ ହାରୁଥାନ୍ତି । ଅକ୍ଷ ଶକ୍ତିର ବଳ ଶେଷ । ଆକାଶ ପଥରେ ବା ଜଳ ପଥରେ ଖାଦ୍ୟ ଜାପାନୀମାନଙ୍କ ହସ୍ତରେ ପହଞ୍ଚିବା ଆଶା କମ୍ । ସ୍ଥଳ ପଥର ଯୋଗାଯୋଗ ବ୍ୟବସ୍ଥା ନାହିଁ କହିଲେ ଚଳେ । ଖାଦ୍ୟ ଖାଇଲେ ତ ପୁଣି କାମ ହେବ । ଜାପାନୀମାନେ ନିଜେ ଖାଇବାକୁ ପାଇଲେ ନାହିଁ । ସିଙ୍ଗାପୁର ବନ୍ଦର ବନ୍ଦ, ମାଳୟ ଦ୍ୱୀପପୁଞ୍ଜରେ ଖାଦ୍ୟର ଅଭାବ । ଆରାକାନ ଅଞ୍ଚଳରେ ଖାଦ୍ୟ ନାହିଁ । ମାଳୟର ଅବସ୍ଥାରୁ ବର୍ମାର ଅବସ୍ଥା ଆହୁରି ଖରାପ । ଖାଦ୍ୟ ଆସିବ କୁଆଡ଼ୁ ? ଜାପାନୀମାନେ ଶ୍ୟାମ ଓ ଜାଭା ଦ୍ୱୀପରୁ ଖାଦ୍ୟ ପାଉ ନଥାନ୍ତି । ସେଠାରେ ବି ସେହି ଅବସ୍ଥା ।

ଜାପାନୀମାନେ ସ୍ଥଳ ପଥର ସଂଯୋଗ ପାଇଁ ଚେଷ୍ଟିତ ଥାଆନ୍ତି "ବ୍ରିଜ ସିବା ଲେକର କୁଆଇ"କୁ ଆଶ୍ରା ପରି ଜାପାନୀମାନେ କୌଣସି ପ୍ରକାର ଜଘନ୍ୟ କାମ କରିବାକୁ ପଛେଇଲେ ନାହିଁ । ବିଶେଷରେ ସେମାନେ ଶ୍ୟାମ, ବର୍ମା ରେଲ ଲାଇନ ଉପରେ ବିଶେଷ ଜୋର ଦେଇ ସବୁ ଶକ୍ତି ସେଆଡ଼େ ଖଟାଇଲେ । ବ୍ରିଟିଶ ଯୁଦ୍ଧ ବନ୍ଦୀମାନଙ୍କୁ ନେଇ ସେ କାମରେ ଲଗାଇଲେ । ଭାତ ଖାଲି ଖାଇ କେତେ ଦିନ ବା ଏମାନେ ଯୁଦ୍ଧ ଚଳେଇବେ । ସେତିକବେଳକୁ I. N. A ଭାଗ୍ୟରେ ସେ ଭାତ ଗଣ୍ଡାଏ ବି ମିଳିଲା ନାହିଁ । ଜାପାନୀମାନଙ୍କ ଦୟା ଉପରେ I. N.A. ବାଲଙ୍କ ଭାଗ୍ୟ ଡୋରି ରହିଲା । ନେତାଜୀ ଭାବିଥିଲେ ଭାରତରେ ପଶିବା ମାତେ ଖାଦ୍ୟ ପଦାର୍ଥର ଅଭାବ ରହିବ ନାହିଁ ଏବଂ ଭିତରେ ଥରେ ପଶିଲେ ଦେଶିକ ବ୍ରିଟିଶଙ୍କୁ ହଟାଇବା ଖୁବ୍ ସହଜ, କିନ୍ତୁ ସେ ଫଳ ହେଲା ଓଲଟା ।

ସିଲଚରପଟେ ଯେତେବେଳେ ଜାପାନୀମାନେ ୭ ଖଣ୍ଡ ଗାଁ ଦଖଲ କଲେ, ତା ଭିତରେ I. N. A. ର କୌଣସି ଲୋକଙ୍କୁ ଭର୍ତ୍ତି କରାଇ ଦେଲେ ନାହିଁ କିମ୍ବା I. N. A· ବାହିନୀକୁ କୌଣସି—ପ୍ରକାର ଖାଦ୍ୟ ପଦାର୍ଥ ଦେଲେ ନାହିଁ । ଏଣେ ଦକ୍ଷିଣ ପୂର୍ବ ଏସିଆର ଲୋକ ମାନଙ୍କର ନୈତିକ ବଳ ଭାଙ୍ଗିଗଲା ଏବଂ ଖାଦ୍ୟ ଅଭାବରୁ ଗାଁ ଗାଁ

ଭିତରେ ଗବାଙ୍କାଗୀ ସୃଷ୍ଟି ହେଲା । ^ହଠାରେ ଆରମ୍ଭ ହେଲ ନେତାଜୀଙ୍କର ପତନ ।

ସେତେବେଳେ ଏ ସବୁ ବିଷୟ ବିଶ୍ଳେଷଣ କରି ଭାରତୀୟ ସୈନ୍ୟମାନଙ୍କ ମନରେ ନୈରାଶ୍ୟର ଭାବ ଦେଖା ଦେଲା । ଦୁଇମାସ ଘୋର ଯୁଦ୍ଧ ପରେ ବ୍ରିଟିଶ ସୈନ୍ୟଙ୍କ ଅବସ୍ଥା ଉନ୍ନତ ଆଡ଼କୁ ଗଡ଼ିକଲା । ବୋମା ମାଡ଼ ଓ ଟ୍ୟାଙ୍କ ବାହିନୀ ଯୁଦ୍ଧ, ଆକାଶଛୁଆଁ ସୈନ୍ୟଙ୍କର ସମାବେଶ ଏକ ଦୈନନ୍ଦିନ ଘଟଣାରେ ପରିଣତ ହେଲା । ଆମେ ଇଂଫାଲରେ ଥାଉ ଏବଂ ଆମ କାନାଗୀ ବାକ୍‌ସର ଓ୍ୱାର ଲେସର ଇନଚାର୍ଜ ଥାନ୍ତି ଜଣେ ଅଷ୍ଟ୍ରେଲିଆନ ଲୋକ ।

ହଠାତ୍ ଦିନେ ବୋମା ମାଡ଼ରେ ସେ ମରିଗଲେ । ତହିଁ ଆରଦିନ ଓ୍ୱାରଲେସ ଚଳାଇବାକୁ ଲୋକ ଦରକାର ପଡ଼ିଲା । ଯୋଗ୍ୟ ଲୋକତ ନାହାନ୍ତି । ଭାରତୀୟ ବାଛିବାକୁ ପଡ଼ିବ । ଆମ କମ୍ପାନୀର ୬୦ ଜଣଙ୍କ ମଧ୍ୟରେ ଗୋଟିଏ ଇଂରାଜୀ ରଚନା ଏବଂ ୧୫ ମିନିଟ୍ ବାକ୍ୟାଳାପର ପରୀକ୍ଷା ହେଲା । ଭାଗ୍ୟବଶତଃ ହେଉ କିମ୍ବା ଦୁର୍ଭାଗ୍ୟ ବଶତଃ ହେଉ ମୁଁ ଏକାମ ପାଇଁ ବଛା ହେଲି । ତେବେ ମୋତେ ତ ଜଣା ନାହିଁ ଏ କାମ କିପରି ହେବ । ସଙ୍ଗେ ସଙ୍ଗେ ଜଣେ ଲେଫଟନାଣ୍ଟ ମୋତେ ଦୁଇଘଣ୍ଟା ପାଇଁ ଟ୍ରେନିଂ ଦେଲେ । ଓ୍ୱାରଲେସ୍ ରେ ଦୁଇ ପ୍ରକାରର କାମ ଚଳେ । ଟେଲିଫୋନ ଓ ଓ୍ୱାରଲେସ । ଦୁଇ ଘଣ୍ଟାରେ ଟେଲିଫୋନିକ ପ୍ରଣାଳୀରେ କିପରି କାମ କରିବାକୁ ପଡ଼ିବ ଶିକ୍ଷା ଦିଆଗଲା, ଓ୍ୱାରଲେସ ପ୍ରଣାଳୀର ଧାରଣା ନଥାଏ । ମୋତେ କୋଡ଼ ଶବ୍ଦଗୁଡ଼ିକ ଶିଖିବାକୁ ଆଉ ୪ ଘଣ୍ଟା ଲାଗିଲା । ୨୬ଟି ଇଂରେଜୀ ଅକ୍ଷରରୁ ୨୬ଟି ଶବ୍ଦ ଘୋଷିବାକୁ ପଡ଼ିଲା । ନେଗେଟିଭ୍ ଓ ପଜେଟିଭ ପ୍ଲଗ ପଏଣ୍ଟ କିପରି ଜାଣିବ, ବେଟାରୀରୁ ଓ୍ୱାରଲେସ ସେଟ୍‌କୁ କିପରି କନେକ୍‌ସନ ଆଣିବ, କିପରି ଟେଲିଫୋନିକ ମେସେଜ ଦେବ ଓ କିପରି ଲେଖିବ ଏବଂ ସୁଇଚଗୁଡ଼ିକ କେଉଁ ତରଫକୁ କିପରି ଚଳେଇବ । ପିଠିରେ ଏହି ସେଟ୍ଟି ଧରି କିପରି ଟ୍ରେଞ୍ଚ ଭିତରକୁ ପଶିବ ଏବଂ କିପରି ସମ୍ବାଦ ପ୍ରେରଣ କରିବ, ଏହି ହେଲା ମୋର ଟ୍ରେନିଂ ।

ଟ୍ରେନିଂ ଦେଇ ସାର୍ ଲେଫ୍‌ଟନାଣ୍ଟ ହେଡ୍ କ୍ୱାଟର ଯାଇ ମୋତେ ଡାକିଲେ ଏବଂ ସେ ଅଞ୍ଚଳର ଯେତେ 'ବକ୍‌ସ' କମାଣ୍ଡର ଥାନ୍ତି ତାଙ୍କୁ ଡକା ହେଲା ଏବଂ ମୁଁ ସେମାନଙ୍କ ସଙ୍ଗେ କଥାହେଲି । ସମସ୍ତେ ଯୋଗ ଖାଲି ଇଂରେଜୀ ଥିଲେ କଷ୍ଟ ନଥିଲା । କିଏ ଆମେରିକାନ, କିଏ ସ୍କଟିଶ୍, ଅଇରିଷ ସମସ୍ତଙ୍କ ଉଚ୍ଚାରଣ ସମାନ ନୁହେଁ ତେବେ ଅଧଘଣ୍ଟାଏ ପ୍ରାକ୍ଟିକାଲ ପରେ ସମସ୍ତେ ମୋ ଦ୍ୱାରା କାମ ଚଳିବ ବୋଲି ମତ ପ୍ରକାଶ କଲେ । ମୁଁ କିନ୍ତୁ ବଡ଼ ଅଡୁଆରେ ପଡ଼ିଲି । ମୋତେ ଏସବୁ ଭାରି ଅଡୁଆ ଲାଗିଲା । ମୁଁ ଖାଲି କୋଡ୍ ଓ୍ୱାର୍ଡ ଘୋଷି କ୍ୟାମ୍ପ ଭିତରେ ନାନା ପ୍ରକାର ଉଚ୍ଚାରଣ କରି ରିହାରସାଲ କରୁଥାଏ । ସକାଳୁ ଉଠି "ହ୍ୟାଲୋ କାନେସ୍ରୀ" ପ୍ରଭୃତି କରି କରି ଅଭ୍ୟାସ ହୋଇଗଲା ।

୧୪ ଦିନ ସୁରୁଖୁରୁରେ ଚାଲିଗଲା । ଯେଉଁଦିନ ୧୬ ପଶିଲା, ସେଦିନ ସକାଳ ୭ଟାରୁ ଜାପାନୀମାନଙ୍କ ବୋମା ମାଡ଼ ଆରମ୍ଭ । ମୁଁ ବଙ୍କଲରେ ଟ୍ରେଞ୍ଚ ଭିତରେ ଥାଏ । ଠିକ୍ ୭ଟାରେ ଓ୍ୱାରଲେସ୍ କରିବା ହେବ । ମୋର ଠିକ୍ ମନେଅଛି ୭।୪୫ ମିନିଟରେ ଦୁଇଟି ବୋମା ମୋ ଟ୍ରେଞ୍ଚ ପାଖରୁ ପ୍ରାୟ ୫୦ ଗଜ ଦୂରରେ ପଡ଼ିଲା । ଭୂଇଁ ଥରି ଉଠିଲା । ମୋର ମୂତ୍ରଥଳୀ ସହିତେ ମୁଁ ବି କଂପି ଉଠିଲି । ଭୟ ଖୁବ୍ ଲାଗିଲା । ମୁଁ ଲମ୍ବା ହୋଇ ଶୋଇ କାନରେ Ear phone ଲଗାଇ ମୁଣ୍ଡ ଟେକି ପ୍ଲଗ ଦେଲି । କିନ୍ତୁ ମେସିନ୍ ଚାଲିଲା ନାହିଁ । ମୋର ପାରୁ ପର୍ଯ୍ୟନ୍ତ ଚେଷ୍ଟାକରି ଥକିଗଲି । ପ୍ରାୟ ୮ଟା ବେଳକୁ "ଅଲ୍ କ୍ଲିଅର" ସାଇରେନ୍ ବାଜିଲା ଏବଂ ମୁଁ ଝାଡ଼ଝୁଡ଼ ହୋଇ ଉଠିଲି । ସଙ୍ଗେ ସଙ୍ଗେ ହେଡ୍ କ୍ୱାର୍ଟରରୁ ଫୋନ ଆସିଲା "କାନାସ୍ରୀ ବକ୍‌ସ ଉପରେ ବୋମା ମାଡ଼ ହୋଇଛି । ସମସ୍ତେ ବଞ୍ଚିଛନ୍ତି ତ ?" କର୍ଣ୍ଣେଲ ହିଁ କହିଲେ । କାନାସ୍ରୀ ବକ୍‌ସ କାହିଁକି ମେସେଜ ଦେଇନାହିଁ ବୋଲି ପଚରା ହେଲା । କର୍ଣ୍ଣେଲ ମୋତେ ଡାକି ପଚାରିଲେ । ମୁଁ କହିଲି ମେସିନ୍ ତ ଚାଲୁନି । ସେ ସେଇଆ କହିଲେ ଉପରକୁ । ସଙ୍ଗେ ସଙ୍ଗେ ସେ ଓ ଲେଫଟନାଣ୍ଟ ପୁଣି ଆସିଲେ । ସେ ପ୍ରାୟ ଅଧଘଣ୍ଟାଏ ଖଣ୍ଡେ ମେସିନ୍‌କୁ ଘୂରାଇ କିଛି ବୁଝି ପାରିଲେ ନାହିଁ । ହଠାତ୍ ପ୍ଲଗ ଚେକ୍ କରି ମୋ ଉପରକୁ ତେଇଁ ପଡ଼ି କହିଲେ ।

"Bloody fool, you have spoiled the whole."

ତାପରେ କର୍ଣ୍ଣେଲ ସଙ୍ଗେ କଣ କଥା ହେଲେ ଏ ଦୁଇଜଣ ଯାକ। ତାଙ୍କର ଏ ରାଗ ଦେଖି ମୁଁ ବଡ଼ଡ଼ା ଡରପର ଥରିବା ଛଡ଼ା ଆଉ ଉପାୟ ନଥିଲା। ତାପରେ ଯେଉଁ କର୍ଣ୍ଣେଲ ମୋତେ ଏତେ ଭଲ ପାଉଥିଲ, ସେ ବି ଆସି ଗୁଡ଼ାଏ ଗାଳି ବର୍ଷଣ କରି ଶେଷରେ କହିଲେ—

"ତୁମକୁ କୋର୍ଟ ମାର୍ଶାଲ ହେବ" ଏବଂ କମାଣ୍ଡାଙ୍କୁ ଡକାଇ କହିଲ "ଏଙ୍କୁ କ୍ୱାର୍ଟର ଗାର୍ଡରେ ରଖ।"

ଜଣେ ସର୍ଜେଣ୍ଟ ଓ ଦୁଇଜଣ ସିପାହୀ ଆସି ମୋର ଅସ୍ତ୍ର ନେଇ ଗଲେ। ମୋର ଅଣ୍ଟାରୁ ବେଲ୍ଟ ନେଇଗଲେ ଓ ମୁଣ୍ଡରୁ ଟୋପି ନେଇ ଆଗରେ ପଛରେ ଦୁଇଟା ରାଇଫଲ ଧରି ଘେରି ଗାରଦ ଭିତରକୁ ନେଇଗଲେ। ମୁଁ ଠିକ୍ ମଲା ମୂଷା ପରି ଟେଣ୍ଟ ଭିତରେ ପଡ଼ି ରହିଲି।

କ୍ୱାର୍ଟର ଗାର୍ଡରେ ୩ଦିନ ରହିଲା ପରେ ମୋତେ 'ପେଶି' କରାଗଲା। ପେଶିମାନେ କମାଣ୍ଡରର ସାମନାରେ ହାଜର କରାଇବା। ଆଗରେ ଜଣେ ଓ ପଛରେ ଜଣେ ବନ୍ଧୁକ ଧାରୀ ହାବିଲଦାର ଏବଂ ମୁଁ ମଝିରେ। ସୁବେଦାର ମେଜର ମାର୍ଚ୍ଚ କରାଇ ନେଇ ଠିଆ କରାଇଲେ କମାଣ୍ଡର ସାମନାରେ। ମୋତେ ମୋର ଦୋଷ ପଢ଼ି ଶୁଣାଇ ଦିଆଗଲା ଏବଂ ସଙ୍ଗେ ସଙ୍ଗେ ହୁକୁମ୍ ହେଲା—ଯେହେତୁ ଏହା ଏକ ବଡ଼ "ଅପରାଧ" ତୁମକୁ କୋର୍ଟ ମାର୍ଶାଲର ସମ୍ମୁଖୀନ ହେବାକୁ ପଡ଼ିବ। ୧୫ଦିନ ପରେ ତୁମର ବିଚାର ହେବ। ଅନ୍ୟସବୁ ବିଷୟ ଯଥାସମୟରେ ଜଣାଇ ଦିଆଯିବ। ପୁଣି ସାଲ୍ୟୁଟ୍, ଏବାଉଟର୍ଣ୍ଣ, ବାଇ ଦି ଲେଫ୍ଟ, କ୍ୱିକ୍ ମାର୍ଚ୍ଚ।

ପୁଣି ଗାରଦ ଭିତରକୁ ଆସିଲି। ଭବିଷ୍ୟତ ଅନ୍ଧାର, ଭାଗ୍ୟରେ କ'ଣ ଅଛି ଦେଖିବା ଅପେକ୍ଷାରେ ପଡ଼ି ରହିଲି।

କୋର୍ଟ ମାର୍ଶାଲ ମିଲିଟାରୀ ଜୀବନର ସବୁଠାରୁ ବଡ଼ ଦଣ୍ଡ । ଦୋଷ ଅନୁପାତରେ ସଜା ଦିଆ ଯାଇଥାଏ । ଯାବଜ୍ଜୀବନ କାରାଦଣ୍ଡ ଠାରୁ ଆରମ୍ଭ କରି ଗୁଳି କରି ମାରିଦେବା ପର୍ଯ୍ୟନ୍ତ ଦଣ୍ଡ ଦିଆ ଯାଇଥାଏ । ପ୍ରମାଣର ଅଭାବରେ ସ୍ଥାନ ବି ମିଳିଲା । ମୋର ଦୁର୍ଦ୍ଦଶା ଦେଖି ମୋର ସାଙ୍ଗଭାଇମାନେ ସମବେଦନା ପ୍ରକାଶ କଲେ । ସନ୍ଧ୍ୟାବେଳେ ଆସନ୍ତି ଚୁପ୍ ଚୁପ୍ କଥା ହୋଇ ଚାଲିଯାନ୍ତି । ମୁଁ ମୂକ ହୋଇ ବସିଥାଏଁ । ତେବେ ଇଂରେଜ ସରକାର ନ୍ୟାୟ ବିଚାର ପାଇଁ ସୁଯୋଗ ଦେଇଥାନ୍ତି ଏବଂ ମୋତେ ସେ ସୁଯୋଗ ନିଶ୍ଚୟ ମିଳିବ, ଏଇ ଆଶାରେ ମୁଁ ଥାଏଁ । ଦୁଇଦିନ ପରେ ପୁଣି “ପେସି’ ମୋତେ ପଚରା ହେଲା—

“ତୁମକୁ ନିଜର ପକ୍ଷ ସମର୍ଥନ କରିବା ପାଇଁ ସୁଯୋଗ ଦିଆଗଲା ଏବଂ ତୁମେ ତୁମର ଓକିଲ ଜଣେ ବାଛି ପାରିବ । ତୁମ କମ୍ପାନୀର ଅଫିସରମାନଙ୍କ ମଧ୍ୟରୁ ଜଣେ ତୁମର ଓକିଲାତି କରିବେ ।’’

ବାଛିବା ପ୍ରଶ୍ନ ଯେମିତି ଉଠିଛି ମୁଁ ଚଟ୍ କରି କହି ପକାଇଲି ମେଜର ବାଥାମ୍‌ଙ୍କ ନାଁ । ମେଜର ବାଥାମ୍‌ଙ୍କ ଘର ଖାସ ଲଣ୍ଡନ ସହରରେ । ସେ ଜଣେ ଏମ୍: ଏ: ବି: ଏଲ୍ । ଯୁଦ୍ଧକୁ ଆସିବା ପୂର୍ବରୁ କେମ୍ବ୍ରିଜ ବିଶ୍ୱବିଦ୍ୟାଳୟରେ ଅଧ୍ୟାପକ ଥିଲେ । ଯେତେବେଳେ ଦେଶର ଡାକରା ପଡ଼ିଲା ଏବଂ ଘୋଷଣା କରାଗଲା ଯେ ୪୦ ବର୍ଷ ମଧ୍ୟରେ କିମ୍ବା ତା’ଠାରୁ କମ ବୟସ୍କ ଲୋକମାନେ ମିଲିଟାରୀରେ ଯୋଗଦେଇ ଦରିଆ ପାରି ଯିବାକୁ ଇଚ୍ଛା କଲେ ପ୍ରଥମେ ସେମାନଙ୍କୁ ପଠାଯିବ । ସେହି ଘୋଷଣା ଫଳରେ ସେ ଭାରତକୁ ଆସିଲେ । ପ୍ରଥମେ ଆସି ପେଶାୱାର (ବର୍ତ୍ତମାନ ପାକିସ୍ଥାନ)ରେ ରହିଲେ । ତା’ପରେ ଆମ କମ୍ପାନୀରେ ଯୋଗ ଦେଇଥିଲେ ମାନମାଦରେ । ଅତି ସରଳ ଓ ନିରାଡ଼ମ୍ବର ଭଦ୍ରଲୋକ । ସେ ମୋ ପକ୍ଷରେ ଲଢ଼ିବେ ବୋଲି ପ୍ରତିଶ୍ରୁତି ଦେଲେ । ମୋଠାରୁ କିଛି ନ ଶୁଣି କହିଲେ—

“ମୁଁ ସବୁ ଜାଣେ, ମୁଁ ତୁମ ପାଇଁ ଲଢ଼ିବି ।”

ଠିକ୍ ୧୫ ଦିନ ପରେ ବିଚାର ଆରମ୍ଭ ହେଲା । ମିଲିଟାରୀ ବିଚାରାଳୟ ବିଷୟରେ ମୋର କିଛି ଧାରଣା ନ ଥିଲା । ସେହିଦିନ ଜାଣିଲି କିପରି ବିଚାର ହୁଏ । ଠିକ୍ ସିଭିଲ୍ ବିଚାରାଳୟ ପରି । କାଠଗଡ଼ା

ଅବଶ୍ୟ ନ ଥିଲା । ଯୁଦ୍ଧ ସମୟରେ ପୁଣି ଜଙ୍ଗଲରେ ବିଚାରାଳୟ ଆସିବ କେଉଁଠୁ ?

ପାଞ୍ଚଜଣ ବିଚାରକ । ଜଣେ ଆମର କମ୍ପାନୀ କମାଣ୍ଡର ଲେଫ୍‌ଟେନାଣ୍ଟ କର୍ଣ୍ଣେଲ ଓ ବାକୀ ଚାରିଜଣ ଅନ୍ୟାନ୍ୟ କମ୍ପାନୀରୁ ଆସିଥାନ୍ତି ।

ସମସ୍ତେ କୋର୍ଟ ରୁମ୍ ପରି ଉଚ୍ଚ ଜାଗାରେ ବସିଥାନ୍ତି । ସେମାନଙ୍କ ତଳକୁ ମୋ ଓକିଲ ଏବଂ ବିପରୀତ ଦିଗରେ ସରକାରଙ୍କ ତରଫର ଆଡଜୁଟାଣ୍ଟ (ଯେ କମ୍ପାନୀର ନିୟମାନୁବର୍ତ୍ତିତା ପାଇଁ ଦାୟୀ, ତାଙ୍କୁ ଆଡଜୁଟାଣ୍ଟ କହନ୍ତି) ବସିଥାନ୍ତି । ଏଥର ମାର୍ଚ୍ଚ କରାଇ ନେଇ ଗଲେ ସ୍ୱୟଂ ଆଡଜୁଟାଣ୍ଟ ସାହେବ । କଚେରୀରେ···'ହାକିର ହୈ' ଡାକୁଥିବା ପିଅନ ପରି ଜଣେ କର୍ମଚାରୀ ଏଠି କୋର୍ଟରେ ଥାନ୍ତି । ତାଙ୍କୁ କୁହାଯାଏ ଅର୍ଡର୍‌ଲି ଅଫିସର ।

ମିଲିଟାରୀରେ ଡିଉଟି ଅଫିସର ଜଣେ ଜଣେ ପ୍ରତିଦିନ ରହନ୍ତି । ପ୍ରତ୍ୟେକ ଯାଗାରେ ସେମାନଙ୍କୁ ଏହି ନାମରେ ହିଁ ଡକା ଯାଇଥାଏ । ସେ ଦିନ ଅର୍ଡର୍ଲି ଅଫିସର ଜଣେ କେପ୍‌ଟେନ । କୋର୍ଟ ରୁମ୍ ଭିତରୁ ଆଦେଶ ହେଲା ।

SR 5575 ଏମ୍ ସିଂହଙ୍କୁ ଡାକ !

ସେ ଡାକବାରୁ ମାର୍ଚ୍ଚ କରାଇ ମୋତେ ନିଆଗଲା । ମୋ ବିରୁଦ୍ଧରେ ଥିବା ବିଷୟ କୁହା ହେଲା, ମୋତେ ଅନେକ ପ୍ରଶ୍ନ ପଚରା ହେଲା । ଦୁଇ ଘଣ୍ଟା ବିତିଯିବାରୁ ସେଦିନ ପାଇଁ ବିଚାର ବନ୍ଦ ରହିଲା । ବିଚାରକମାନଙ୍କ ପଛରେ ଜଣେ ଟାଇପିଷ୍ଟ ବସିଥାନ୍ତି । ସେ ସବୁ ଟାଇପ୍ କରୁଥାନ୍ତି । ବିଚାର ତହିଁ ଆରଦିନକୁ ରଖା ହେଲା ଏବଂ ସେ ଦିନର ପ୍ରଶ୍ନ ଉତ୍ତର ସବୁ ମୋତେ ପଢ଼ି ଶୁଣାଇ ଦିଆଗଲା । ମୁଁ "ଠିକ୍ ଅଛି" କହିବାରୁ ସମସ୍ତେ ଉଠିଲେ । ମୁଁ ଫେରି ଆସିଲି ବନ୍ଦୀ ଶାଳାକୁ ।

ତହିଁ ଆରଦିନ ମୋ ତରଫରୁ ବାଟାମ୍ ସାହେବ ଓକିଲ ପରି ସବୁ କାମ ଚଳେଇଲେ । ଚାରି ଘଣ୍ଟା ପରେ କୋର୍ଟ କାମ ସରିଲା । ତାର ସାତଦିନ ପରେ ପୁଣି ବିଚାର ହେଲା ।

ସେଦିନ ସପ୍ନ ବାହାରିବ । ମୋର ମନ ମୋଟେ ଭଲ ନ ଥାଏ । କିନ୍ତୁ ମୁଁ ବେପରବାସ୍ତ ଥାଏ । କାରଣ ମୁଁ ନିଶ୍ଚିତ ଥାଏ ଯେ ମୁଁ କୌଣସି ଦୋଷ କରି ନାହିଁ । ସେଦିନ ବାଟାମ ଖୁବ୍ ନେଙ୍ଗସ୍ପିଟା ଭାଷାରେ ସପ୍ନ ସୂଚିତ୍ର କଲେ—

"ଆପଣମାନେ କଣ ଭାବୁଛନ୍ତି, ସିଂହ ଜାଣି ଶୁଣି ଏ ସବୁ କରିଛି ? କଦାପି ନୁହେଁ । ମାତ୍ର ୪ ଘଣ୍ଟା ଟ୍ରେନିଂରେ ଯେଉଁ ଲୋକ ୧୫ ଦିନକାଳ କାମ ଚଳେଇ ପାରିଲା ସେ ଯେ ତା' ପରଦିନ (ଷୋହଳ ଦିନ) ଦିନ ଏପରି ବଦମାସି କରିପାରେ, ଏହା ବିଶ୍ବାସ ଯୋଗ୍ୟ ନୁହେଁ । କେବେ ନୁହେଁ । ସେଦିନ ବୋମା ପଡ଼ି ନ ଥିଲେ ତା' ମନରେ ଭୟଜାତ ହୋଇ ନଥାନ୍ତା । ଯଦି ଖରାପ କାମ କରିବାର ଇଚ୍ଛା ଥିଲା, ତାହାହେଲେ ସେ କେବଳ ଏ ପଜେଟିଭ୍ ନେଗେଟିଭ ପ୍ଲଗ ନ କରି ଅନ୍ୟ କିଛି ବଡ଼ ଧରଣର କାମ କରିଥାନ୍ତା । ତା ଛଡ଼ା ଆପଣ-ମାନେ ତାକୁ ସ୍ବତଃ ପ୍ରବୃତ୍ତ ହୋଇ ବାଛିଥିଲେ । ସେ ସେଥିପାଇଁ ପ୍ରାର୍ଥୀ ହୋଇ ନ ଥିଲା"—ଇତ୍ୟାଦି ଇତ୍ୟାଦି କେତେ କଣ ।

ସେ ସବୁ ଆଜି ମୋର ମନେ ନାହିଁ । ତେବେ ମୋ ମନ ଟିକିଏ ଖୁସି ଥାଏ ଏ ସୂକ୍ତ ଶୁଣି । ଶେଷରେ ସପ୍ନ ଦିଆଗଲା, "ତୁମେ ନିର୍ଦ୍ଦୋଷ" । ପୁଣି ମୋର ବେଲ୍ଟ ଟୋପି ପ୍ରତ୍ୟର୍ପିତ ମୋତେ ଦିଆଗଲା । ମାର୍ଚ୍ଚିଂ ସ୍କ୍ବାଡ଼ରୁ ବାହାରି ଆସି ଏକୁଟିଆ ଯାଇ କୋର୍ଟକୁ ଏଟେନ୍‌ସନ୍ ହୋଇ ଏକ ସାଲ୍ୟୁଟ ଠୁକିଲି । କୋର୍ଟ ଭାଙ୍ଗିଲା । ମୁଁ ପ୍ରଥମେ କିଛି କହିବା ଆଗରୁ ମେଜର ବାଟାମ୍ ଆସି ମୋର କରମର୍ଦ୍ଦନ କରି କହିଲେ—

"ଅଭିନନ୍ଦନ ସିଂହ" ।

"ଧନ୍ୟବାଦ ସାର୍ । ସବୁ ଆପଣଙ୍କ ଦୟା ଓ ପରିଶ୍ରମର ଫଳ" ବୋଲି କହି ପୁଣି ତାଙ୍କୁ ଗୋଟାଏ ଅଲଗା ସଲାମ ଦେଲି ।

ମୋର ଅସୀମ ଆନନ୍ଦ । ଆଜି ଲେଖିଲା ବେଳକୁ ସେ ଆନନ୍ଦର ତୁଳନା କରି ପାରୁନାହିଁ । ସମସ୍ତେ ବିଶ୍ବରବ ଅର୍ଡ଼ଲି ଅଫିସର ଆଡ଼ଜୁଟାଣ୍ଟମାନେ ଗୁଡ଼ାଏ ଅଭିନନ୍ଦନ ଜଣାଇଲେ । ସମସ୍ତଙ୍କୁ ଧନ୍ୟବାଦ ଦେଉଥାଏଁ । ମୋର ମନେ ଅଛି ସେଦିନ ପ୍ରାପ୍ତ ହଜାରେ ହେବ

ଧନ୍ୟବାଦ ବାର୍ତ୍ତା କରିଥିବ । ସିଙ୍କାକ୍ ଟିକଏ ଥଣ୍ଡା ପଡ଼ିଲ ଏବଂ ଖୁସିରେ ସଙ୍ଗେ ସଙ୍ଗେ ଦୁଇ ଗୃହିଜଣ ସାଙ୍ଗ ମିଲିଟାରୀ କ୍ୟାଣ୍ଟିନ୍ ଭିତରକୁ ଭୂକିଲୁ ।

ଠିକ୍ ୧୦ ଦିନ ପରେ ଖଣ୍ଡେ ଚିଠି ଆର୍ମି ହେଡକ୍ୱାର୍ଟରରୁ ମିଳିଲା । ସେଥିରେ ମୋର କାମ ପାଇଁ ଧନ୍ୟବାଦ ଦେବା ସଙ୍ଗେ ସଙ୍ଗେ ମୋତେ କୋର୍ଟମାର୍ଶାଲର ସମ୍ମୁଖୀନ ହେବାକୁ ପଡ଼ିଥିବାରୁ ଦୁଃଖ ପ୍ରକାଶ କରାଯାଇଥିଲା ଏବଂ ସଙ୍ଗେ ସଙ୍ଗେ ମୋର ନାମ ଗୁଡ୍ ସର୍ଭିସ ପାଇଁ ସୁପ୍ରିମ ଆଲାଇଡ୍ କମାଣ୍ଡର ସାଉଥ ଇଷ୍ଟ ଏସିଆଙ୍କ ପାଖକୁ ସୁପାରିଶ ପଠାଗଲା । ସେହି ଅନୁସାରେ ମୋତେ ୭ ଜୁନ ୧୯୪୮ ମସିହାରେ 'ଗୁଡ୍ ସର୍ଭିସ କାର୍ଡ' ମିଳିଛି । ଏହି ସାର୍ଟିଫିକେଟ ସବୁ ସମ୍ମାନ ସୂଚକ ବୋଲି ଭାରତ ସରକାରଙ୍କ ଗେଜେଟ୍‌ରେ ବାହାରି ଥାଏ ।

ଦିନପରେ ଦିନ ଯାଉଥାଏ । ଇଂଫାଲ ଅଞ୍ଚଳରେ ଖୁବ୍ ଯୁଦ୍ଧ ଚାଲିଥାଏ, ବିଶେଷ ଭାବେ ଗରିଲା ଯୁଦ୍ଧ । ଜାପାନୀମାନେ ପ୍ରାଣ ପଣେ ଲଢୁଥାନ୍ତି । ଇଂଫାଲର ଭିତରକୁ ମଣିପୁର ରାଜାଙ୍କର ଗୋଟାଏ ବଡ଼ ଉଆସ ଗ୍ରାଉଣ୍ଡ ସହିତ ଥିଲା । ଜାପାନୀ ବୋମା ମାଡ଼ରେ ପ୍ରାୟ ସେ ଘର ଭାଙ୍ଗି ପଡ଼ିଥିଲା । ତଥାପି କେତୋଟି କୋଠରୀ ଭଙ୍ଗା ଇଟା ଗଦା ମଝିରେ ମୁଣ୍ଡଟେକି ଠିଆ ହୋଇଥାଏ । ଦିନେ ଭିତରକୁ ବୁଲି ଯାଇଥିଲୁ ଆମେ ୪।୫ଜଣ । ଘର ଭିତରେ ପଶିଲା ବେଳକୁ ଚମିଶିଆ ଚଢ଼େଇ ଉଡ଼ିଗଲେ କିଚିରି ମିଚିରି ଶବ୍ଦ କରି । ଗୋଟାଏ ବଡ଼ ଧୁଣ୍ଡାଳ ଗୋଟାଏ କୋଣ ଦେଇ ପଳାଇ ଗଲା । ଜାଗାଟା ମାଡ଼ ମାଡ଼ ପଡୁଥାଏ । ତେବେ "ଜାପାନୀ" ଛଡ଼ା ଆଉ କିଛି ଭୟ ନ ଥାଏ । ସୁତରାଂ ଟିକଏ ଖସ୍ ଶବ୍ଦ ହେଲେ ହାତଟା ସ୍ୱତଃ ଷ୍ଟେନ୍‌ଗନ୍ ଟ୍ରିଗର ଉପରେ ପଡ଼ିଯାଏ । ସେହି ରାଜବାଟୀର ଗୋଟିଏ ପାହାଚ ଉପରେ ବସିଲୁ । କେତେ ଦେଶ, କେତେ ରାଜା, କେତେ ରାଜ୍ୟ ଏହିପରି ପୂର୍ବରୁ ଯାଇଥିବେ ଓ ଭବିଷ୍ୟତରେ ଯିବେ । ଭଙ୍ଗା ଇଟାଗଦା ଓ ଶିଉଳିମଣ୍ଡା ଫଟା କାନ୍ଥରେ ଅନା ବନା ଗଛ ଓ ତା' ତଳେ ସାପ, ବିଲୁଆ କିମ୍ବା ଢ଼ଂସ୍ରଜନ୍ତୁ କିଛି ଦିନ ପାଇଁ ରହିବେ ।

ଚରମେ ସେ ସବୁ ମାଟିରେ ମିଶିଯିବ । ଚାରି ପାଞ୍ଚ ପୁରୁଷ ପରେ ସୃଷ୍ଟିହେବ ଇତିହାସ । କମ୍ପୁଚ କମାଣ୍ଡାର ଲୋକ କଥା, ସୃଷ୍ଟିହେବ କିମ୍ବଦନ୍ତୀ । କେତେ ଯୁଗପରେ ଯଦି ପୁଣି ତାହା ଲୋକ ଲୋଚନକୁ ଆସେ ପ୍ରତ୍ନତତ୍ତ୍ୱ ବିଭାଗ କରିବେ ଗବେଷଣା ।

ଏହି ପରି ଗଳ୍ପ ଜମେଇଚୁ, ଆସିଲା ଜଣେ ମଣିପୁରୀ ଲୋକ ଆମ ପାଖକୁ । ସେ ଭଲ ହିନ୍ଦୀ କହି ପାରୁଥିଲା । ସୁତରାଂ ତା ସଙ୍ଗେ ଗଳ୍ପ କରିବାକୁ କିଛି ଅସୁବିଧା ହେଲାନି । ସେ କହିଲା ମଣିପୁର ରଜାଘର କଥା ଏବଂ ସେ ଉଆସର କଥା । ମୋର ବିଶେଷ ପ୍ରଶ୍ନ ହେଲା ମଣିପୁରୀ ନାଚ ବିଷୟରେ । ଆଗରୁ କହିଚି ମଣିପୁରରେ ବୈଷ୍ଣବ ସମ୍ପ୍ରଦାୟ କଥା । ସୁତରାଂ କୀର୍ତ୍ତନ ହେଉଛି ତାଙ୍କ ଜୀବନର ଦୈନନ୍ଦିନ ଘଟଣା । ମୃଦଙ୍ଗର ତାଳରେ ଚାଲେ ମଣିପୁରୀ ନାଚ । ତା ସଙ୍ଗେ କଥାବାର୍ତ୍ତା ପରେ, ଠିକ୍ କଲୁ ସେ ଦିନ ତାଙ୍କ ପଡ଼ାକୁ ଯିବୁ ନାଚ ଦେଖି ।

ସନ୍ଧ୍ୟା ପୂର୍ବରୁ ଆସି କମ୍ପାନୀ କମାଣ୍ଡରର ପାଖରୁ ରାତି ୮ଟା ପର୍ଯ୍ୟନ୍ତ ବାହାରେ ରହିବାକୁ ଅନୁମତି ମାଗି ଗଲୁ ନାଚ ଦେଖି । ଠିକ୍ ଆସନ ଜମିବା ବେଳକୁ ବାଜିଲା ସାଇରେନ୍ । ଯେ ଯୁଆଡ଼େ ଛୁଟ୍ ଛୁଟ୍ ହୋଇ ପଳେଇଲେ । ମୁଁ ଦୌଡ଼ି ଦୌଡ଼ି ଯାଇ ଗୋଟାଏ ବୁଦୁ ବୁଦୁକିଆ ଜଙ୍ଗଲ ଜାଗାରେ ମୁହଁ ମାଡ଼ି ପଡ଼ି ରହିଲି । ଦୁଇଘଣ୍ଟା ପରେ ହେଲା ଆକାଶୀ ଆକ୍ରମଣ । ଉଠି ସିଧା ପଳେଇ ଆସିଲି କମ୍ପାନୀକୁ ।

ତହିଁ ଆରଦିନ ସକାଳେ ଟ୍ରକରେ ବୋଝାଇ ହୋଇ ଆମ କ୍ୟାମ୍ପକୁ ଆସିଲେ ୨୫ଜଣ ଜାପାନୀ ସିପାହୀ । କେତେଜଣଙ୍କ ହାତରେ ଥିଲା ଖଣ୍ଡେ ଖଣ୍ଡେ ବହି । ଆମ କମ୍ପାନୀକୁ ଆସିବାର ଉଦ୍ଦେଶ୍ୟ ଥିଲା ସେମାନେ ଆମ କମ୍ପାନୀରେ ରହିବେ ବନ୍ଦୀ ହିସାବରେ ।

ସେତେବେଳେ କୌଣସି ଯୁଦ୍ଧ ବନ୍ଦୀ-ଶିବିର ଖୋଲା ହୋଇ ନ ଥିଲା । ଆମ୍ଭେମାନେ ନିଜ ଘେରରେ ପଡ଼ିଥିଲୁ । ସେହିଦିନ ମୁଁ ପ୍ରଥମେ ଜାପାନୀ ସିପାହୀଙ୍କୁ ଦେଖିଲି । କୌଣସି ଖାତିର ନାହିଁ, ବେପରବାୟ ହାବ ଭାବ । ଭାରତୀୟ ସିପାହୀମାନଙ୍କ ସହିତ ଖଣ୍ଡି ଖଣ୍ଡି ଇଂରାଜୀରେ କଥା ହେଉଥାନ୍ତି । ଯେ ବୁଝିଲାତ ଭଲ, ନ ବୁଝିଲେ ଷଣ୍ଢ

ନାହିଁ । ମୋର ଟିକିଏ ବେଶି କୌତୁହଳ, ସେମାନଙ୍କ ସଙ୍ଗେ କପଟ ମିଶିବି । ସେମାନେ କ୍ୟାଂପର ଗାର୍ଡରେ ୪।୫ଦିନ ରହିଲା ପରେ ତାଙ୍କ ସଙ୍ଗେ ଆସ୍ତେ ଆସ୍ତେ ମିଶିଲି । ତାଙ୍କ ମଧ୍ୟରେ ଜଣେ ଥିଲା କ୍ୟାପ୍‌ଟେନ୍ । ସେ ଇଂରାଜୀ ଭଲ କହି ପାରୁଥିଲା । ତଥାପି ଉଚ୍ଚାରଣ ବୁଝିବା ବଡ଼ ମୁସ୍କିଲ ହେଲା ମୋ ପକ୍ଷରେ । L ଅକ୍ଷରକୁ ସେ R ପରି ଉଚ୍ଚାରଣ କରୁଥାଏ । ଉଦାହରଣ ସ୍ୱରୂପ Three hundred gallons of petrolକୁ ସେ କହେ "ଥ୍ରୀ ହନ୍‌ଡ୍ରେଡ୍ ଗାରନସ୍ ଅଫ ପେଟ୍ରୋର୍ ।" ଟିକିଏ କଥାରେ "ଆରି ଗ୍ୟା ତୋ ଗୁଜାଇ ମାସେ" ମାନେ 'ଆପଣଙ୍କୁ ବିଶେଷ ଧନ୍ୟବାଦ' । ସିଗାରେଟ୍ ଖଣ୍ଡେ ପାଇଁ ସେମାନେ ପାଗଳ । ସେମାନଙ୍କୁ କିଛି ଦେବା ମନା । ମୋର ଇଚ୍ଛା କପଟ ସେମାନଙ୍କ ମୁହଁରୁ ତାଙ୍କର ବୀରତ୍ୱ, ତାଙ୍କର ସାମାଜିକ ଜୀବନ, ତାଙ୍କର ଦେଶର କଥା ଶୁଣିବି । ତା ଛଡ଼ା ସେତେବେଳେ ସ୍ୱଦେଶୀ ଆନ୍ଦୋଳନର ହାଓ୍ୱା ସ୍ୱତଃ ଭାରତୀୟମାନଙ୍କୁ ଇଂରେଜ ବିରୋଧୀ କରି ପକାଉଥାଏ । ନେତାଜୀଙ୍କର ଭାରତକୁ ସ୍ୱାଧୀନ କରିବାର ପ୍ରାଣମୂର୍ଚ୍ଛା ଉଦ୍ୟମ ଭାରତୀୟ ଓ ଜାପାନୀ-ମାନଙ୍କ ମଧ୍ୟରେ ପରସ୍ପର ସୌହାର୍ଦ୍ଦ୍ୟ ବଢ଼ାଇ ଥାଏ । ସେହି ମନୋବୃତ୍ତି ନେଇ ମୁଁ ଦିନେ ସେ କ୍ୟାପ୍‌ଟେନକୁ ଲୁଚାଇ କରି ସିଗାରେଟ୍ ପାକେଟ୍‌ଟିଏ ଦେଲି ଏବଂ ସେ ମୋତେ ସେହି ଗୋଟିଏ ପାକେଟ ପାଇଁ ପ୍ରାୟ ୨୦ଥର ମୁଣ୍ଡ ନୁଆଁଇ ଧନ୍ୟବାଦ ଜଣାଇ ଥିଲା । ସେମାନେ କେଉଁଠାରୁ କପରି ଧରା ହେଲେ ବୋଲି ପଚାରିବାରୁ ସେ କହିଲା—

ବର୍ମା ସୀମାନ୍ତରେ ସେମାନେ ପହରା ଦେଉଥିଲେ । ହଠାତ୍ ବୋମା ମାଡ଼ରେ ପ୍ଲାଟୁନରେ ସମସ୍ତେ ମଲେ ଏବଂ ଏହି କେତେଜଣ ଟ୍ରେଞ୍ଚ ମଧ୍ୟରେ ଲୁଚିଥିଲେ । ହଠାତ୍ ତାଙ୍କୁ ବ୍ରିଟିଶ ଟ୍ୟାଙ୍କ ବାହିନୀ ଘେରାଉ କରି ନେଲା ଏବଂ ସେମାନେ ଧରା ପଡ଼ିଲେ । ନେତାଜୀଙ୍କ ବିଷୟ ସେ ବହୁତ କହିଲା । ଏପରିକି କଟକ ତାଙ୍କର ଜନ୍ମସ୍ଥାନ ବୋଲି ସେ ଜାଣେ । ପ୍ରତ୍ୟେକ କଥାରେ ସେ କହେ ନେତାଜୀ ଇଂଡିଆ ଗ୍ରେଟ୍ ରଡର୍ ।

ସେତେବେଳେ ମୁଁ କହିଲି ମୋର ଘର ସେହି କଟକରେ । ସେ କଥା ଶୁଣିବା ଦିନୁ ସେ ଓମା ସାଙ୍ଗରେ ଆହୁରି ଆନ୍ତରିକତା

ଜମେଇଲା । ତାଙ୍କ ପ୍ଲାଟୁନରେ ଯେତେକ ଜାପାନୀ ଥିଲେ ସମସ୍ତେ ଇଂରାଜୀ ଲେଖିପାରୁ ଥିଲେ କିନ୍ତୁ କହି ପାରୁ ନ ଥିଲେ । ସମସ୍ତେ ସବୁ କାମ ଜାଣନ୍ତି । ମଟର ଚଳାଇବାଠାରୁ ଆରମ୍ଭ କରି କାଗଜ ଫୁଲ୍, କରୁଗେଟେଡ୍ ସିଟରୁ ଟ୍ରଙ୍କ ତିଆରି କରିବା, ବଢ଼େଇ କାମ, କମାର କାମ ଓ ଲେଖା ପଢ଼ା କାମ ସବୁ ଜାଣନ୍ତି । ତାଙ୍କ କାମ ଦେଖି ଆଶ୍ଚର୍ଯ୍ୟ ହୋଇଗଲି । ଶୁଣିଲି ସେମାନେ ସମସ୍ତେ ଟ୍ରେନିଂ ପାଇଛନ୍ତି । ସେମାନଙ୍କର ଦଳ ବଳ କମ୍ ହେତୁ ସେମାନଙ୍କୁ ଭିନ୍ନ ଭିନ୍ନ କାମ କରିବାକୁ ପଡ଼ୁଥାଏ । ପ୍ରକୃତରେ ତା’ ହୋଇ ନ ଥିଲେ ଏତେ ଶ୍ରୀଘ୍ର ଦେଶ ଏତେ ଉପରକୁ ଉଠିପାରି ନଥାନ୍ତା ।

ସାତ ଦିନପରେ ସେ ଭଦ୍ରଲୋକ ମୋତେ ହଠାତ୍ ଗମ୍ବୁଟ ଉପହାର ଦେଲେ ମୁଁ ତାକୁ ଲୁଚାଇ ରଖିଲି । ବରଫ ଅଞ୍ଚଳରେ ତାକୁ ପିନ୍ଧନ୍ତି । ଭିତରେ ମେଣ୍ଢାଲୋମ ଉପରଟା ଚମଡ଼ା । ସେହି ବୁଟ୍ ଯୋଡ଼ିକ ମୋ ପାଖରେ ଅଛି । ତାକୁ ମୁଁ ସାଇତି ରଖିଛି ମିଲିଟାରୀ ଜୀବନର "ସୋଭେନିର୍" ରୂପେ ।

ତିନିମାସ ସେଇଠି ଭିତରେ ପଡ଼ି ଅନେକ କଷ୍ଟ ଭୋଗ କରିବାକୁ ପଡ଼ିଲା । ପ୍ରତି ଜିନିଷ କଣ୍ଟ୍ରୋଲରେ ଦିଆ ହେଉଥାଏ, ଏପରିକି ପାଣି ପର୍ଯ୍ୟନ୍ତ । ଜଣକୁ ଦିନକୁ ଗୋଟିଏ ବୋତଲ ପାଣି ଖଣ୍ଡିଏ । ସେଇଥିରେ ସବୁ କାମ କରିବାକୁ ପଡ଼ିବ । ଜାପାନୀମାନେ ପ୍ରତି ନାଳ, ଝରଣା ପ୍ରଭୃତିରେ କଲେରା ଜୀବାଣୁ ଗୁଣ୍ଡ ଦେଇଥାନ୍ତି ସେଥିପାଇଁ ଏ ବ୍ୟବସ୍ଥା । ମଣିପୁର ଲୋକ ଓ ବର୍ମୀମାନେ ଏହାର ସୁବିଧା ନେଇ ଚିଆ ଖୋଳି ପାଣି ବୋତଲକୁ ଆଠଟଙ୍କା, ଦଶଟଙ୍କାରେ ବିକୁଥାନ୍ତି ଏବଂ ସେମାନଙ୍କ ଠାରୁ ଲୁଚାଇ କରି ମିଲିଟାରୀ ଲୋକମାନେ କିଣି ବ୍ୟବହାର ବି କରନ୍ତି ।

ଯୁଦ୍ଧର ଘନଘଟା ଭିତରେ ମନ ଭିତରେ ବି ମୋର ଯୁଦ୍ଧବେଳେ ଲଢେଇ ଚାଲିଥାଏ, ଘରୁ କିମ୍ବା ଅନ୍ୟ କୌଣସି ଠାରୁ ଚିଠିପତ୍ର କିଛି

ନ ପାଇ । ଏହି ଭିତରେ ବର୍ମୀମାନେ ଭାରତୀୟମାନଙ୍କ ଉପରେ ଅକଥନୀୟ ଅତ୍ୟାଚାର ଚଳାଉଥାନ୍ତି । ଯୁଦ୍ଧ ଲାଗିବା ଭିତରେ ଅନେକ ଭାରତୀୟ କୌଣସି ମତେ ଭାରତ ସୀମା ଭିତରକୁ ପଳାଇବାକୁ ଚେଷ୍ଟା କରୁଥାନ୍ତି ଏବଂ ପଳାଇ ବି ଆସୁଥାନ୍ତି । ସେମାନଙ୍କର ଏ ଦୁର୍ଦ୍ଦିନର ସୁଯୋଗ ନେଇ ବର୍ମୀମାନେ ଭୀଷଣ ହତ୍ୟାକାଣ୍ଡ ଲଗାଇଥାନ୍ତି । ଉଦ୍ଦେଶ୍ୟ—ବର୍ମାରୁ ଏମାନେ ଟଙ୍କା ସୁନା ନେଇ ଯାଉଛନ୍ତି ଭାବ ତାଙ୍କ ଠାରୁ ଛଡ଼ାଇ ନିଜର ଖୋରାକ ଯୋଗାଡ଼ କରିବା, ଦ୍ୱିତୀୟରେ ବହୁ ଭାରତୀୟ ବର୍ମାରେ ବସବାସ କରି ବର୍ମା ସରକାର ଅଧୀନରେ ବଡ଼, ବଡ଼ ବଡ଼ ଚାକିରି କରି, ବ୍ୟବସାୟ ବାଣିଜ୍ୟ, କୃଷିଚାଷ କରି ଏକ ପ୍ରକାର ବର୍ମାର ଅର୍ଥନୈତିକ ଓ ସାମାଜିକ ଜୀବନ ଉପରେ ପ୍ରଭାବ ପକାଇ ପାରିଥିଲେ । ସେଥିପାଇଁ ସେମାନଙ୍କ ଉପରେ ଭୀଷଣ ରାଗ ।

ସମୟ ପ୍ରାୟ ଗୃରଟା । ମୁଁ ବସିଛି ଅଫିସ ବାରଣ୍ଡାରେ । ମୋର ଟେଲିଫୋନ ଡ୍ୟୁଟି ଥାଏ । ଦୁଇ ଗୃରିଜଣ କୁଲି ଅଫିସ ସାମ୍ନାରେ ଓଡ଼ିଆରେ କଥା ହୋଇ ଯାଉଥିବାର ଶୁଣିଲି । ଜଣେ କହୁଥାଏ, 'ଶଳା' କେଉଁଠୁ ପାଇଛି କଲରେ, ମୋର ଦୁଇ ଦିନର ପାଉଣା କାଟି ଦେଲା । ଭାଷା ଶୁଣି ଜାଣିଲି ଏମାନଙ୍କ ଘର ଗଞ୍ଜାମ ଜିଲ୍ଲାରେ ନିଶ୍ଚୟ । ତାଙ୍କୁ ଡାକିଲି । ଓଡ଼ିଆରେ ମୋ ଠାରୁ କଥା ଶୁଣି ମୋ ପାଖକୁ ବିନମ୍ର ସହକାରେ ଗୋଟିଏ ଗୋଟିଏ ନମସ୍କାର କରି ଠିଆ ହେଲେ । ମୁଁ କିଛି ପଚାରିବା ପୂର୍ବରୁ ସେମାନଙ୍କ ମଧ୍ୟରୁ ଜଣେ କହିଲା—

'ଆଜ୍ଞା, ଓଡ଼ିଆରେ କହୁନ୍ଛ ତମ ଘର କଅଣ ଓଡ଼ିଶାରେ କି ? ବଡ଼ ଖୁସି ଲାଗୁଛି ଆଜ୍ଞା ଓଡ଼ିଆ ଲୋକ ଦେଖି, ଅଫିସରୁ ହେଇଚ । କେତେଦିନୁ ଓଡ଼ିଆ ଲୋକ ଦେଖିନୁ ।"

ସେମାନଙ୍କୁ ବସାଇ ଖଣ୍ଡିଏ ଲେଖାଏ ସିଗାରେଟ୍ ଦେଇ ଗପ ଜମେଇଲି । ଅନେକ ଦିନ ପରେ ଓଡ଼ିଆ ଭାଷାରେ ଏକାବେଳକେ ପ୍ରଚୁର କଥାବାର୍ତ୍ତା କରିବାର ସୁଯୋଗ ମିଳିଲା । ସେ ଦିନର ଆନନ୍ଦ ଆଜି ଲେଖିଲାବେଳକୁ ଭାଷା ନାହିଁ । ଓଡ଼ିଆ ଲୋକ ସାତ ଆଠଜଣ ଏକାଠି ଅଛନ୍ତି ଏବଂ ସେମାନଙ୍କ ସଙ୍ଗେ ଅନ୍ତତଃ ଦୁଇ ଗୃରିଦିନରେ ଥରେ ଦେଖା ହେବ । ପରସ୍ପରର ସୁଖ, ଦୁଃଖର ସମଭାଗୀ ହେବାକୁ

ବିଦେଶରେ ଦୁଇଜଣ ଲୋକ ଅଛନ୍ତି, ଏହି ଭାବନାରେ ମୁଁ ବହୁତ ବିଭୋର ହୋଇ ଉଠିଲି । ଶୁଷ୍କ ମିଲିଟାରୀର ନିଃସଙ୍ଗ ଜୀବନ ବେଶ୍ ସରସ ଉପଭୋଗ୍ୟ ହୋଇ ଉଠିଲା । ଏହି କ୍ଷଣକ କଥାବାର୍ତ୍ତା ମଧ୍ୟରେ ବେଶ୍ ଆନ୍ତରିକତା ଫୁଟି ଉଠିଲା ଖାଲି ଭାଷା ଶୁଣି । ବନା ନାମ, ଧାମରେ ସେମାନେ ମୋତେ ନିଜର ବୋଲି ଭାବି ନେଲେ ଏବଂ ମୋ ଦେହର ମିଲିଟାରୀର ତକମା ଦେଖି ସେମାନଙ୍କର ଭୟ ବି ଚାଲିଗଲା । ବିଦେଶରେ ଯେଉଁ ପାଠକ ପାଠିକାମାନେ ଦିନ କାଟିଚନ୍ତି ସେମାନେ ମୋ କଥାର ତାତ୍ପର୍ଯ୍ୟ ମର୍ମେ ମର୍ମେ ଅନୁଭବ କରିବେ ନିଶ୍ଚୟ ।

ସାଧାରଣ କଥାବାର୍ତ୍ତା ପରେ ସେମାନେ ଆରମ୍ଭ କଲେ ସେମାନଙ୍କ ଅଭିଜ୍ଞତା, ବର୍ମୀମାନଙ୍କର ଅମାନୁଷିକ ଅତ୍ୟାଚାର । ଯୁଦ୍ଧରେ ଯିବାର ଦୁଇବର୍ଷ ଆଗରୁ ସେମାନେ ରେଙ୍ଗୁନ ଚାଲି ଆସି "କ୍ଲେଟି"ରେ କାମ କରୁଥିଲେ । ବର୍ମାରେ ବୋମା ବର୍ଷଣ ପରେ ଏବଂ ଜାପାନୀମାନେ ବର୍ମା ଅଧିକାର କରିବା ପରେ ସେମାନେ ଭାରତ ସୀମାକୁ ପଳାଇ ଆସିବାକୁ ଚେଷ୍ଟା କଲେ । ସେମାନେ ଥିଲେ ଏକଶହ ପଚିଶ ଜଣ । ସମସ୍ତେ ଭାରତୀୟ । ତାଙ୍କ ଭିତରେ ଅନ୍ତତଃ ଓଡ଼ିଆ ତିରିଶ ଜଣ । ରେଙ୍ଗୁନ ଛାଡ଼ି ଚାଲି ଚାଲି ମାଣ୍ଡାଲେରେ ପହଞ୍ଚିଲେ । ମାଣ୍ଡାଲେ ଠାରୁ ବଣ ଜଙ୍ଗଲ ଓ ପାହାଡ଼ ଦେଇ ସେମାନେ ଚାଲୁଥାନ୍ତି । ପ୍ରାୟ ପାଞ୍ଚଦିନ ଚାଲିବା ପରେ ଗୋଟିଏ ବର୍ମୀ ଗାଁ ପଡ଼ିଲା ରାସ୍ତାରେ । ସେଠାରେ ସେମାନଙ୍କୁ ପଚିଶ ଜଣ ସଶସ୍ତ୍ର ବର୍ମୀ ଲୋକ ଘେରି ଯାଇ ବନ୍ଧୁକ ଫାୟାର କଲେ । ଦୁଇ ତିନିଜଣ ସଙ୍ଗେ ସଙ୍ଗେ ମରି ପଡ଼ିଲେ । କିଛିତ ଖାଇବାକୁ ପାଉ ନଥାନ୍ତି । ପାଣି ପିଇ ଓ କଅଁଳିଆ ଗଛର ପତ୍ର ଖାଇ ଜୀବନ କୌଣସି ମତେ ରକ୍ଷା କରିଥାନ୍ତି । ସୁତରାଂ ସେମାନଙ୍କ ପାଖରେ ଶରଣ ପଶିଲେ, ବର୍ମୀମାନେ ଏମାନଙ୍କ ଠାରୁ ସବୁ ଟଙ୍କା ପଇସା ଛଡ଼େଇ ନେଲେ । ନେଇ ସାରିବା ପରେ ପୁଣି ଦୁଇ ଚାରିଜଣଙ୍କୁ ତେଣ୍ଟାରେ ଭୁଷି ମାରି ଦେଲେ । ଏମିତି କରିବାରୁ ଏମାନେ ବି ସେମାନଙ୍କ ସଙ୍ଗରେ ଲଢ଼ିଲେ । ଭାରତୀୟ ମାନଙ୍କ ମଧ୍ୟରେ ସବୁ ଜାତିର ଲୋକ ଥାନ୍ତି । ସେଥିପାଇଁ ମୋର ଗଞ୍ଜାମି ବନ୍ଧୁ କହିଲେ—

"ଆମ ଭିତରେ ପନ୍ଦରଟା ମୁସଲ ଥିବାରୁ ।"

"ମୁଷଲ" କଣ ବୋଲି ପଚାରିବାରୁ ସେ କହିଲେ 'ମୁସଲମାନ' ବର୍ମୀ ଓ ଭାରତୀୟ ମାନଙ୍କ ମଧ୍ୟରେ କିଛି ସମୟ ଖଣ୍ଡ ଯୁଦ୍ଧ ଲାଗିଲା। କିନ୍ତୁ ଏମାନେ ଶ୍ରାନ୍ତ କ୍ଳାନ୍ତ ଏବଂ ଖାଇବାକୁ ନ ପାଇ ପ୍ରାଣ ମୂର୍ଚ୍ଛା ହୋଇ ପଲାଉଥାନ୍ତି ଏବଂ ଅସ୍ତ୍ର ଶସ୍ତ୍ର କିଛି ନଥାଏ ଏମାନଙ୍କ ପାଖରେ। ସୁତରାଂ ବର୍ମୀମାନଙ୍କର ଡେଣ୍ଡା ଓ ବନ୍ଧୁକ ମାଡ଼ରେ ଏମାନଙ୍କ ମଧ୍ୟରୁ ତରିଜଣ ମରି ଶୋଇଲେ। ବାକୀ ସମସ୍ତେ ପଳାଇ ଆସି ଜୀବନ ରକ୍ଷା କଲେ। ବର୍ମୀମାନେ ପଇସାପତ୍ର ନେଇ ଯିବାରୁ ସ୍ୱାଙ୍କ ପିଣ୍ଡ ଛାଡ଼ ଦେଖିଲେ ଏବଂ ଏମାନେ କେବଳ ଗୃଳୁଣ୍ଡା ପତ୍ର ଖାଇ ଓ ଟିକିଏ ଟିକିଏ ପାଣି ପିଇ ପ୍ରାୟ ପାଞ୍ଚ ସାତ କୋଶ ବାଟ ପଳାଇ ଆସିଲେ। ସନ୍ଧ୍ୟା ହେବାରୁ ଜଙ୍ଗଲ ଭିତରେ ଗୋଟାଏ ଗଛମୂଳେ ସଭିଏ ଶୋଇଗଲେ। ସେତେବେଳେ ଆଉ ବଣ ଜନ୍ତୁଙ୍କୁ କି ଭୟ। ମଣିଷ ବଣ ଜନ୍ତୁ ଠାରୁ ବି ଆହୁରି ହିଂସ୍ର ହୋଇ ଉଠିଥାଏ। ସୁତରାଂ ମଣିଷକୁ ବେଶି ଡର।

ସକାଳ ହେଲାବେଳକୁ ସେମାନଙ୍କ ମଧ୍ୟରୁ ଦଶଜଣ ମରି ଶୋଇଥିଲେ। ମନ ଦୁଃଖରେ ମୁରୁଦାର ଗୁଡ଼ାକୁ ଗଛମୂଳେ ଛାଡ଼ି ଦେଇ ଏମାନେ ଆଗକୁ ଚାଲିଲେ।

ଅନେକ ରାସ୍ତା ଆସିବା ପରେ ଗୋଟାଏ ବର୍ମୀ ଗାଁ ପୁଣି ପଡ଼ିଲା। ଗାଁଟି ଛୋଟ। ନାମ ସାଂଫାଲି। ଏମାନଙ୍କର ପ୍ରାଣ ଯିବା ଉପରେ। ଗାଁ ଭିତରକୁ ଗଲେ ଯଦି ବର୍ମୀମାନେ ଦୟା କରି କିଛି ଖାଇବାକୁ ଦିଅନ୍ତି ତ ଭଲ, ନୋହିଲେ ମାରିଲେ ବି ଭଲ। କାରଣ ଖାଇବାକୁ ନ ପାଇ ଏମାନେ ନିଶ୍ଚୟ ମରିବେ। ସୁତରାଂ ଗାଁ ଭିତରକୁ ପଶିଲେ। ସୌଭାଗ୍ୟକୁ ଗାଁ ଲୋକମାନେ ଏମାନଙ୍କ ଉପରେ ଆକ୍ରମଣ ନ କରି ସ୍ଥାନ ଦେଲେ। ତଥାପି ଏମାନଙ୍କର ଡର ଥାଏ, ଯେ ଯେମିତି ଲୁଚାଇ ଛପାଇ କିଛି ପଇସାପତ୍ର ରଖିଥିଲେ ସେଥିରୁ କିଛି କିଛି ନେଇ ଟିକିଏ ଟିକିଏ ତେଲ ଓ ଭାତ, ଟିକିଏ ଟିକିଏ "ନାପି" (ଛୋଟ ଛୋଟ ମାଛକୁ ଗୋଟିଏ ବାଉଁଶ ନଳାରେ ଭର୍ତ୍ତି କରି କିଛି ଲୁଣ ଦେଇ ବାଉଁଶ ନଳାର ମୁହଁ ବନ୍ଦ କରି ରଖି ଦିଅନ୍ତି ସଢ଼ିଗଲା ପରେ ତାକୁ ଆଗୁର ରୂପେ ବର୍ମୀମାନେ ବ୍ୟବହାର କରିଥାନ୍ତି। ତାକୁ "ନାପି" କହନ୍ତି) ଦେଲେ ତେ ହେଲା ଅପାଳନ ଗାଙ୍କୁ ବଜୁଲି ଲକ୍ଷେ ଟଙ୍କା ପରି।

ସେଠାରେ କିଛି ପଢ଼ିବାରୁ ମନରେ ଟିକିଏ ଦମ୍ଭ ଓ ଦ୍ୱିଗୁଣ ଉତ୍ସାହ ଆସିଲା ଏବଂ ଖୁବ୍ ଚଞ୍ଚଳ ଗାଁ ଛାଡ଼ି ଚାଲି ଆସିଲେ । ପ୍ରାୟ ପାଞ୍ଚ, ଛଅ ମାଇଲ୍ ବାଟ ଆସିବା ପରେ ପୁଣି କୋଡ଼ିଏ ପଚିଶ ଜଣ ବନ୍ଧୁକଧାରୀ ବର୍ମୀମାନଙ୍କର ସମ୍ମୁଖୀନ ହେବାକୁ ପଡ଼ିଲା । ଏଥର ଆଉ ରକ୍ଷା ନାହିଁ ଭାବି ଏମାନେ ଠିଆ ହୋଇ ରହିଲେ । ବର୍ମୀମାନେ ଆସି ବାକି ଯାହା ସମ୍ବଳ ଏମାନଙ୍କର ଥିଲା ସବୁ ନେଇ ଚାଲିଗଲେ ଏବଂ ସମସ୍ତଙ୍କୁ ଲଙ୍ଗଳା କରି ଛାଡ଼ି ଦେଲେ ଏବଂ ଦଶଜଣଙ୍କୁ ପ୍ରାଣରେ ବି ମାରିଦେଲେ ।

ସବୁ ଆଶା ଭରସା ଏମାନଙ୍କର ପାଣି ଫୋଟକା ପରି ମିଳାଇ ଗଲା । ଜନ୍ମଭୂମି, ଭାରତବର୍ଷ ସୀମା ମାଡ଼ିବା ଏମାନଙ୍କ ପକ୍ଷେ ଆକାଶ କୁସୁମ ହୋଇ ରହିଲା । ସବୁ ଶେଷ—ଲଙ୍ଗଳା ହୋଇ ଏମାନେ ଆଗକୁ ଯିବେ ବା କିପରି ? ଅତ୍ୟାଚାରୀ ବର୍ମୀମାନେ ପିନ୍ଧିଲା ଲୁଗା ଖଣ୍ଡିକମାନ ଯେତେବେଳେ ନେଇଗଲେ ଏମାନଙ୍କର କେବଳ ଭଗବାନଙ୍କୁ ଡାକିବା ବ୍ୟତୀତ ଆଉ କିଛି ଉପାୟ ନ ଥିଲା । ସେଇଠି ସେମାନେ ବସି ରହିଲେ ।

ପ୍ରାୟ ୩।୪ ଘଣ୍ଟା ପରେ ସାତ ଆଠଜଣ ଜାପାନୀ ସିପାହୀ ସେଠାରେ ବି ଆସି ପହଞ୍ଚିଲେ । ଏମାନଙ୍କୁ କଣ କହିଲେ କିଛି ବୁଝି ହେଲା ନାହିଁ । ତା ପରେ ତାଙ୍କ ଭିତରୁ ଦୁଇଜଣ ଫେରି ଗଲେ । ବାକି ସବୁ ଏମାନଙ୍କୁ ଜଗି ରହିଲେ । ପ୍ରାୟ ଘଣ୍ଟାକ ପରେ ଯେଉଁ ଦୁଇଜଣ ଜାପାନୀ ସିପାହୀ ଫେରି ଯାଇଥିଲେ ସେମାନେ ମଟର ସାଇକେଲରେ ଆସିଲେ ଏବଂ ସଙ୍ଗରେ ଆଣିଥିଲେ କିଛି "କେରପାଲ" । ଖଣ୍ଡେ ଖଣ୍ଡେ କେରପାଲ ଏମାନଙ୍କୁ ଦେଲେ । ଏମାନେ ତାକୁ ଗୁଡ଼ାଇ ହୋଇ ପିନ୍ଧିବାରୁ ଏମାନଙ୍କୁ ନେଇଗଲେ ଗୋଟିଏ କ୍ୟାମ୍ପକୁ । ସେହି କ୍ୟାମ୍ପରେ ଆଗରୁ ପ୍ରାୟ ଏକଶହ ଲୋକ ଥିଲେ । କ୍ୟାମ୍ପ କହିଲେ ତାଳପତ୍ର ଘର, ଗୋଟିଏ ଲେଖାଏ ଝୁମୁଣ୍ଡିଆ ।

ସେଠାକୁ ଯିବା ପରେ ଏମାନଙ୍କୁ ଗଣ୍ଡାଏ କରି ଭାତ, ଟିକିଏ ଡାଲି ଖାଇବାକୁ ମିଳିଲା । ଦଶ ପନ୍ଦରଦିନ ପରେ ମୁଠାଏ ପେଟପୂରା ଖାଇବାକୁ ମିଳିଲା, ତାହାହିଁ ଯଥେଷ୍ଟ ଆନନ୍ଦ । ତା ପରେ ଏମାନଙ୍କୁ ଖଣ୍ଡେ କରି ପ୍ୟାଣ୍ଟ, ଗୋଟିଏ କରି ଗେଞ୍ଜି ମିଳିଲା । ତା ପରେ

ଜାପାନୀମାନଙ୍କ ପାଇଁ ରାସ୍ତା ମରାମତି କାମ କରିବା ଏବଂ ତାଙ୍କର ସପ୍ଲାଇ ଉପରେ ଖାଦ୍ୟ ପଦାର୍ଥ ରଖା ଥୁଆ କରିବା ଏମାନଙ୍କର ହେଲା କାମ ଏବଂ ତା ବଦଳରେ ଗଣ୍ଡାଏ ଖାଇବାକୁ ପାଇଲେ ଏମାନେ ।

ଏହିପରି ମାସେ ଖଣ୍ଡେ କଟିଗଲା । ପରେ ସେମାନେ ଶୁଣିବାକୁ ପାଇଲେ ଯେ ଜାପାନୀମାନେ ହାରୁଛନ୍ତି ଏବଂ ଏମାନଙ୍କର ଜନ ଓ ଧ ବଳ ଆସ୍ତେ ଆସ୍ତେ କ୍ଷୟ ହେଉଛନ୍ତି । ସେତେବେଳେ ସେମାନେ ପୁଣି ଜନ୍ମଭୂମିକୁ ପଳାଇବା ପାଇଁ ଶେଷ ଚେଷ୍ଟା କଲେ । ସେହି କ୍ୟାମ୍ପ ଠାରୁ ମଣିପୁର ପ୍ରାୟ ଏକଶତ ପଚିଶ ମାଇଲ ହେବ । ଏଥର ମାତ୍ର ୧୫ଜଣ ସାଥୀ ହେଲେ । ସେଥିରେ ଥିଲେ ଦଶଜଣ ପଞ୍ଜାବୀ ଓ ପାଞ୍ଚଜଣ ଓଡ଼ିଆ । ଦିନେ ରାତିରେ ପ୍ରାୟ ଦଶଟାବେଳକୁ ସେମାନେ କ୍ୟାମ୍ପ ଛାଡ଼ିଲେ । ସାଥିରେ କେବଳ ଧରିଥିଲେ କେତେଖଣ୍ଡ ରୁଟି ଓ କିଛି ରନ୍ଧା ଭାତ । କେବଳ ଡର, ଯଦି ସେମାନେ ପୁଣି ବର୍ମୀମାନଙ୍କ ହାତରେ ପଡ଼ନ୍ତି କିମ୍ବା ଜାପାନୀମାନେ ପୁଣି ତାଙ୍କୁ ଧରନ୍ତି । ଯଦି ସକାଳୁ ହାଜର ନେବା ସମୟରେ ଏମାନଙ୍କୁ ନ ପାଇ ପଛରେ ଏମାନଙ୍କୁ ଖୋଜି ବସନ୍ତି ତାହାହେଲେ ସବୁ ପୁଣି ଓଲଟା ହୋଇଯିବ । ଏହିସବୁ ଚିନ୍ତା କରି, ଏମାନେ “ଧର୍ମଗୁଡ଼ି” ପନ୍ଥା ଧରିଲେ । ରାତି ସାରା ଚାଲିଲେ ବଣ ଓ ମୁଣ୍ଡିଆ ରାସ୍ତା ଦେଇ । ସକାଳ ହେଲାରୁ ଏମାନଙ୍କୁ ବେଶି ଡର । ସୁତରାଂ କେବଳ ବଣ ପାହାଡ଼ ଦେଇ ଏମାନେ ଚାଲିଲେ ରାସ୍ତା ଛାଡ଼ି ।

ଦିନ ବାରଟା ପ୍ରାୟ । ଗୋଟାଏ ପାହାଡ଼ ଝରଣା ପାଖରେ ପହଞ୍ଚି, ଯାହା କିଛି ଆଣିଥିଲେ ସେଥିରୁ କିଛି କିଛି ଖାଇ, ପାଣି ପିଇ ଟିକିଏ ବସିଗଲେ । ପୁଣି ତିନିଟା ବେଳକୁ ପ୍ରାୟ ଚାଲିବା ଆରମ୍ଭ କଲେ ।

ରାତି ଆଠଟା ହେବ । ଗୋଟାଏ ଗାଁ ପାଖରେ ପହଞ୍ଚିଲେ । ଗାଁ ଅଛି ବୋଲି ଜାଣିବାରୁ ମାଟିତୁଣ୍ଡ କିଛି ନ କରି ଚୁପ୍ ହୋଇ ବସିଗଲେ । ପ୍ରାୟ ରାତି ଦଶଟାବେଳକୁ ଗାଁଟା ନିଶୂନ ପଡ଼ିଗଲା । ଖୁବ୍ ଧୀରେ ଧୀରେ ଗାଁ ପାଖ ଦେଇ ପଳେଇ ଆସିଲେ ।

ରାତ ସାରା ଚାଲିଲେ ସକାଳ ହୋଇ ନଥାଏ । ଝାଙ୍କୁଲ ଝାଙ୍କୁଲ ହୋଇ ରାତ ପାହୁ ଆସୁଥାଏ । ହଠାତ୍ ସେମାନଙ୍କ ଆଗରେ ପୁଣି ପାଞ୍ଚଜଣ ବର୍ମୀ ଆସି ଠିଆ ହୋଇଗଲେ । ଏମାନେ ଚଉଦଜଣ, ସେମାନେ ପାଞ୍ଚଜଣ ହେଲେ କଣ ହେବ, ତାଙ୍କ ହାତରେ ବନ୍ଧୁକ ଥାଏ । ଏମାନେ ରାତି ଅନିଦ୍ରା ଓ ଖାଇବା ବିନା ଲଢ଼ି ପାରିବେ ନାହିଁ । ତଥାପି ସାହସ ନ ହରାଇ ତାଙ୍କ ଆକ୍ରମଣର ପ୍ରତି ଆକ୍ରମଣ ପାଇଁ ତିଆର ହୋଇଗଲେ । ଏମାନଙ୍କୁ ଲଢ଼ିବା ପାଇଁ ପ୍ରସ୍ତୁତ ହେବାର ଦେଖି ବର୍ମୀମାନେ ଜଙ୍ଗଲ ଭିତରକୁ ପଶି ଗଲେ । ସେମାନେ ଚାଲିଗଲେ ଭାବି ଏମାନେ ପୁଣି ଆଗକୁ ଚାଲିଲେ । ପ୍ରାୟ ଅଧଘଣ୍ଟାଏ ପରେ ଏମାନେ ଦେଖିଲେ ସେମାନେ ପଛରୁ ଗୋଡ଼ାଉଛନ୍ତି ଏବଂ ସେମାନେ ଥିଲେ ପାଞ୍ଚଜଣ, ବର୍ତ୍ତମାନ ଦଶଜଣ ହୋଇ ଆସିଛନ୍ତି । ଏମାନେ ତେଣୁ ଦୌଡ଼ିବାକୁ ଆରମ୍ଭ କଲେ । କିନ୍ତୁ କେତେଦୂର ? ଶେଷରେ ବାଧ୍ୟ ହୋଇ ଏମାନେ ଠିଆ ହୋଇଗଲେ । ବର୍ମୀମାନେ ପୁଣି ପାଖକୁ ଆସି ଏମାନଙ୍କୁ ଲଙ୍ଗଳା କଲେ । କିନ୍ତୁ ଦେଖିଲେ ପଇସାପତ୍ର କିଛି ନାହିଁ ତେଣୁ ରାଗରେ ବର୍ମୀ ଭାଷାରେ ଗୁଡ଼ାଏ ଭଡ଼ର ଭଡ଼ର ହେଲେ । ବୋଧହୁଏ ତାଙ୍କୁ କିଛି ମିଳିଲା ନାହିଁ ।

ଏତିକିବେଳେ ମୋତେ ଯେଉଁ ବନ୍ଧୁ ତାଙ୍କର ଅନୁଭୂତି ବର୍ଣ୍ଣନା କରୁଥିଲେ, ସେ ବର୍ମୀ ଭାଷାରେ କହି ପକାଇଲେ "ଭାଇ କିଛି ନାହିଁ ଆମେ ପ୍ରାଣ ନେଇକି ପଳାଉଛୁ ଦେଶକୁ, ଛାଡ଼ି ଦିଅ ।"

ଏତିକିରେ ଜଣେ ବର୍ମୀ ରାଗରେ ଗୋଟିଏ ଛୁରି ଭୁଷିଦେଲା । ଭଗବାନଙ୍କ ଦୟାରୁ ଛୁରିଟା କାଖ ତଳକୁ ସିଧା ଭୁଷି ନ ହୋଇ କରପଟିଆ ଭୁଷି ହୋଇଗଲା ।

"ହେଇ ଦେଖନ୍ତୁ" କହି ଗଞ୍ଜାମି ବନ୍ଧୁ ଜଣକ ଦେଖାଇଲେ, ଦୁଇ ଇଞ୍ଚ ଲମ୍ବର ଗୋଟିଏ କ୍ଷତ ଚିହ୍ନ । ଛୁରି ବାଜି ଭୀଷଣ ରକ୍ତସ୍ରାବ ହେଲା । ହଠାତ୍ ବନ୍ଧୁମାନେ ଖଣ୍ଡେ ଲୁଗା ଚିରି ତାଙ୍କର କ୍ଷତ ସ୍ଥାନକୁ ବାନ୍ଧି ଦେଲେ ଏବଂ ଆଗକୁ ଚାଲିଲେ । ଦ୍ୱିପହର ବେଳକୁ ପ୍ରାୟ ଗୋଟିଏ ଝରଣା ପାଖରେ ସମସ୍ତେ ପୁଣି ବିଶ୍ରାମ ନେଲେ । ଛୁରି ମାଡ଼ ପରେ ଭୀଷଣ ରକ୍ତସ୍ରାବ ହେବାରୁ ଭଦ୍ରଲୋକ ବହୁତ ଦୁର୍ବଳ ହୋଇ

ପଡ଼ଥାନ୍ତି ଏବଂ ବଞ୍ଚିବାର ଆଶା ଛାଡ଼ି ଦେଇ ଝରଣାରୁ ପାଣି ପିଇ ଗଛ ମୂଳେ ପଡ଼ଥାନ୍ତି । ଅନ୍ୟ ସାଥୀମାନେ ଦସ୍ତୁ ପରବଶ ହୋଇ ଚିକିତ୍ସାର ଉପାୟ ଖୋଜି ବସିଲେ । ତାଙ୍କ ଭିତରୁ ଜଣେ ସରଦାରଜୀ ଦୁଇଖଣ୍ଡ ପଥରକୁ ଠୁକି ନିଆଁ ବାହାର କଲେ ଏବଂ ନିଜ ମୁଣ୍ଡରେ ବାନ୍ଧି ଥିବା ସଫା କନାଖଣ୍ଡକୁ ପୋଡ଼ି କ୍ଷତରେ ତାର କାଳି ଦେଇ ଜୋର୍‌ରେ ବାନ୍ଧି ଦେଲେ । ସେପରି କରିବାରୁ କ୍ଷତ ଯାଗାରୁ ରକ୍ତସ୍ରାବ ବନ୍ଦ ହେଲା ଏବଂ ସେମାନେ ପୁଣି ଆଗକୁ ଚାଲିଲେ ।

ସନ୍ଧ୍ୟା ପର୍ଯ୍ୟନ୍ତ ଚାଲିବା ପରେ ଏମାନେ ଗୋଟାଏ ବଡ଼ ରାସ୍ତା ପାଖରେ ପହଞ୍ଚିଲେ । ରାସ୍ତା ପାଖର ଜଙ୍ଗଲରେ ରାତି କାଟିଲେ । ସକାଳ ହେବାରୁ ସେହି ବଣ ଉହାଡ଼ରେ ପୁଣି ବସି ରହିଲେ । ଜାଣି ପାରିଲେ ଭାରତ ସୀମାରେ ଏମାନେ ପହଞ୍ଚିଛନ୍ତି ବୋଲି । ପ୍ରାୟ ଦିନ ଏଗାରଟା ବେଳକୁ ଗୋଟାଏ ମିଲିଟାରି ଟ୍ରକ ଆସିଲା ଏବଂ ଡ୍ରାଇଭର ଓ ହେଲ୍‌ପର ଦୁଇଜଣ ଏମାନଙ୍କୁ ଦେଖି ଗାଡ଼ି ଅଟକାଇଲେ ଏବଂ ସ୍ଵାଙ୍କର ଦୁଃଖ କାହାଣୀ ଶୁଣି ଟ୍ରକରେ ବସାଇ ଇଂଫାଲ ନେଇ ଆସିଲେ । ସେହିଦିନ ଠାରୁ ଏମାନେ ଏଠାରେ ରହି ପେଟ ପୋଷୁଛନ୍ତି ଏବଂ ଯେହେତୁ ସେତେବେଳକୁ ଇଂଫାଲକୁ ଶତ୍ରୁପକ୍ଷ ଘେରି ରହିଛନ୍ତି ଆଜି ସେମାନେ ଯାଇ ପାରି ନାହାନ୍ତି । ସେଦିନ କପେ କପେ ଚା' ଓ ଖଣ୍ଡିଏ ଲେଖାଏ ବିସ୍କୁଟ ଦେଇ ଓଡ଼ିଆ ଭାଇ ମାନଙ୍କୁ ବିଦାୟ ଦେଲି ।

ରାତି ପ୍ରାୟ ଗୋଟାଏ ହେବ । ଫୋନ ପାଖେ ବସି ଖଣ୍ଡେ ନଭେଲ ବହି ପଢୁଛି । ଫୋନ ବାଜିଉଠିଲା କମ୍ପାନୀ କମାଣ୍ଡର ଡାକିଲେ Who is there in the office ? Sing speaking କହିବାରୁ ଉତ୍ତର ଆସିଲା "Happy news—we are now free. Japanese have gone back, L. of C opened by the evening more in the morning. Good night. Have a good sleep" ମନ ଭାରି ଆନନ୍ଦ ଲାଗିଲା । ଆଉ ନ ଶୋଇ ଚିଠି ଲେଖି ବସିଲି ।

ଘେରରୁ ମୁକ୍ତି ପାଇବାରୁ ସଭିଙ୍କ ମନରେ ଅପୂର୍ବ ଆନନ୍ଦ । ଲୋକମାନେ ସବୁଠୁଁ ବେଶୀ ଖୁସି ହେଉଥାନ୍ତି । ଅଫିସରେ ସେ ଦିନ କିଛି କାମ ନାହିଁ । ଖୁସି ଗପଟା ବେଶ୍ ଜମିଛି । ପ୍ରାୟ ଦିନ ୩ଟା ହେବ, ମେଘ ଟୁପୁରୁ ଟୁପୁରୁ ବର୍ଷୁଛି । ହଠାତ୍ ସାଇରେନ୍ ବାଜି ଉଠିଲା । ସମସ୍ତେ ଚମକି ଉଠିଲେ । ଘେରରୁ ଅ.ଜି ମୁକୁଳୁ ମୁକୁଳୁ ଏ କି ଦଶା ? ଆଉ ସହିବାକୁ ସମୟ କାହିଁ ? ନିର୍ଦ୍ଦେଶକୁ ମାନି ଟ୍ରେଞ୍ଚ ଭିତରକୁ ଧାଇଁଲୁ । ଓଃ ସେ ଦିନ କି କଷ୍ଟ । ମୋ ସାଙ୍ଗରେ ଥିଲେ ୭ଜଣ ସିପାହୀ ଏବଂ ମୁଁ ତାଙ୍କର ପେଟ୍ରୋଲ ଲିଡ଼ର । ସେମାନଙ୍କ ପାଖରେ ଗୋଟିଏ ଗୋଟିଏ ରାଇଫଲ ଓ ୧୦ଟି କରି ରାଉଣ୍ଡ । ମୋ ପାଖରେ ଗୋଟିଏ ଷ୍ଟେନ୍‌ଗନ୍ ଓ ୭୪ଟି ରାଉଣ୍ଡ ଏବଂ ୭ଟି ହାତ ଫିଙ୍ଗା ବୋମା । ମୁଁ କେବେ ହାତ ବୋମା ଫିଙ୍ଗି ନଥିଲି । ହାତ ବୋମା ଫିଙ୍ଗିବା ଅଭ୍ୟାସ ନ କରି ଫିଙ୍ଗିବା ଟିକିଏ ବିପଜ୍ଜନକ । ଗ୍ରେନେଡ଼ଟିକୁ ଦାନ୍ତରେ ଭିଡ଼ ସଙ୍ଗେ ସଙ୍ଗେ ଫିଙ୍ଗିବା ଉଚିତ ଏବଂ ତାହା ନିହାତି କମ୍‌ରେ ୨୫ ହାତ ଦୂରରେ ପଡ଼ିବା ଦରକାର । ଫିଙ୍ଗିଦେଇ ସଙ୍ଗେ ସଙ୍ଗେ ମୁହଁ ମାଡ଼ି ପଡ଼ିଯିବା ଉଚିତ୍ । ଅର୍ଡ଼ର ଥିଲା ଦରକାରବେଳେ ହାତ ବୋମା ବ୍ୟବହାର କରିବାକୁ । ବୋମା ଗୁଡ଼ିକୁ "ହାଭର ସ୍ୟାକ"ରେ ପକାଇ ଦଉଡ଼ିଲୁ ଟ୍ରେଞ୍ଚ ଭିତରକୁ । ଆମ ଟ୍ରେଞ୍ଚଟି ମାଟି ଉପରେ ଖୋଲା ହୋଇଥିଲା । ବେକ ପର୍ଯ୍ୟନ୍ତ ଗଭୀର । ପାଣି ବର୍ଷୁଥିବାରୁ ଆଣ୍ଠୁଏ ପାଣି ଭର୍ତ୍ତି ହୋଇଛି । ଗୁଳିପଟେ ବାଙ୍କୁଣି ବଣ, ଟ୍ରେଞ୍ଚ ଭିତରେ ସମସ୍ତେ ଠିଆ ହୋଇ ଥାଉଁ । ଆମ ଭିତରୁ ଜଣେ ଜଣେ ସିପାହୀ ଟ୍ରେଞ୍ଚ ବାହାରେ ଠିଆ ହୋଇ ଗାର୍ଡ ଦେବାର କଥା । ଦୁଇଘଣ୍ଟା ଜଣଙ୍କର ଡିଉଟି । ମୋର ଡିଉଟି ଗାର୍ଡ ବଦଳାଇବା ଏବଂ ଶତ୍ରୁ ପକ୍ଷରୁ କାହାକୁ ଦେଖିଲେ ଫାୟାର ଅର୍ଡର ଦେବା ।

ଆଠ ବେଳକୁ ଟ୍ରେଞ୍ଚ ଭିତରେ ସାଇରେନ୍ ଶୁଣି "ହେଲମେଟ୍"ଟି ମୁଣ୍ଡରେ ଦେଇ ଆଣ୍ଠୁଏ ପାଣିରେ ଠିଆ ହେବାକୁ ପଡ଼ିଲା । ସିମିତ ଟୁପୁର ଟୁପୁର ବର୍ଷା ଲାଗିଥାଏ । କ୍ରମେ ସନ୍ଧ୍ୟା ହେଲା ଏବଂ ପାଣି ଗାତ ଭିତରେ ଜମା ହୋଇ ହୋଇ ଆସ୍ତେ ଆସ୍ତେ ଆଣ୍ଠୁଠାରୁ ଜଙ୍ଘ ପର୍ଯ୍ୟନ୍ତ ଉଠିଲା । ଉପର ପାଣି ଓ ତଳ ପାଣିରେ କ୍ରମାଗତ ଘଣ୍ଟା ଘଣ୍ଟା ଧରି ଠିଆ ହେବାରେ ବହୁତ କଷ୍ଟ । ଶୀତ ବଢ଼ିବାକୁ ଲଗିଲା ଏବଂ ବର୍ଷା ବି । ଖୁବ୍ ଦମ୍ଭରେ ସନ୍ଧ୍ୟାଠାରୁ ରାତି ବାରଟା ପର୍ଯ୍ୟନ୍ତ ଠିଆ ହୋଇ ପାରିଲି । ତା'ପରେ ମୁଁ ଟ୍ରେଞ୍ଚ ଉପରକୁ ଉଠି ଆସିଲି । ଡ଼ାଳଟିରେ ଥିବା ସିପାହୀ ପଟ୍ଟାରେ ବୁଡ଼ୁବୁଡ଼ୁଆ ବାଉଁଶ ବଣ ଭିତରେ ପଶି ବସିଲି ।

ରାତି ପ୍ରାୟ ଦୁଇଟା ହେବ ବର୍ଷା ଲାଗିଥାଏ । ଆମ କମାଣ୍ଡର ଖୋଷେଦ୍ୱା ଓ ପାଣି ଦେବାବାଲା ଲୁଚି ଲୁଚି ଆସି ଆମ ପାଖରେ ପହଞ୍ଚିଲା । ମେଘ ବର୍ଷୁଛି, କାଦୁଅ ମାଟି, ସେହି ମାଟି ଉପରେ ଭାତ ଗଣ୍ଡେ ଗଣ୍ଡେ ଅଜାଡ଼ି ଦେଲେ ଏବଂ ଭାତ ମଝିରେ ଟିକିଏ ଖାତ କରି ଡାଲି ଟିକିଏ ଟିକିଏ ଦିଆ ହେଲା । ତାକୁଇ ଖାଇବାକୁ ହେବ । ଦିନ ବାରଟାବେଳୁ ପାଣି ଭିତରେ ଗାତରେ ଠିଆହେବାକୁ ପଡ଼ିଥିଲା । ମଣି ପୁରର ଜଙ୍ଗଲ, ଟିକିଏ ପାଣି ପୁତୁରୁ ପୁତୁରୁ ହେଲେ 'ଯୋକ' ଭର୍ତ୍ତି । ପୁଣି କାଦୁଅ ଉପରେ ଗଣ୍ଡାଏ ଗଣ୍ଡାଏ ଭାତ । ସୁତରାଂ ବଞ୍ଚି ରହିବାକୁ ଖାଦ୍ୟର ଆବଶ୍ୟକତା ଖୁବ୍ ଜରୁରୀ । ସେଠାରେ ପରିଷ୍କାର ପରିଚ୍ଛନ୍ନତା ପ୍ରଶ୍ନ ଉଠେନି । ଆଜିବି ଯୁଦ୍ଧ ପରେ ସ୍ୱାଧୀନତାର ପନ୍ଦର ବର୍ଷ ବିତିଗଲେ ମଧ୍ୟ ମୁଁ ଯେତେବେଳେ ଦେଖେ ଯେ ନର୍ଦ୍ଦମା ପାଖରୁ କେତେ ସବୁହରା ତା'ର ଖାଦ୍ୟ ଯୋଗାଡ଼ କରୁଛି, ମୋତେ କିଛି ଆଶ୍ଚର୍ଯ୍ୟ ଲାଗେ ନାହିଁ ।

କୌଣସି ମତେ ଦୁଇଟା ଖାଇଦେବା ମାତ୍ରେ ସେହି କାଦୁଅ ଉପରେ ମେଘ ବର୍ଷା ଭିତରେ ବି ଆଖି ମାଡ଼ି ପଡ଼ିଲା । କିଛି ସମୟ ସେପରି ପଡ଼ି ରହିବା ପରେ ପୁଣି ଉଠିବାକୁ ପଡ଼ିଲା ଏବଂ ଟ୍ରେଞ୍ଚ ଭିତରେ ଠିଆ ହେବାକୁ ପଡ଼ିଲା । ସେହି ବର୍ଷା ଭିତରେ ଦିନ ଆଠଟା ପର୍ଯ୍ୟନ୍ତ ଠିଆ ହେବା ପରେ 'ଅଲ୍ କ୍ଲିଅର' ସାଇରେନ୍ ବାଜି ଉଠିଲା । ଠିକ୍ ପୁରା ଅଠେଇଶି ଘଣ୍ଟା ପରେ ।

ଟେଣ୍ଟକୁ ଫେରି ଆସିଲା ପରେ ସଙ୍ଗେ ସଙ୍ଗେ ଡାକ୍ତର ଆସି ସମସ୍ତଙ୍କୁ ପରୀକ୍ଷା କରି ଦେଖିଲେ ଏବଂ ଔଷଧ ଖାଇବାକୁ ଦେଲେ । ଔଷଧ ସଙ୍ଗେ ସଙ୍ଗେ ବ୍ରାଣ୍ଡି ଟିକିଏ ଟିକିଏ ଦିଆ ହେଲା । ସେଦିନ ପ୍ରଥମ କରି ମୁଁ ବ୍ରାଣ୍ଡି ଚାଖିଲି । ଅନେକ ବ୍ରାଣ୍ଡି ପିଇବାକୁ ମନା କଲେ । ଡାକ୍ତର ତାଙ୍କୁ ଡରାଇ କହିଲା—

"ନ ଖାଇଲେ ବାଣ୍ଡ ଇଞ୍ଜେକ୍ସନ୍ ଦେଇ ଦେବି" କହିବାରୁ ସମସ୍ତେ ଖାଇବାକୁ ବାଧ୍ୟ ହେଲେ । ରାତିରେ ଆଉ କଷ୍ଟ ଜଣାପଡ଼ିନା । ଚୁପ୍ ଚାପ୍ ଶୋଇ ପଡ଼ିଲୁ ।

**Imphal flap** ରୁ ବାହାରିବାର କୋଡ଼ିଏଦିନ ପରେ ଅର୍ଡର ହେଲା ଆଗକୁ ଯିବାକୁ—ମୋଟର **Convoy** ରେ ବଣ ଜଙ୍ଗଲ ଦେଇ ଚାଲିଲୁ ବର୍ମା ଅଭିମୁଖେ ।

ବର୍ମାରୁ କ୍ରମେ ଜାପାନୀମାନେ ପଛଘୁଞ୍ଚା ଦେଉଥାନ୍ତି ଓ ଆମେ ମାଡ଼ି ମାଡ଼ି ଚାଲିଥାଉଁ । ଟିଡ଼ିମ ପାର ହୋଇ 'ଚିଣ୍ଡ-ଜଇନ୍' ନଦୀ କୂଳରେ ପହଞ୍ଚିଲୁ । ବର୍ମାର ପ୍ରସିଦ୍ଧ ଟିକ୍ ସୁନ୍ଦର ; ମୂଲ୍ୟବାନ ବାଉଁଶ, ଚାଉଳ ଓ ରବର ଏହି ନଦୀ ଦେଇ ବିଭିନ୍ନ ପ୍ରାନ୍ତକୁ ଆସିଥାଏ । କାରଣ ବଣ ଓ ପାହାଡ଼ରେ ଭରା ବର୍ମାରେ ଆଭ୍ୟନ୍ତରୀଣ ଯାତାୟାତର ସୁବିଧା ବିଶେଷ ନ ଥାଏ । ସୁତରାଂ ଚିଣ୍ଡଜଇନ ନଦୀ ବର୍ମାର ଅର୍ଥନୀତି ଉପରେ ବିଶେଷ ପ୍ରଭାବ ପକାଇ ଥାଏ । ଚିଣ୍ଡ ଜଇନ ନଦୀର ପୋଲଟି ଡିନାମାଇଟ୍ ଦ୍ୱାରା ଆଗରୁ ଭାଙ୍ଗିଥାଏ । ଆମର **Sappers and miners** ମାନେ କାମ ଚଳାଇବା ପାଇଁ ଗୋଟିଏ **Temporary bridge** କରିଥାନ୍ତି ।

ଏହି ପୋଲ ଅତିକ୍ରମ କରି ଜଙ୍ଗଲ ଦେଇ ଯିବାରେ ଅଦ୍ଭୁତ ଦୃଶ୍ୟ ଦେଖିବାକୁ ମିଳିଲା । କେଉଁଠି ମଣିଷର ହାଡ଼ ଗଦା, ଓ କେଉଁଠି ଛିଣ୍ଡା ବାଳ ବୋଝ ବୋଝ । କେଉଁଠି ଛିଣ୍ଡା ପୋଷାକ ପଡ଼ି । ଦେଖିବାର କଥା ଗଣ୍ଡା ଗଣ୍ଡା ଭଙ୍ଗା ମୋଟର ଗାଡ଼ି ଓ ସାଇକେଲ । କୌଣସି ଗାଁର ଚିହ୍ନ ବର୍ତ୍ତି ନଥାଏ । ବାଉଁଶ ଚାଟି ଓ କାଠ ଉପରେ ଘର ସବୁ ନୂଆ ନୂଆ ହେଉଥାଏ । କିନ୍ତୁ ଦେଖିଲେ ଜଣା ପଡୁଥିଲା, ଏଗୁଡ଼ିକ ଦିନେ ସୁନ୍ଦର ଓ ସୁଖକର ବସ୍ତି ଥିଲା । କେତେକ ଓଡ଼ିଆଙ୍କୁ ସେଠିଦେଲେ

ବର୍ମା ଗାଁ ଗହଳରେ ଦେଖିଲି । ସେମାନେ ଯୁଦ୍ଧ ଆଗରୁ ଯାଇ ସେଠାରେ ଥିଲେ । ଏପରିକି ମୋତେ ଜଣାଗଲା, ବର୍ମାର ଲୋକ ସଂଖ୍ୟାରୁ ଏକରୁ ଦୁଇପର୍ସେଣ୍ଟ ଓଡ଼ିଆ, ବଉଳ ଯାଗା ଯଥା—ପେଓ୍ୱବଓ୍ୱେଯା, ହାଟକିନ୍, ହାଙ୍ଗୁ, ପ୍ରୋମ୍, ପେଗୁ ମାଣ୍ଡାଲେ, ମିଂଜାସ୍ଥାନ, ମିଟକିଲା ଓ ରେଙ୍ଗୁନ ପ୍ରଭୃତି ଜାଗାମାନଙ୍କରେ କିଛି କିଛି ଦିନ ରହି କାମ କରିବାକୁ ପଡ଼ିଲା । ସବୁଠାରୁ ବେଶୀଦିନ ରହିବାକୁ ପଡ଼ିଥିଲା, ମିଂଜାସ୍ଥାନ, ମାଣ୍ଡାଲେ ଓ ରେଙ୍ଗୁନ୍‌ରେ ।

ମିଂଜାସ୍ଥାନ ବର୍ମାର ଗୋଟିଏ ବଡ଼ ବାଣିଜ୍ୟ କେନ୍ଦ୍ର ଓ ସହର । ସେତେବେଳେ ବର୍ମାର ସବୁଠୁ ବଡ ସିଭିଲ୍ ଜେଲ ମିଂଜାସ୍ଥାନ ସହରରେ, ଏତେ ବଡ ସହର କିନ୍ତୁ ଜାପାନୀ ବୋମା ଓ ବ୍ରିଟିଶ୍ ବୋମା ମାଡ଼ରେ ତା'ର ସବୁ ନ ଥିଲା । ଆମେ ଯେଉଁ ସମୟରେ ସେତେବେଳେ ସେଠାରେ ପହଞ୍ଚିଲୁ କୌଣସି ଘର ନଥିଲା, କେବଳ ବଡ଼ଟ ଜେଲ୍ ଭଙ୍ଗାରୁଜା ହୋଇ ପଡ଼ିଥାଏ । ସୁତରାଂ ଏଇଟି ହେଲା ଆମର ଆଶ୍ରୟ ସ୍ଥଳ । କେତୋଟି ଘରେ ଆମର ଅଫିସ ହେଲା ଏବଂ ପ୍ରତ୍ୟେକ ଗୋଟିଏ ଗୋଟିଏ ସେଲ୍ ଦଖଲ କରି ରହିଲୁ । ରହିବା ପରେ ସେଠିକାର ଜେଲ ସୁପରିଣ୍ଟେଣ୍ଡେଣ୍ଟ ଆମ ସାଙ୍ଗରେ ଆସି କଥାବାର୍ତ୍ତା କଲେ ଏବଂ ଜେଲର ଇତିହାସ ବର୍ଣ୍ଣନା କରି ବସିଲେ ।

ଭାରତର ଗଣ ଆନ୍ଦୋଳନ ସମୟରେ ବଡ଼ ବଡ଼ ନେତାମାନଙ୍କୁ ଏହି ଜେଲରେ ଆଣି ରଖା ହୋଇଥିଲା । ବିଶେଷ କରି ନେତାଜୀ ସୁବାଷ ଚନ୍ଦ୍ର ବୋଷଙ୍କୁ ଏହି ଜେଲରେ ରଖା ହୋଇଥିଲା । ଜେଲର ମହାଶୟ କେଉଁ ସେଲ୍‌ରେ ନେତାଜୀ ରହୁଥିଲେ ଦେଖାଇ ଦେଲେ । ମୁଁ ସେହି ସେଲ ପାଖକୁ ଯାଇ ମୁଣ୍ଡିଆଟିଏ ମାରିଲି । ସେ ସେଲ୍ ଭିତରେ ଆଉ ଦୁଇଜଣ ତାଙ୍କର ବିଛଣା ଖୋଲି ସାରିଥିଲେ ସୁତରାଂ ମୁଁ ରହି ପାରିଲି ନାହିଁ ।

ମିଂଜାସ୍ଥାନରେ ରହିବା ସମୟରେ ଦଳ ଦଳ ହୋଇ ଜାପାନୀ ସବୁ ଧରା ହୋଇ ଆସୁଥାନ୍ତି । ସେମାନଙ୍କ ସଙ୍ଗରେ କଥାବାର୍ତ୍ତା କରିବା ଓ ତାଙ୍କ ଠାରୁ ଯୁଦ୍ଧ କାହାଣୀ ଶୁଣିବା ମୋର ଏକ ଦୈନନ୍ଦିନ କର୍ତ୍ତବ୍ୟ ହୋଇଥାଏ ।

ଜାପାନୀମାନଙ୍କ ଯୁଦ୍ଧ କୌଶଳ ଅପୂର୍ବ । ମାଣ୍ଡାଲେ ଠାରେ ଗୋଟିଏ ଫୋର୍ଟ ଦଖଲ କରି ଜାପାନୀମାନେ ଲଢୁଥାନ୍ତି । ପଛରୁ ସବୁ ସୈନ୍ୟ ହଟିଗଲେ । ମାଣ୍ଡୋଲେ ସହର ପୁଣି ବ୍ରିଟିଶ୍‌ମାନଙ୍କ ହାତରେ ପଡ଼ିଲା, କିନ୍ତୁ ଫୋର୍ଟ ଭିତରେ ୨୦ଜଣ ଜାପାନୀ ସିପାହୀ ରହିଗଲେ । ତାଙ୍କ ପାଖରେ ବହୁତ ଗୁଳି, ବାରୁଦ ଥାଏ । ମର୍ଟାର୍ ଓ ଷ୍ଟେନ୍‌ଗନ୍ ବି ଥାଏ । ସେହି କୋଡ଼ିଏ ଜଣ ବୀର ଜାପାନୀ ଜାଣିଥାନ୍ତି ସେମାନେ ବନ୍ଦୀ ; କିନ୍ତୁ ପାର ହେବା ପୂର୍ବରୁ ସେମାନେ ବ୍ରିଟିଶ ପକ୍ଷର ଦୁଇଶହ ସୈନ୍ୟଙ୍କୁ ମାରିଦେଲେ ।

ଯେତେବେଳେ ଜାପାନୀମାନେ ଜାଣିଲେ ଯେ ଦୁର୍ଗର ଚତୁଃପାର୍ଶ୍ୱେ ତାଙ୍କୁ ସୈନ୍ୟମାନେ ଘେରି ଗଲେଣି ଏବଂ ଉପରୁ ଅବିଶ୍ରାନ୍ତ ବୋମା ବର୍ଷଣ ହେତୁ ଦୁର୍ଗଟି ଭଙ୍ଗା ସ୍ତୂପରେ ପରିଣତ ହେଉଛି, ସେମାନେ ସାହସ ନ ହରାଇ, ଧଳା ପତାକା ନ ଦେଖାଇ, ଆଖି ବୁଜା ଫାୟାର୍ କରିବାକୁ ଲାଗିଲେ । ଦୁର୍ଗର ବାହାରେ ଥିବା ବ୍ରିଟିଶବାହିନୀମାନେ ଭାବୁଥାନ୍ତି, ଦୁର୍ଗ ଭିତରେ ବହୁ ଜାପାନୀ ସେନ୍ୟ ବୋଧହୁଏ ଅଛନ୍ତି । ସୁତରାଂ ସେମାନେ ସ୍ତୋକସନ୍ ନେଇ ଖୁବ୍ ସାବଧାନତାର ସହିତ ଫାୟାର୍ କରୁଥାନ୍ତି । ଏଣେ ଭଙ୍ଗା ଦୁର୍ଗ ଭିତରେ କୋଡ଼ିଏ ଜଣ ଜାପାନୀ ବିନା ସେନାପତିରେ ଆଖିବୁଜା ଫାୟାର ଚଲାଇଥାନ୍ତି । ବ୍ରିଟିଶ ସୈନ୍ୟମାନେ ଉକ୍ତ ଦୁର୍ଗଟିକୁ ଘେରାଉ କରି ଚବିଶ ଘଣ୍ଟା ପଡ଼ି ରହିଲେ, ଏଣେ କୋଡ଼ିଏ ଜଣ ଜାପାନୀ ହାତ ଓ ଗୋଡ଼ ପଟିକୁ ଫିଟାଇ ଗୋଡ଼ରେ ଟ୍ରିଗରକୁ ଲଗାଇ ବାନ୍ଧିଥାନ୍ତି ସୁତରାଂ ହାତ ଗୋଡ଼ ଉଭୟେ ଗୁଳି ଥାଏ—ବାହାରକୁ ଜଣା ପଡୁଥାଏ ଯେପରି ଶହ ଶହ ଲୋକ ଭିତରେ ରହି ଫାୟାର କରୁଛନ୍ତି ।

ଶେଷରେ ଚବିଶ ଘଣ୍ଟା ଯୁଦ୍ଧ ପରେ ଉପରୁ ବୋମା ମାଡ଼ରେ ସବୁ ଜାପାନୀ ମରିଗଲେ ବାକି ଦୁଇଜଣ ରହିଗଲେ—ସେମାନେ ବି ଖଣ୍ଡିଆ, ଘାଏଲ ହୋଇ ବିନା ଖାଦ୍ୟରେ ପଡ଼ିଥାନ୍ତି, ତଥାପି ତାଙ୍କର ସାହାସ ଯାଇ ନ ଥାଏ । ଯେତେବେଳେ ହାତ ଗୋଡ଼ ନ ଚଳିଲା ସେ ଦୁଇଜଣ ପଡ଼ିରହି ଦାନ୍ତ ସାହାଯ୍ୟରେ ରସି ଲଗାଇ ଟ୍ରିଗାର ଟିପୁ ଥାନ୍ତି ଓ ଅଟୋମେଟିକ୍ ଫାୟାର ହେଉଥାଏ । ଶେଷରେ ଦୁର୍ଗ ଭିତରକୁ

ପଶିଲାବେଳକୁ ବ୍ରିଟିଶ ବାହିନୀ ଦେଖିଲେ ମାତ୍ର ୨୦ଜଣ ସିପାହୀ ପ୍ରାୟ ହଜାରେ ଜଣ ସୈନ୍ୟଙ୍କୁ ଚବିଶ ଘଣ୍ଟା କାଳ ଅଟକେଇ ଦେଲେ । ଧରାହେଲା ବେଳକୁ "ସୁଇସାଇଡାଲ" ପିସ୍ତଲରେ [ ସୁଇସାଇଡାଲ ପିସ୍ତଲ ଜର୍ମାନୀ ଓ ଜାପାନୀମାନଙ୍କ ହାତରେ ପ୍ରାୟ ଥାଏ । ତାର ଲମ୍ବ ପ୍ରାୟ ୨ରୁ ୪ଇଞ୍ଚ ଏବଂ ମୋଟା ପ୍ରାୟ ସାଧାରଣ ଲୋକଙ୍କର କାଣି ଆଙ୍ଗୁଠି ପରି ହେବ । ଶତ୍ରୁ ହାତରେ ବନ୍ଦୀହୋଇ ମାତୃଭୂମିର ପତନ ପାଇଁ ଅନେକ ଗୁପ୍ତ ଖବର କାଳେ ପ୍ରକାଶ ହୋଇପିବ ସେଥିପାଇଁ ସେମାନେ ତାକୁ ଶେଷ ମୁହୂର୍ତ୍ତରେ ମୁଣ୍ଡ ପାଖକୁ ନେଇ ଟିପିଦିଅନ୍ତି ଓ ମରିଥାନ୍ତି ] ନିଜର ଜୀବନ ନେଇ ସାରିଥିଲେ ।

ମିଙ୍ଗ୍ଲାଡନରେ କେତେଦିନ ରହିବା ପରେ ମୋତେ ପେଓବେକୁ ଯିବାକୁ ପଡ଼ିଲା । ପେଓବେ ଗୋଟିଏ ଛୋଟିଆ ସହର ସେଠାରେ କଳୁ ବର୍ମାର ବୃହତ୍ତ ତୈଳ କେନ୍ଦ୍ର ଅବସ୍ଥିତ । ଏହି କେନ୍ଦ୍ର ମାନଙ୍କରୁ ସାଧାରଣତଃ ସମସ୍ତଙ୍କୁ ତେଲ ଯୋଗାଣ ହୋଇଥାଏ । ସେଠାରୁ ଉଡ଼ାଜାହାଜ ପେଟ୍ରୋଲ ବି ଦିଆ ହେଉଥାଏ । ପ୍ରତିଦିନ ପ୍ରାୟ ୨୦।୨୫ଟି ଉଡ଼ାଜାହାଜ ଗୁଡ଼ିକ ସେଠାରୁ ତେଲ ନିଅନ୍ତି । ମୁଁ ଏହି କେନ୍ଦ୍ରର ଭାରପ୍ରାପ୍ତ କର୍ମଚାରୀ ରୂପେ କାର୍ଯ୍ୟ କରୁଥାଏ । ମୋ ତଳେ ତିନିଜଣ ସିପାହୀ ଓ ଜଣେ ଲନ୍ସ ନାଏକ । କୁଲିମାନଙ୍କ ଦ୍ୱାରା କାମ ହେଉଥାଏ । ବର୍ମୀଙ୍କ କୁଲି ବିଶେଷ ଭାବେ ସ୍ତ୍ରୀ ଲୋକ । ପ୍ରଥମ ଦିନ ସକାଳେ ସିପାହୀମାନେ ଯେତେବେଳେ କୁଲି ଧରି ଆସିଲେ, ସେମାନଙ୍କର ପୋଷାକ ଦେଖି ସେମାନଙ୍କୁ କୁଲିବୋଲି ବିଶ୍ୱାସ ହେଲାନି ।

ସମଗ୍ର ବର୍ମା ଉପର୍ଯ୍ୟୁପରି ବୋମାମାଡ଼ରେ ବିଧ୍ୱସ୍ତ ହୋଇ ଯାଇ ଥାଏ । ଗୃହଆଡ଼େ ଅନାଟନ କିନ୍ତୁ ସିଲ୍କ ପୋଷାକ ଓ ପ୍ରସାଧନର କମ୍ତି ନାହିଁ । ଆମ ଦେଶର କୁଲିମାନଙ୍କୁ ଏମାନଙ୍କ ସଙ୍ଗେ ତୁଳନା

ଢଙ୍ଗ ବର୍ମିଜ୍ । ଏମାନଙ୍କ ଭିତରେ ବେପରୁଆ ମନୋଭାବ । ଚିରୁଟ୍ ନିଶ୍ଚୟ ଖିଆ ହେବ—ସିଲ୍କ ପୋଷାକ ନିଶ୍ଚୟ ପିନ୍ଧାହେବ—ଖିଆ ପଛକେ ହେଉ ଖାଲି "ନାପି" ଆଉ ଭାତ । ଯେଉଁମାନେ ବର୍ମା, ଇଣ୍ଡୋନେସିଆ, ସିଙ୍ଗାପୁର କିମ୍ବା ଦକ୍ଷିଣପୂର୍ବ ଏସିଆର ଯେ କୌଣସି ଯାଗା ଯୁଦ୍ଧ ସମୟରେ ଓ ଯୁଦ୍ଧ ପରେ ମରେ ଦେଖିଥିବେ, ସେମାନେ ଜାଣି ପାରିବେ ଯେ ବିଳାତି ଫେସନ ଭାରତୀୟ ତୁଳନାରେ କେତେ ବେଶୀ, ସେମାନେ ଅନୁକରଣ କରନ୍ତି ।

ଏହି ସମୟରେ ନୈତିକ ଅଧୋଗତି ଚରମ ସୀମାରେ ପହଞ୍ଚି ଥିଲା । ଆଜି ଯେତେବେଳେ ପୃଥିବୀ ଏକ ଅନାଗତ ମହାଯୁଦ୍ଧର ସମ୍ଭାବନାର ଦ୍ୱାର ଦେଶରେ, ସେତେବେଳେ ସେହି ସମୟର ସ୍ମୃତି ମନେ ପଡ଼ି ଦେହ ଶିହରି ଉଠୁଛି । ଯଦି ପ୍ରକୃତରେ ଯୁଦ୍ଧ ହୁଏ (ଈଶ୍ୱର ନ କରନ୍ତୁ) ତେବେ ସମ୍ପୃକ୍ତ ଦେଶ ସବୁର ଇଜ୍ଜତ ବୋଲି କିଛି ହୋଇ ରହିବନି । ଏକ ବିଶାଳ ବର୍ଣ୍ଣ ଶଙ୍କରଜାତି ଗଢ଼ି ହୋଇଯିବ । ପେଓବୟସ୍କ କାହିଁକି, ବର୍ମାର ପ୍ରତ୍ୟେକ ସହରର ପ୍ରତ୍ୟକ୍ଷ ଅନୁଭୂତି ମୋ ଆଖି ଆଗରେ ଜଳ ଜଳ ହୋଇ ନାଚି ଯାଉଚି । ଅଠର ବର୍ଷ ତଳର କଥା ମୁଁ କହୁଛି ଆଜିକାଲି ସମୟ ଅନେକ ବଦଳି ଗଲଣି ।

ଚାର୍ଜ ନେବାର ପ୍ରଥମ ଦିନ ଉପର ଓଳି ୬ଟା । ମୋ ଟେଣ୍ଟକୁ ଚାରିଜଣ ସୁନ୍ଦରୀ ବର୍ମୀଜ ଯୁବତୀ ପଶି ଆସିଲେ । ବର୍ମୀ ଭାଷାରେ କ'ଣ କହିଗଲେ ବୁଝି ପାରୁ ନ ଥାଏ । ଖାଲି ହସୁଥାନ୍ତି । ମୁଁ କିଛି ନ କହିବାରୁ ଜବରଦସ୍ତି ଚାରିଜଣ ଯାକ ମୋ ଖଟ ଉପରେ ବସିଗଲେ । ମୁଁ ବାଧ୍ୟହୋଇ ଏଟି ଟୁଲ୍ ଉପରେ ବସି ରହିଲି । ଆଭାଷ ଯଦିଓ ପାଇଗଲି ତଥାପି ମୋର ଅର୍ଡର୍ଲି ସିପାହୀକୁ ଡାକି ପଚାରିଲି "ଏମାନେ ସବୁ କିଏ ଓ କାହିଁକି ଆସିଛନ୍ତି" ?

ସେ କହିଲା, "ହଜୁର ! ଯଦି ଚାହିଁବେ ତେବେ ଆହୁରି ବି ବହୁତ ଏ ଟେଣ୍ଟ ଭିତରକୁ ଆସିବେ । ଆପଣଙ୍କର ପୂର୍ବ ଅଫିସର ଖୁବ୍ ମଉଜ କରୁଥିଲେ । ଏମାନେ ଜାଣନ୍ତି ।"

ବିଶେଷ କିଛି କହିବା ପୂର୍ବରୁ ସେମାନେ ମୋ ସିଗାରେଟ୍ କେସରୁ ଖଣ୍ଡିଏ ଖଣ୍ଡିଏ ନେଇ ଟାଣିବା ଆରମ୍ଭ କଲେଣି । ମୁଁ

ସେତେବେଳେ କହେ, "ମେରା ସମଝମେ କୁଛ୍ ନେହିଁ ଆତା, ଆପ୍‌ଲୋକ କ୍ୟା ବୋଲତେ ହେ''। ଉତ୍ତରରେ ସେମାନେ ସବୁ କହନ୍ତି—

"ଥ୍ୟାଙ୍କ୍‌ଇଉ''।

ଶେଷରେ ଅର୍ଡର୍ଲି ତା'ର ଖଣ୍ଡିଆ ବର୍ମୀଜ ଭାଷାରେ ତାଙ୍କୁ ବୁଝାଇଲା। ସେମାନେ କିନ୍ତୁ ଟେଣ୍ଟ ଛାଡ଼ିବାକୁ ନାରାଜ। ମୋ କଥା ଶୁଣି ସେମାନେ ଯେତେବେଳେ 'ଥାଙ୍କଇଉ' କହନ୍ତି ମୋତେ ହସ ଲାଗେ—ମୁଁ ହସେ, ପୁଣି ସେମାନେ କହନ୍ତି "ଥାଙ୍କଇଉ''। ସେମାନେ ଟେଣ୍ଟ ଛାଡ଼ିବାକୁ ନାରାଜ ହେବାରୁ ମହା ମୁସ୍କିଲରେ ପଡ଼ିଲି। ବାଧ୍ୟ ହୋଇ କେତୋଟି ଟଙ୍କା ବାହାର କରି ତାଙ୍କ ହାତରେ ଦେଲି, କିନ୍ତୁ ସେମାନେ ନେଲେ ନାହିଁ। ଟଙ୍କା ମୋ ଉପରକୁ ପକାଇ ଦେଇ ବସି ରହିଲେ। ମୋ ଅର୍ଡର୍ଲି କହିଲା—

"ଆଜ୍ଞା, ସେମାନେ ମୁଠାଏ ଖାଇବାକୁ ପାଉନାହାନ୍ତି। ପଇସା ଅପେକ୍ଷା ଖାଦ୍ୟ କିଛି ତାଙ୍କର ଦରକାର''।

ମୋ ପାଖରେ କିଛି ନ ଥିଲା। ଖାଲି ଫଳ ଟିଣ କେତୋଟି ଥାଏ, ଆଉ ସିଗାରେଟ୍ ପ୍ରାୟ ପଚିଶ ପ୍ୟାକେଟ ଥାଏ, ବିସ୍କୁଟ ଆଉ ଦୁଇ ପ୍ୟାକେଟ ଥାଏ। ହାଭରସ୍ୟାକ ଖୋଲି ଆଠ ପ୍ୟାକେଟ ସିଗାରେଟ, ଚାରୋଟି ଫଳଟିଣ ଓ ଦୁଇପ୍ୟାକେଟ ବିସ୍କୁଟ ସେମାନଙ୍କ ଆଗରେ ରଖି ଦେଲି ଏବଂ ସେତକ ନେଇ ଚାଲିଯିବାକୁ ଇସାରା ଦେଲି।

ସଙ୍ଗେ ସଙ୍ଗେ "ଥାଙ୍କଇଉ, ଥାଙ୍କଇଉ'' କହି ତାକୁ ଝାମ୍ପଟି ସେମାନେ ମାରି ନେଲେ ଏବଂ ଟେଣ୍ଟ ଭିତରୁ ବାହାରି ଗଲେ। ଗଲା ବେଳକୁ ମୋର ସାବୁନ ସହିତ ସାବୁନ କେଶ, ପାଉଡର ଡବା ଓ ସ୍ନୋ ଶିଶିଟି ବି ଉଠାଇ ନେବାକୁ ଭୁଲିଲେ ନାହିଁ। ରକ୍ଷା ମିଳିଲା। ଗାର୍ଡ଼କୁ ସେହି ମୁହୂର୍ତ୍ତଠାରୁ ଅର୍ଡର ଦେଲି ମୋର ବିନା ଅନୁମତିରେ ମୋର ତମ୍ବୁର ପଚିଶ ଗଜ ଭିତରେ କୌଣସି ଲୋକ ଯେପରି କୌଣସି ସମୟରେ ପ୍ରବେଶ ନ କରନ୍ତି।

ତହିଁ ଆରଦିନ ସକାଳ ୬ଟାରେ ମୁଁ ଡିଉଟିକୁ ବାହାରିଲି। ଡିପୋ ଭିତରେ ବୁଲୁଥାଏ। ପ୍ରାୟ ୮, ୯ ବର୍ଷର ଗୋଟିଏ ପିଲା ମୋ ପାଖକୁ ଆସି କହିଲା—

"ଗୁଡ଼ମର୍ଣ୍ଣିଂ ସାର'' !

ଇଂରାଜୀ ଶୁଣି ମୋର କୌତୁହଳ ହେଲା । ଇଂରାଜୀରେ ପଚାରିଲି ତୁମର ନାମ କ'ଣ ? ଘର କେଉଁଠି, ବାପା କ'ଣ କରନ୍ତି ? ଇତ୍ୟାଦି ।

ସେ ସବୁ ଇଂରାଜୀରେ ଉତ୍ତର ଦେଲା ଏବଂ କହିଲା ମୋର ବାପା, ମା, ଭାଇ ଓ ଭଉଣୀ ଅଛନ୍ତି । ମୋର ବାପା ଜଣେ ମାଜିଷ୍ଟ୍ରେଟ ଥିଲେ । ମୁଁ ମିଂଜଫୁାନର କନଭେଣ୍ଟରେ ପଢୁଥିଲି ।

ସବୁ ଉତ୍ତର ଦେଇ ସାରିବାପରେ ତା'କୁ ଚେଷ୍ଟାକୁ ଡାକି ନେଲି ଏବଂ ଗୋଟିଏ ଫଳ କିଣି ଦେଲି । ସେ ତାପରେ କହିଲା—

"ସାର, କିଛି ସିଗାରେଟ ଦିଅନ୍ତୁ ମୋ ବାପାଙ୍କ ପାଇଁ ।''

ଦେଲି । ସେ ନେଇ ଚାଲିଗଲା ମୁଁ ପୁଣି ମୋ କାମରେ ଲାଗିଲି ପ୍ରାୟ ଅଧଘଣ୍ଟା ପରେ ଫେରି ଆସିଲା—ହାତରେ ଖଣ୍ଡିଏ ଇଂରାଜୀରେ ଲେଖା ଚିଠି ।

ଲେଖା ଅଛି—"ମହାଶୟ, ଆପଣଙ୍କ ଜିନିଷ ପାଇ ଧନ୍ୟବାଦ । ବର୍ତ୍ତମାନ ମୋର ସ୍ୱାମୀ ଘରେ ନାହାନ୍ତି, ନୋହିଲେ ଆପଣଙ୍କ ପାଖକୁ ଯାଇଥାନ୍ତେ । ଅନୁଗ୍ରହ କରି ୬ଟା ବେଳକୁ ଆମ ଘରକୁ ଆସିବେ । ଚା' ପାଇଁ ନିମନ୍ତ୍ରଣ ରହିଲା । ଇତି

ଆପଣଙ୍କର—ଶ୍ରୀମତୀ ସାୟେଟ (Zayet)"

ଯିବାକୁ ପ୍ରତି ଶ୍ରୁତି ଦେଲି । ପିଲାଟି ଗଲା ।

ପ୍ରଥମ ନିମନ୍ତ୍ରଣ ଜଣେ ଶିକ୍ଷିତ ବର୍ମୀଙ୍କ ଘରକୁ । ବହୁତ କିଛି ଜାଣିବାର ଆଗ୍ରହ ରଖି ୬ଟା ବେଳକୁ ଗଲି ତାଙ୍କ ଘରକୁ । ଯେ ପିଲାଟି ସାଢ଼େ ୪ୟାଟା ବେଳୁ ବସିଥାଏ ମୋ ପାଖରେ । ତାଙ୍କ ଘରକୁ ଯିବି ବୋଲି କ୍ୟାଣ୍ଟିନରୁ ସାବୁନ, ପାଉଡ଼ର, ବିସ୍କୁଟ କିଣି, ପାଉଁରୁଟି, ବଟର କିଣି ଓ କିଛି ଫୁଟ କିଣି କାଣି ରଖିଥିଲି । ପ୍ରାୟ ଏକ ଫର୍ଲଙ୍ଗ ବାଟ ପରେ ତାଙ୍କ ଘର ପଡ଼ିଲା । ଦୁଇମହଲା କୋଠା । ବୋମା ମାଡ଼ରେ ଭାଙ୍ଗି ପଡ଼ିଛି । ମୋଟର ଗ୍ୟାରେଜ ଅଛି ଏବଂ ଗ୍ୟାରେଜ ଭିତରେ ମୋଟର ମଧ୍ୟ ଅଛି । ଭଙ୍ଗା ଘର ଭିତରେ କାଠ ଓ ବାଉଁଶରେ ନୂଆ ଘର ତିଆରି ହୋଇଛି ।

ସାପ୍ତେଟ ବଂଶର ସମସ୍ତେ ବାହାରକୁ ଆସି ଅଭିବାଦନ ଜଣାଇବା ପରେ ବସିଲି ଏବଂ ପ୍ୟାକେଟଟି ଶ୍ରୀମତୀ ସାପ୍ତେଟଙ୍କ ହାତରେ ଦେଲି । ମୋ ସାମନାରେ ପ୍ୟାକେଟଟି ଖୋଲି ଦେଖି ଶତ ଶତ ଧନ୍ୟବାଦ ଜଣାଇବା ସଙ୍ଗେ ସଙ୍ଗେ ସମସ୍ତେ କହିଲେ—

"ମହାଶୟ" ଏ ସବୁ ଜିନିଷ ଆମକୁ ସ୍ୱପ୍ନପରି ଲାଗୁଛି । ୧୯୩୯ ପରେ ଏ ସବୁ ଜିନିଷ ଆଜି ପ୍ରଥମ ଦେଖୁଛୁଁ ।

ତାପରେ ସେ ବର୍ଣ୍ଣନା କଲେ ବ୍ରିଟିଶ ଅତ୍ୟାଚାର ଓ ଜାପାନ ଅତ୍ୟାଚାର କଥା—କେତେ ଝଡ଼ ବହି ଯାଇଛି ସେମାନଙ୍କ ଉପରେ । ଜାପାନୀ ଶାସନରେ ନୋଟ ଲକ୍ଷ ଲକ୍ଷ ଟଙ୍କାର ଛପାହୋଇ ବଜାରକୁ ଛଡ଼ା ହେଲା—ଜିନିଷ ମୋଟେ ନାହିଁ । ଗୃହ କାମ ପ୍ରାୟ ବନ୍ଦ କହିଲେ ଚଳେ । ଯଦି କାହିଁ କିଏ ଟିକିଏ କେଉଁ ଜଙ୍ଗଲ ଭିତରେ ଗୃହ କରିଚି, ତାକୁ ବନ୍ୟ ଜନ୍ତୁ ଅପେକ୍ଷା ମଣିଷମାନଙ୍କର ଅତ୍ୟାଚାରରୁ ରକ୍ଷା କରିବା ଅତି ଦୁଃସାଧ୍ୟ, ସୁତରାଂ ପେଟପାଇଁ ଯେ କୌଣସି କାମ କରିବା ପାଇଁ ସେମାନେ ତିଆରି । ଗଣ୍ଡେ ଚାଉଳ ପାଇଁ ଅତି ସହଜରେ ନରହତ୍ୟା କରିବାକୁ ଯୁଦ୍ଧ କାଳୀନ ମଣିଷ ପ୍ରସ୍ତୁତ । ଚାଉଳ, ଚିନି, ଲୁଣ, ଘି ଓ ବସ୍ତ୍ର ବଡ଼ ଦୁଃଷ୍ପ୍ରାପ୍ୟ ସେତେବେଳ ବଜାରରେ । ଇଙ୍ଗ୍ଲାଣ୍ଡ ଚକା କଣା ଚାଲିଛି ଅବାଧରେ । ଲକ୍ଷ ଲକ୍ଷ ମିଲିଟାରୀ ବର୍ମାର ଗାଁ ଗହଳରେ ଭର୍ତ୍ତି ଏବଂ ସେମାନଙ୍କ ଯୋଗୁ ଏମାନେ ବଞ୍ଚିଛନ୍ତି ।

ଏସବୁ ବିଷୟ ଶୁଣିଲି ଏବଂ ପୂର୍ବ ଦିନର ଅଭିଜ୍ଞତାରୁ ସବୁ ବିଶ୍ୱାସ କଲି । ଭଦ୍ରଲୋକଙ୍କର ଦୁଇଟି ଝିଅ ଥିଲେ । ସେମାନେ ସିନିଅର କ୍ୟାମ୍ବ୍ରିଜରେ ପଢୁଥିଲେ । ମୋ ସଙ୍ଗେ ଖୁବ୍ ଆଳାପ ଜମାଇଲେ । ଭଦ୍ରଲୋକ କିଛି ସମୟ ବସାଇବା ପରେ ତାଙ୍କ ସ୍ତ୍ରୀଙ୍କୁ ଧରି ବୁଲିବା ପାଇଁ ବାହାରିଲେ ଏବଂ କହିଗଲେ—

"ମହାଶୟ ଆପଣ ଝିଅମାନଙ୍କ ସଙ୍ଗେ ଗଳ୍ପ କରନ୍ତୁ କିମ୍ବା ବୁଲି ଯା'ନ୍ତୁ । ଆପଣ ଅତି ଭଦ୍ରଲୋକ । ଖୁବ୍ କମ୍ ଶିକ୍ଷିତ ଭଦ୍ରଲୋକଙ୍କର ପରିଚୟ ଆମେ ପାଇଚୁ ।"

ମୁଁ ଟିକିଏ ବସି ଝିଅ ଦୁଇଟିଙ୍କ ଠାରୁ ବିଦାୟ ନେଇ

ବାହାରକୁ କିନ୍ତୁ ସେ ଦୁଇଜଣ ମୋ ସଙ୍ଗେ ମୋ କ୍ୟାମ୍ପପର୍ଯ୍ୟନ୍ତ ଆସିଲେ । ବାଟରେ ସ୍ଥାଙ୍ଗୁ ସିଆଙ୍ଗୁ କଥାବାର୍ତ୍ତା ପରେ ଝିଅମାନେ ପଚାରିଲେ—

"ମିଷ୍ଟର ସିଙ୍ଗ, ଆପଣଙ୍କର ନିଜ ଦେଶରେ ତ ନିଶ୍ଚୟ ଗାର୍ଲ୍ ଫ୍ରେଣ୍ଡ ଥିବେ । ଆପଣ ସେମାନଙ୍କ ଠାରୁ ଶିଟି ପାଆନ୍ତି କି ନାହିଁ ? ଆପଣ ବଲ୍‌ଡାନ୍‌ସ ଜାଣନ୍ତି କି ନାହିଁ ? ଆମର ଗ୍ରାମଫୋନ୍ ଅଛି, ଆପଣ ନୂଆ ନୂଆ ରେକର୍ଡ ଓ ପିନ୍ ଆଣନ୍ତୁ । ନାଚିବା ।"

ଏସବୁ ଶୁଣି ପୁଣି ଗତକାଲି କଥା ମନେ ପଡ଼ିଲା ଏବଂ ସଙ୍ଗେ ସଙ୍ଗେ ମୋ ଠାରୁ ଜିନିଷ ଛଡ଼ାଇବାର ଇଏ ଏକ ଫନ୍ଦି ବୋଲି ମୁଁ ବୁଝିଲି । କୌଣସି ମତେ ଭବିଷ୍ୟତ ପାଇଁ ସେମାନଙ୍କୁ ଅପେକ୍ଷା କରିବାକୁ କହି ସେଦିନ ବିଦାୟ ନେଲି ।

ତହିଁ ଆରଦିନ ସେ ଦୁଇ ଝିଅ ଆଉ ଚାରିଜଣ ଝିଅଙ୍କୁ ଧରି ଆସି ମୋ କ୍ୟାମ୍ପରେ ହାଜର । ସମସ୍ତେ ଇଂରାଜୀ କହନ୍ତି । ସବୁ କଥା ପରେ ସମସ୍ତଙ୍କର ଦାବୀ ଖଣ୍ଡେ ଖଣ୍ଡେ ବଜଟିକିଆରେ ସାବୁନ ଓ ଗୋଟିଏ କରି ପାଉଡ଼ର । ତହିଁ ଆରଦିନ ଦେବାକୁ ପ୍ରତିଶ୍ରୁତି ଦେଇ ଏବଂ କପେ କପେ ଚା' ଖୁଆଇ ତାଙ୍କୁ ଛାଡ଼ିଲି । ତହିଁଆର ଦିନ ଆଉ ନୂଆ ମୁହଁ ଚାରିଗୋଟି । ଅର୍ଥାତ୍ ଦଶଟି ପଠୁଆ ଝିଅପିଲା କ୍ୟାମ୍ପରେ ହାଜର । ସେମାନେ ସାବୁନ ପାଉଡ଼ର ପାଇଲେ ପୁଣି ଦଳ ଦଳ ହୋଇ ନୂଆ ଝିଅ ଆସିବେ, ଏହି ଭୟରେ ସେ ଦିନ କହିଲି—ଆଜି କାଣ୍ଟିନରୁ ସାବୁନ, ପାଉଡ଼ର ଶେଷ । ପୁଣି ପନ୍ଦର ଦିନ ପରେ ଆସିବ । ତାପରେ ସମସ୍ତେ ମୋତେ ଲଗାଇଲେ ଗୀତ ଗାଇବାକୁ । ମୁଁ ତାଙ୍କୁ କହିଲି—

ଆପଣମାନେ ଆଗ ବର୍ମୀଜ ଗୀତ ଗାଆନ୍ତୁ--ପରେ ମୋଠାରୁ ଶୁଣିବେ । ସମସ୍ତେ ମିଳିତ କଣ୍ଠରେ ସେ ଦିନ ଗାଇଲେ "ହ୍ନିଚ ଓ୍ୱାଙ୍ଗୁଂ ଜି ମା ପୋସ୍ୱେଁ ଯୁମା ଲମିନଲୁ ।" ଅର୍ଥ ଆଜି ବି ଜାଣିନି, କିନ୍ତୁ ଏ ଧାଡ଼ିଟି ମନେ ରଖିଛି । ତା'ପରେ ମୁଁ ଓଡ଼ିଆରେ ଗୀତଟିଏ ଗାଇଥିଲି ଏବଂ ସେତିକିରେ ସେ ଦିନର ପର୍ବ ଶେଷ ହେଲା ।

ତହିଁ ଆରଦିନ ସେମାନଙ୍କ କବଳରୁ ରକ୍ଷା ପାଇବା ପାଇଁ ୪ଟା ବେଳକୁ ମୁଁ ଟେଣ୍ଟରୁ ବାହାରେ ଯାଇ ବୁଲୁଥାଏ ଅନ୍ୟ ଆଡ଼େ ଏବଂ

ଯୁଦ୍ଧର ବିଶଦ ବିବରଣୀ, ଆଇ. ଏନ୍. ଏ.ର କାହାଣୀ ବର୍ମାର ଯୁଦ୍ଧ ପୂର୍ବ, ଯୁଦ୍ଧ କାଳୀନ ଏବଂ ଯୁଦ୍ଧ ପରର ଅର୍ଥନୀତି ବିଷୟ ବୃତ୍ତି ଥାଏ । ଯାହା ଦେଖିଲି ଏବଂ ଶୁଣିଲି ତାହା କେବଳ ବର୍ମା କାହିଁକି ଦକ୍ଷିଣ ପୂର୍ବ ଏସିଆର (ଅବିଭକ୍ତ ଭାରତକୁ ଛାଡ଼ି) ପ୍ରତ୍ୟେକ ଦେଶରେ ସମାନ । ପେଟ ପାଇଁ ଅସୁମାର ସ୍ତ୍ରୀ ଲୋକ ନିଜର ଇଜ୍ଜତ ବିକୁଛନ୍ତି । ବହୁ ଭାରତୀୟ ଏମାନଙ୍କର ଶୀକାର ହୋଇଛନ୍ତି । ଅନେକ ବି ଏ କାର-ବାରରେ ନିଜର ସର୍ବସ୍ୱ ହରାଇଛନ୍ତି । ବିଶେଷ ଭାବରେ ସିପାହୀ ଶ୍ରେଣୀର ଲୋକ । ଭାରତର କେଉଁ ଗାଁ ଗହଳରୁ କିଏ ଆସିଥାଏ । ଜୀବନରେ ଅନ୍ୟ ସ୍ତ୍ରୀଲୋକ ସଙ୍ଗରେ କଥା ହେବାର ସୁଯୋଗ ପାଇ ନଥାଏ । ବର୍ମା ପ୍ରଭୃତି ଦେଶରେ ପରଦା ପ୍ରଥା ନାହିଁ । ସୁତରାଂ ଏମାନଙ୍କ ସହିତ କଥା ହେଲେ ସାଧାରଣ ଭାରତୀୟ ସୈନିକ ଭାବେ, ଏମାନେ ସବୁ ବ୍ୟଭିଚାରିଣୀ କେଉଁଟି କେଉଁଟି ସୁଯୋଗ ପାଇ ଆଗେଇ ଯାଏ ଏବଂ କେଉଁଠାରେ ମଧ୍ୟ ଜୀବନ ବି ଦେଇଥାଏ ।

ମୁଁ ବର୍ମାରେ ଥିଲାବେଳେ ଦଶଜଣ ସିପାହୀଙ୍କର ମରଣ ନିଜ ଆଖିରେ ଦେଖିଛି ଏଇଭଳି ଘଟଣାରେ । କେତେକ ଅନାହାର କ୍ଲିଷ୍ଟ ସ୍ତ୍ରୀ ଲୋକଙ୍କୁ ଖାଇବାକୁ ଦେଇ ପାଶବିକ ପ୍ରବୃତ୍ତି ଚରିତାର୍ଥ କରିବା ପାଇଁ ଜବରଦସ୍ତି କରିବାରୁ ପ୍ରାୟ ତିରିଶଜଣ ସ୍ତ୍ରୀଲୋକ ମିଶି ଏମାନଙ୍କୁ ଅତି ନିର୍ମମ ଭାବରେ ହତ୍ୟା କରିଥିଲେ ଏବଂ ଏମାନଙ୍କୁ ମାରି ରାସ୍ତା ଉପରେ ଶୁଆଇ ଦେଇଥିଲେ ତାହାର ଫଳରେ ବଡ଼ ଉତ୍କଟ ସୃଷ୍ଟି ହୋଇଥିଲା ।

ସେଓବଯ୍ୱେ, ପ୍ରୋମ, ପେଗୁ ଓ ମିଟକିଲ୍ ରେ କିଛିଦିନ ରହି ରହି ଶେଷରେ ମୁଁ ମାଣ୍ଡାଲେ ଆସିଲି । ମାଣ୍ଡାଲେ (ମାନ୍ଦଲୟ) ବର୍ମାର ଦ୍ୱିତୀୟ ସହର । ପ୍ରଥମ ରେଙ୍ଗୁନ । ଯୁଦ୍ଧ ପୂର୍ବରୁ ମାଣ୍ଡାଲେରେ ଅଗଣିତ କୂଅ । ତା'ର ଅର୍ଥ ମାଣ୍ଡାଲେରେ ବହୁତ ବୋମା ମାଡ଼ ହୋଇଛି ଏବଂ ଯେଉଁଠି ଗୋଟିଏ ବୋମା ପଡ଼ିଛି ସେଇଠି କୂଅ ପରି ଗୋଟିଏ ଗୋଟିଏ ଗାତ ହୋଇ ଯାଇଛି । ମୁଦ୍ରା ଏବଂ ହାରରେ ବ୍ୟବହାର ହେଲା ଭଳି ମୂଲ୍ୟବାନ ପଥର ପାଇଁ ମାଣ୍ଡାଲେ ବିଖ୍ୟାତ । ସେତେବେଳେ ବାହାରକୁ ରପ୍ତାନୀ ବନ୍ଦ । ସୁତରାଂ ବହୁତ ପଥର

କଣିବାକୁ ମିଳୁଥାଏ । ଖଣ୍ଡେ ଅଧଇଞ୍ଚ ପଥର ମଧ୍ୟରେ ଗୋଟିଏ ଘାଗୋଡାର ଛବି ଏବଂ ଏହା ଏତେ ଚକ୍ ଚକ୍ କରୁଥାଏ ଯେ ଆଖି ଝଲସି ଉଠୁଥାଏ । ବହୁ ବ୍ରିଟିଶ ଏବଂ ଭାରତୀୟ ସୈନ୍ୟ ସେତେବେଳେ ଏ ସୁବିଧା ନେଇ ଗୁପ୍ତ ବେପାର କରିବାକୁ ଆରମ୍ଭ କରିଦେଲେ । ମୁଁ ଦେଖିଛି ଆମର ଜଣେ ଅଫିସର ତାଙ୍କର ସ୍ତ୍ରୀ ନାମରେ ଟିଏଲେଟି ଉଦ୍ଧ ପ୍ରାପ୍ତ ଗୃହ ପାଞ୍ଚ ହଜାର ଟଙ୍କାର ପଥର ସ୍ୱଦେଶକୁ ପଠାଇ ଥିଲେ ।

ମାଣ୍ଡାଲେରେ ଥିବା ସମୟରେ ଗୋଟିଏ ବର୍ମୀଙ୍କ ପରିବାର ସଙ୍ଗେ ଘନିଷ୍ଠତା ଜମି ଉଠିଲା । କଥାବାର୍ତ୍ତା ଛଳରେ ଜଣେ ସେମାନେ କହିଲେ, ଆପଣ କ୍ଷତ୍ରୀୟ ଓ ରାଜବଂଶୀୟ ପରା ! ଆମେ ବି ବର୍ମୀଙ୍କ କ୍ଷତ୍ରୀୟ ଏବଂ ଆମ ମାଣ୍ଡାଲେ ରାଜବଂଶର ଗୋଟିଏ ଝିଅ ଭାରତର କାଶୀପୁର ରାଜ୍ୟର ରାଜାଙ୍କୁ ବିବାହ କରିଛନ୍ତି । ସେ କେଉଁ କାଶୀପୁର ମୁଁ ଜାଣେନା, ତେବେ ଜାଣିଲି ଯୁଦ୍ଧ-ପୂର୍ବ ଅବିଭକ୍ତ ଭାରତ—ବର୍ମା ସମୟରେ ଅନେକ ଭାରତୀୟ ଓ ବର୍ମୀଙ୍କ ମାନଙ୍କର ବୈବାହିକ ସମ୍ବନ୍ଧ ଥିଲା । ବର୍ମାରେ କାମ କରିବାକୁ ଭାରତୀୟ ଶ୍ରମଜୀବୀମାନଙ୍କୁ ବ୍ରିଟିଶ ସରକାର ଦୁଇଟଙ୍କା କରି ଓ ଖାଇବା ପିଇବା ପାଇଁ ଦେଇ, ବର୍ମାରେ ବସବାସ କରି ବର୍ମାର ଅର୍ଥନୈତିକ ସଙ୍ଗଠନରେ ଭାଗ ନେବାକୁ ପଠାଉ ଥିଲେ ।

ସେହି କାରଣରୁ ଆଜି ଅନେକ ଭାରତୀୟ ବର୍ମାରେ ରହି ଯାଇଛନ୍ତି । ଏହି ମାଣ୍ଡାଲେରେ ଆଇ. ଏନ୍. ଏ.ର ଓଡ଼ିଆ ବାଟାଲିୟନର ଜନ୍ମ । ନେତାଜୀ ବର୍ମାରେ ରହିଥିବା ଅନେକ ଓଡ଼ିଆଙ୍କୁ ନେଇ ଗୋଟିଏ ଓଡ଼ିଆ ବାଟାଲିୟନ ଗଢ଼ିଥିଲେ ।

ଆଜି ଭାରତର ସବୁ ପ୍ରଦେଶର ଲୋକଙ୍କ ପାଇଁ ଫାଇଟିଙ୍ଗ ବାଟାଲିୟନ ଅଛନ୍ତି । କିନ୍ତୁ ସ୍ୱାଧୀନ ହେବା ପରେ ବି ଓଡ଼ିଶାରେ ଗୋଟିଏ ବାଟାଲିୟନ ନାହିଁ । ଓଡ଼ିଶାର "ପାଇକ" ସଂପ୍ରଦାୟକୁ ନେଇ

ଇତିହାସ ସବୁଦିନେ ପ୍ରଂଶସା କରି ଆସୁଛି । କିନ୍ତୁ ଆଧୁନିକ ଭାରତର ଲିଡ଼ୁଆ ମାନଙ୍କରେ ଓଡ଼ିଶା କିମ୍ବା ଓଡ଼ିଆର ସ୍ଥାନ କାହିଁ ?

ମାଣ୍ଡାଲେରେ ଥିବା ସମୟରେ ମୋତେ ଜ୍ୱର ହୋଇଥିଲା ଏବଂ ସେଥି ଯୋଗୁ ଗୋଟିଏ ମିଲିଟାରି ହସ୍‌ପିଟାଲରେ ଭର୍ତ୍ତି ହେବାକୁ ପଡ଼ିଲା । ଏଥିରେ ଇଉରୋପୀୟ ଏବଂ ଭାରତୀୟ ଉଭୟଙ୍କ ପାଇଁ ଚିକିତ୍ସାର ସୁବିଧା ଦିଆ ହୋଇଥିଲା । ତା'ଛଡ଼ା ଖାଲି ଭାରତୀୟ ଓ ଖାଲି ଇଂରେଜ ମାନଙ୍କ ପାଇଁ ମଧ୍ୟ ଅଲଗା ଅଲଗା ହସ୍‌ପିଟାଲ ଥିଲା । ଇଂରେଜ ମାନେ ରୋଗୀଙ୍କୁ ଭିନ୍ନ ଚକ୍ଷୁରେ ଦେଖୁଥିଲେ । ତେବେ ଯାହା ହେଉନା କାହିଁକି, ରହିବାକୁ ଟେଣ୍ଟ ଓ ଦଉଡ଼ି ଖଟ ସାଧାରଣତଃ ଦିଆହେଲେ ସୁଦ୍ଧା ରୋଗୀର ଚିକିତ୍ସା ଖୁବ୍ ସୁନ୍ଦର, ଖାଦ୍ୟପେୟ ଚମତ୍କାର ମାନେ ଆଜି କାଲିର ଯେ କୌଣସି ବଡ଼ ଡାକ୍ତରଖାନା ଠାରୁ ବହୁଗୁଣେ ଭଲ ।

ମୋତେ ଯାହା ଖାଇବାକୁ ଦିଆଯାଏ, ସେଥିରୁ ଯଥେଷ୍ଟ ବଳି-ଥାଏ । ପୂର୍ବରୁ କହିଛି, ବର୍ମାରେ ମିଲିଟାରି ଶାସନ ଚାଲିଥାଏ; ସୁତରାଂ ମିଲିଟାରି ହାସପାତାଲରେ ବର୍ମୀଜ ସିଭିଲିୟାନ ମାନଙ୍କର ବି ଚିକିତ୍ସାର ବନ୍ଦୋବସ୍ତ ହୋଇଥାଏ । ପ୍ରତିଦିନ ସକାଳେ ଦଳ ଦଳ ହୋଇ ସିଭିଲିୟାନ ଚିକିତ୍ସା ପାଇଁ ଏମ୍, ଆଇ, ରୁମକୁ ଆସୁଥାନ୍ତି । ମୋତେ ଯେତେବେଳେ ଟିକିଏ ଭଲଲାଗେ ମୁଁ ବାହାରେ ବୁଲୁଥାଏ । ଦିନେ ବୁଲୁଥିବା ସମୟରେ ଗୋଟିଏ ୧୦।୧୨ ବର୍ଷର ବର୍ମୀଜ ପିଲା ମୋ ପାଖକୁ ଆସିଲା, ମୋ ପାଖରେ ବହୁତ କମଳା, କଦଳୀ ଓ ପାଉଁରୋଟି ଥିଲା । ତାକୁ ମୁଁ ଡାକି ସେଥିରୁ କିଛି ଦେଲି ଏବଂ ସେ ଦଉଡ଼ି ଦଉଡ଼ି ଖୁସିରେ ପଳାଇଲା କିଛି ସମୟ ପରେ ତାର ବାପ, ମାଙ୍କୁ ଧରି ଆସିଲା । ସେମାନେ ଖାଦ୍ୟପାଇଁ ଧନ୍ୟବାଦ ଜଣାଇବା ସଙ୍ଗେ ସଙ୍ଗେ ପୁଣି କିଛି ରୋଟି ମାଗିଲେ । ଯାହାଥିଲା ମୁଁ ଦେଲି ଏବଂ କହିଲି—

"ଯଦି ଆପଣ କିଛି ନ ଭାବିବେ, ମୋର ଦି'ପହରର ଖିଆ ବହୁତ ଦିଆ ହେଉଛି ଏବଂ ସେଥିରୁ ବହୁତ କିଛି ବଳୁଛି । ଆପଣ ଝିଅଟା ସୁଦ୍ଧା କାହାକୁ ପଠାଇଲେ ମୁଁ ଡାକ୍ତରଖାନାରେ ଥିବା ପର୍ଯ୍ୟନ୍ତ କିଛି କିଛି ଦେବି ।"

"ଆପଣଙ୍କ ଠାରେ ଆମେ ଶରଣୀ ରହୁବୁ'' ବୋଲି କହି ସେମାନେ ବିଦାୟ ନେଲେ ।

ଠିକ୍ ୫ଟା ବେଳକୁ ଭଦ୍ରଲୋକ ତାଙ୍କ ପିଲପିଲାଙ୍କ ସହିତ ମୋଟରରେ ଆସି ପହଞ୍ଚିଲେ ଏବଂ ମୋଠାରୁ କିଛି ଖାଦ୍ୟନେଇ "ଧନ୍ୟବାଦ" ଜଣାଇ ଚାଲିଗଲେ । ମୋତେ ବହୁତ୍ ଆଶ୍ଚର୍ଯ୍ୟ ଲାଗିଲା, ମୋଟରରେ ଆସି ସାମାନ୍ୟ ଖାଦ୍ୟ ଟିକକ ପାଇଁ ସେମାନଙ୍କର ବ୍ୟାକୁଳତା ।

ତହିଁ ଆରଦିନ ସକାଳେ ସେ ଭଦ୍ରଲୋକ ୧ଟି ସୁନାମୋହର ଆଣି ମୋତେ ଦେଲେ । ମୁଁ ଆଶ୍ଚର୍ଯ୍ୟ ହୋଇ ଏଟା କ'ଣ ବୋଲି ପଚାରି ବାରୁ ସେ ଛଳ ଛଳ ଆଖିରେ କହିଲେ—

"ମହାଶୟ, ମୁଁ ବଡ଼ଧନୀ, ମୋର ଗୃହଖଣ୍ଡ ଗାଡ଼ି ଅଛି । ମାଣ୍ଡାଲେ ସହରରେ ଯୁଦ୍ଧ ପୂର୍ବରୁ ୩ଟା ତିନମହଲା କୋଠାଥିଲା । ସମ୍ପତ୍ତି ବାଡ଼ି ଅନେକ । କିନ୍ତୁ ଯୁଦ୍ଧ ସମୟରେ ଓ ଯୁଦ୍ଧ ପରେ ମୁଠାଏ ପେଟପୁରି ଖାଇବାକୁ ପାଇନାହିଁ । କାଲି ଆପଣଙ୍କଠାରୁ ଯାହା ପାଇଲି ସେଥିରେ ୫ ପ୍ରାଣୀ କୁଟୁମ୍ବ ଚଳିଗଲୁ । ଯୁଦ୍ଧ ସମୟରେ ଖାଇବାକୁ ନପାଇ ମୋର ବୁଢ଼ାବାପ ଓ ମା' ମରିଗଲେ । ମୋ ପାଖରେ ବର୍ତ୍ତମାନ ବି ଯଥେଷ୍ଟ ପଇସା ଅଛି । କିନ୍ତୁ ଖାଇବା ଜିନିଷର ଏକାନ୍ତ ଅଭାବ ।"

ମୁଁ ମୋହର ଦୁଇଟି ଫେରାଇ ଦେଲି ଏବଂ ନିର୍ଭର ପ୍ରତିଶ୍ରୁତି ଦେଲି ଯେ, ମୁଁ ମାଣ୍ଡାଲରେ ଥିବା ପର୍ଯ୍ୟନ୍ତ ତାଙ୍କୁ ଖାଇବା ଯୋଗାଇ ଦେବି ।

ସେ ଭଦ୍ରଲୋକର ନାମ ଇଉଅଙ୍ଗଜି । ଏହାଥିଲା ବର୍ମାର ସେତେ-ବେଳର ସାଧାରଣ ନାଗରିକର ଅବସ୍ଥା । ମୁଁ ମାଣ୍ଡାଲରେ ବେଶିଦିନ ରହି ପାରିଲି ନାହିଁ । ମୋର ଜ୍ୱର ବଢିବାରୁ ମୋତେ ମେଦିନୀପୁରକୁ ପଠାଗଲା । ମେଦିନୀପୁର ମିଲିଟାରୀ ହାସପାତାଳରେ ଭଲ ହୋଇ ପୁଣି କନ୍‌ଭାଲେସେଣ୍ଟ ସେଣ୍ଟରକୁ ଆସିଲି । ଚନ୍ଦ୍ରତୀର୍ଥ ପାଖରେ ଆମର ସେଣ୍ଟର ଥିଲା ।"

ପୁରା ଭଲହୋଇ ପୁଣି ମୋ କମ୍ପାନୀକୁ ଗଲି ଏବଂ ସେତେବେଳେ

ମୋର କମ୍ପାନୀ ମାଣ୍ଡାଲେରୁ ରେଙ୍ଗୁନ ଚାଲି ଯାଇଥିଲା । ସୁତରାଂ କଲିକତାଠାରୁ ଜାହାଜ ଯୋଗେ ରେଙ୍ଗୁନ ଯିବାକୁ ପଡ଼ିଲା । ଜାହାଜର ନାମ "ନଲ୍‌ଫକ୍ ସାଯ୍ୟାର ।" ସେତେବେଳକୁ ମେ' ମାସ ସୁତରାଂ ବଙ୍ଗୋପସାଗର ଭୀଷଣ ଆକାର ଧାରଣ କରିଥିଲା । ଯେଉଁମାନେ ଏପ୍ରେଲଠାରୁ ଜୁଲାଇ ମଧ୍ୟରେ ଜାହାଜରେ ଯାଇଥିବେ ସେମାନେ ବୁଝି ପାରିବେ ସେତେବେଳର ଅବସ୍ଥା । ମୁଁ ତ କେବେ ଫ୍ଲାଇଙ୍ଗ୍ ଫିସ୍ (ଉଡନ୍ତା ମାଛ) ଦେଖି ନଥିଲି । ଡେକ୍‌ରେ ବୁଲୁଥିବା ବେଳେ ଏ ଗୁଡ଼ିକୁ ଦେଖି ଭାବିଥିଲି, ଘର ଚଟିଆ ବୋଲି । କିନ୍ତୁ ସମୁଦ୍ର ମଝିରେ ଏ ଛୋଟ ଚଢ଼େଇ ଆସିବେ କୁଆଡୁ ବୋଲି ପଚାରିବାରୁ ଜଣେ ସରଦାରଜୀ ମୋତେ ରହସ୍ୟରେ କହିଲେ—

"ଓ, ଏ ମଛଲି ହୈ ତୋଅଡଖାନା ।"

ଭୀଷଣ ଝଡ଼ ତୋଫାନର ସମ୍ମୁଖୀନ ହେବାକୁ ପଡ଼ିଥିଲା । ପାଣିରେ ଯୁଦ୍ଧ ସମୟରେ ମାଇନ୍ ବିଛା ହୋଇଥିବାରୁ ମୋତେ ବେଶୀ ଡର ଲାଗୁଥାଏ । ଆମ ଜାହାଜ ଆଗରେ ଗୋଟିଏ "ମାଇନ ସୁଇପର" ରାସ୍ତା ଦେଖାଇବାକୁ ଚାଲିଥାଏ । ତହିଁ ଆରଦିନ ସକାଳୁ "ଲାଇଫ୍ ଜାକେଟ୍" ପରେଡ୍ ପରେ ତିନିଟି ଭୀଷଣକାୟ ଜଳ ଜନ୍ତୁ ଜାହାଜ ଠାରୁ ପ୍ରାୟ ଦୁଇ ଫର୍ଲଙ୍ଗ ଦୂରରେ ନାଚୁଥିବାର ଦେଖାଗଲା । ଆମେ ଦଳେ ଭାରତୀୟ ଗୋଟିଏ ବାଇନୋକୁଲର ନେଇ ତାକୁ ଦେଖୁଥାଉଁ, ପଛରେ ଦଳେ ଟମି କଣ କଥା ହେଉଁ ହେଉଁ କହିଲେ—

"ବ୍ଲଡ ଇଣ୍ଡିଆନସ୍ ।"

ସଙ୍ଗେ ସଙ୍ଗେ ମୁଁ କହିଲି—"ରାସ୍କେଲ୍ ବ୍ରିଟିଶାର୍ସ" ଲାଗିଲା ଝଗଡ଼ା । ତା'ପରେ ଜାହାଜ କାପ୍ତାନଙ୍କ ପର୍ଯ୍ୟନ୍ତ କଥା ଗଲା । ତହିଁ ଆରଦିନ ସେ ଜାହାଜରେ "ଅର୍ଡର୍ଲି ରୁମ୍"ରେ ବସି କେସ୍ ବିଚାର ହେଲା । ସେଥିରେ ସେ ଗୋରା ଲୋକଙ୍କୁ ତାଗିଦ କରି ଦିଆଗଲା । ମୋତେ ବି ତାଗିଦ କରାଗଲା । କିନ୍ତୁ ଅଧିକା ଦଣ୍ଡ ହିସାବରେ ଜାହାଜର ଡେକ୍‌ର ୨୫ ଫୁଟ୍ ଧୋଇବାକୁ କୁହାଗଲା । ମୁଁ ତାର ପ୍ରତିବାଦ କଲି । ସଙ୍ଗେ ସଙ୍ଗେ ଜାହାଜର ଆଉ ଅଠଜଣ ଭାରତୀୟ ସୈନ୍ୟ ବି ପ୍ରତିବାଦ କଲେ ଏବଂ ସମସ୍ତେ ମୋ ପାଇଁ ଜାହାଜ ଧୋଇବାକୁ ବାହାରିଲେ ଏବଂ ସମସ୍ତେ

ମୁହଁରେ କହୁଥାନ୍ତି—ଗଡ୍ସେଭ ବ୍ରିଟିଶାର୍ସ। ହଠାତ୍ ମୋର ଅଫିସର ମାନଙ୍କର କ'ଣ ସବୁ ବସି ସ୍ଥିର ହେଲା କେଜାଣି, ମୋତେ ଡକାଇ ନେଇ କହିଲେ—

"ତୁମର ଦଣ୍ଡ ମାଫ୍ କରାଗଲା। ତୁମର କିଛି ଦୋଷ ନାହିଁ। ପୁଣି ସେହି ଗୋରାକୁ ପଚିଶ ଟଙ୍କା ଜରିମାନା ହେଲା। କିନ୍ତୁ ତୁମେ ଜଣେ ପଞ୍ଚମ ବାହିନୀର ଲୋକ ବୋଲି ସନ୍ଦେହ ହେଉଛି।"

ମୁଁ କହିଲି—"ଆପଣ ସେ ପରି ଭାବି ପାରନ୍ତି, ମୁଁ କିନ୍ତୁ ତାହା ନୁହେଁ।"

ଏ ସବୁ କଥା ହେଉଁ ହେଉଁ ହଠାତ୍ ସାଇରନ ବାଜିଲା ଏବଂ ଆମକୁ କୁହାଗଲା—ବାଟରେ କେଉଁଠି ଗୋଟାଏ ମାଇନ୍ ବାଜି ଗୋଟାଏ ଜାହାଜ ନଷ୍ଟ ହୋଇ ଯାଇଛି। ସମସ୍ତେ ଜାଗ୍ରତ ଅବସ୍ଥାରେ ରୁହ। ସେଠାରେ ଲଙ୍ଗର ପକାଇ ଜାହାଜ ଦୁଇଦିନ ରହିଲା। ଶେଷରେ ରେଙ୍ଗୁନରେ ପହଞ୍ଚିଲୁ।

ଚାରିଦିନର ବାଟକୁ ପଚିଶଦିନ ଲାଗିଲା। ରେଙ୍ଗୁନ ଜେଟିରେ ଓହ୍ଲାଇ ମୋର କ୍ୟାମ୍ପକୁ ଗଲି। ସ୍ଥାନ ଭିତରେ ବହୁତ ଲୋକଙ୍କ ବଦଳି ହୋଇଥାଏ। ରେଙ୍ଗୁନରେ ପୁଣି ଆମର ସପ୍ଲାଇ କାମ ଚାଲିଲା। ରେଙ୍ଗୁନର ଝଲମଲ ପୂର୍ବ ପରି ନଥାଏ, ତଥାପି ରେଙ୍ଗୁନ ଖୁବ୍ ବଡ଼ ସହର ଏବଂ ଚାକଚକ୍ୟରେ ପୂର୍ଣ୍ଣ ଥିଲା ପରି ଜଣା ପଡୁଥାଏ। ଏଠାରେ ବହୁତ ଭାରତୀୟ ଥାଆନ୍ତି। ରେଙ୍ଗୁନର ୨୭ ନମ୍ବର ଓ ୧୪୪ ନମ୍ବର ଗଳିରେ ଓଡ଼ିଆ ଭର୍ତ୍ତି। ବହୁ ଓଡ଼ିଆ, ବର୍ମୀ ସ୍ତ୍ରୀଲୋକ ବିବାହ କରି ଘରଦ୍ୱାର କରି ରହିଚନ୍ତି। ରେଙ୍ଗୁନରେ ଅନେକ ଓଡ଼ିଆଙ୍କ ଘରକୁ ଅତିଥି ହିସାବରେ ଯାଇଚି। ରେଙ୍ଗୁନରେ ଚାଇନାଜ୍ ବି କମ୍ ନଥାନ୍ତି।

ରେଙ୍ଗୁନରେ ବହୁତ ବର୍ମୀଙ୍କ ପାଗୋଡା (ମନ୍ଦିର) ରହିଛି। ତା ମଧ୍ୟରେ ସଡାଗନ୍ ପାଗୋଡାରେ ସୁନା ଚୁ'ଣି ହୋଇଛି କେତେକ ଅଂଶ। ଭିତରେ ବିଶାଳ ବୁଦ୍ଧ ମୂର୍ତ୍ତି। ସ୍କୁଲ, କଲେଜ ଡାକ୍ତରଖାନା ସବୁ ଆସ୍ତେ ଆସ୍ତେ ଖୋଲା ହେଉଥାଏ। ଜେନେରାଲ ଅଙ୍ଗସାନ ତାଙ୍କର ଗରିଲା ବାହିନୀଙ୍କୁ ନେଇ ଜଙ୍ଗଲ ଅଞ୍ଚଳରେ ବ୍ରିଟିଶ ମାନଙ୍କ ବିରୁଦ୍ଧରେ ଲଢୁ ଥାଆନ୍ତି। ସେଥିପାଇଁ କାରେନ୍ ଅଞ୍ଚଳ 'ନିଷିଦ୍ଧ ଅଞ୍ଚଳ'ରେ

ପରିଣତ ହୋଇଥାଏ । ଭାରତୀୟ ମାନଙ୍କୁ ବର୍ମୀଙ୍କମାନେ ବିଶେଷ ଭଲ ଦୃଷ୍ଟିରେ ଦେଖି ନଥାନ୍ତି ।

ରେଙ୍ଗୁନରେ ଜାପାନୀ ବନ୍ଦୀ ଶିବିର ଖୁବ୍ ବଡ଼ । ବହୁତ ଜାପାନୀ ଧରା ହୋଇ ମାଙ୍ଗାଡୋନ୍ ଶିବିର ପାଖକୁ ନିଆ ହେଉଥାନ୍ତି । କେତେଜଣ ଜାପାନୀଙ୍କୁ ବନ୍ଧୁ କରି ତାଙ୍କ ଠାରୁ ପ୍ରକୃତ କଥା ଶୁଣୁଥିଲି । ମୋର ଜଣେ ବନ୍ଧୁ "ନାଶିପାକା" ଦିନେ ଆଜି ଜଣେ ଜାପାନୀ ସହିତ ମୋତେ ଦେଖାଇଲେ 'କାରାଟି'ର ନମୁନା ଏବଂ ସେହି ଶିକ୍ଷା ବଳରେ ସେ ୨୦ଜଣ ଇଂରେଜ ଲୋକଙ୍କୁ ମାରିଥିଲେ ବୋଲି କହିଲେ । 'କାରାଟି'ର ଅର୍ଥ ଶତ୍ରୁକୁ କୌଣସି ଅସ୍ତ୍ର ଶସ୍ତ୍ରର ସାହାଯ୍ୟ ନ ନେଇ ମାରିବାର କୌଶଳ । ଆମର ବକସିଂ କହିଲେ ଠିକ୍ ହେବନି । କାରଣ କାରାଟୀରେ ହାତ ଗୋଡ଼ ସବୁ ବ୍ୟବହାର ହୋଇଥାଏ ଏବଂ ଦେହର ଯେକୌଣସି ଯାଗାରେ ଆଘାତ କରା ହୋଇଥାଏ ଏବଂ ଯେ କାରାଟି-ଫାଇଟର ସେ ଅକ୍ଲେଶରେ ଥରକେ ଜଣକୁ ମାରିପାରେ । ଜାପାନରେ ଏହିପରି ଅନେକ କ୍ଲବ ଅଛି । କେବଳ ମାତ୍ର ଜଣକୁ ଜୟ କରିବା ନୁହେଁ, ଚରିତ୍ର ଗଠନ ବି ଏହି କ୍ଲବର ଉଦ୍ଦେଶ୍ୟ ।

ମୋର ଜାପାନୀ ବନ୍ଧୁ କହିଲେ, ଟାଙ୍ଗ, ସୁଙ୍ଗ ଏବଂ ମିଙ୍ଗ୍ ବଂଶର ବୌଦ୍ଧ ଭିକ୍ଷୁମାନେ ଏହାକୁ ୧୭ଶ ଶତାବ୍ଦୀରେ ଉଦ୍ଭାବନ କରିଥିଲେ । ସେହି ବଂଶର ବୌଦ୍ଧ ପୁରୋହିତମାନେ ବଡ଼ ଅହିଂସା ପ୍ରିୟ ଏବଂ ସେଥିପାଇଁ କୌଣସି ଅସ୍ତ୍ର ଶସ୍ତ୍ର ଧରିବା ନିଷେଧ କରି କୌଣସି ଶତ୍ରୁ କବଳରୁ ରକ୍ଷା ପାଇବା ପାଇଁ ଏହି ପ୍ରଥା ପ୍ରଚଳନ କରିଥିଲେ । ଏବେ ତାହାର କ୍ରମ ବିକାଶ ହୋଇ ଜାପାନର ଗୃହଆଡ଼େ କ୍ଲବ ହୋଇ ଗଲାଣି ; ବିଶେଷ ଭାବେ 'ଏଡ଼ୋରେ' । ଏଡ଼ୋର ଆଧୁନିକ ନାମ ଟୋକିଓ ।

ସେହି ଜାପାନୀ ବନ୍ଧୁ ମୋତେ ଜାପାନ୍‌ର ଅନେକ ବିଷୟ କହିଛନ୍ତି । ମୁଁ କ୍ରମେ ସେ ସବୁ କହିବି । ଏଣେ କିନ୍ତୁ ଜାପାନୀମାନେ କି କମ୍ ଅତ୍ୟାଚାର କରି ନଥିଲେ । ମୁଁ ସିଙ୍ଗାପୁର ପର୍ଯ୍ୟାୟରେ ସେ ସବୁ ବର୍ଣ୍ଣନା କରିବି ବିଶେଷ ଭାବରେ । ଡେଥ୍ ରେଲ୍‌ୱେର ନିର୍ମାଣ ସମୟରେ କିନ୍ତୁ ତାଙ୍କର ଶୃଙ୍ଖଳା ସବୁ କ୍ଷେତ୍ରରେ ଉଲ୍ଲେଖ

ଯୋଗ୍ୟ । ଦିନେ ୭ଜଣ ଜାପାନୀ ଯୁଦ୍ଧବନ୍ଦୀ ସିପାହୀ କୌଣସି ବର୍ମୀଙ୍କ ବସ୍ତି ଭିତରେ ପଶି କେତେକ ସ୍ତ୍ରୀ ଲୋକଙ୍କ ଉପରେ ପାଶବିକ ଅତ୍ୟାଚାର କଲେ । ସେ ବିଷୟ ମିଳିଟାରୀ ଅଫିସରମାନଙ୍କ କାନରେ ପଡ଼ିଲା ; ସୁତରାଂ ତାଙ୍କ ଜାପାନୀ କମାଣ୍ଡରଙ୍କୁ ବ୍ରିଟିଶ କମାଣ୍ଡର ଏ ବିଷୟ ବୁଝି ତାର ଉଚିତ ବିଚାର କରିବାକୁ କହିଲେ । ସେ କମାଣ୍ଡର ସନ୍ଧ୍ୟା ସମୟରେ ସବୁ ବନ୍ଦୀମାନଙ୍କର ରୋଲ୍‌କଲ୍ ସମୟରେ ଏ କଥା କହିଲେ ଏବଂ ଓଜସ୍ୱିନୀ ଜାପାନୀ ଭାଷାରେ କହିଲେ—

"ହେ ବାହାଦୁର ଜାପାନୀ ସୈନିକ ଗଣ ! ତୁମ୍ଭେମାନେ ଖୁବ୍ ଲଢ଼ିଛ । ଭାଗ୍ୟର ବିପର୍ଯ୍ୟୟରୁ ଆଜି ଜାପାନ ପ୍ରଥମବାର ପାଇଁ ତାର ଯୁଦ୍ଧ-ଇତିହାସରେ ବିଜୟ ହାସଲ କରି ପାରି ନାହିଁ । ସେଥି ପାଇଁ ଆମେ ସମସ୍ତେ ଲଜ୍ଜିତ ଏବଂ ବଞ୍ଚି ରୁହିବା ମଲା ସଙ୍ଗେ ସମାନ । ଜାପାନ ଭୂଖଣ୍ଡର ବହୁତ ଦୂରରେ ଆମେ ବନ୍ଦୀ ହୋଇ ପଡ଼ିଛେ । ଆମର ମା' ଭଉଣୀଙ୍କ ଦଶା କ'ଣ ହେଉଥିବ ଆମେ ଜାଣୁନା । ଆମେ ସବୁ ମରିବା କି ବଞ୍ଚିବା, ତା'ବି ଆମକୁ ଜଣା ନାହିଁ । କିନ୍ତୁ ବଡ଼ ଦୁଃଖର ବିଷୟ, ତୁମ୍ଭମାନଙ୍କ ମଧ୍ୟରୁ କେତେଜଣ ଏ ଦେଶର ମା'ଭଉଣୀଙ୍କ ଉପରେ ଅତ୍ୟାଚାର କରିଛ । ତାହା ତୁମ ଦେଶ ପକ୍ଷରେ ଘୋର ଲଜ୍ଜା ଓ ଅପମାନ ଜନକ । ସତ କୁହ ! କିଏ ଏପରି କରିଛ ? ଏବଂ ବାହାଦୁର ପରି ଗୁଳି ଆସି ଦଣ୍ଡ ଗ୍ରହଣ କରିବା ପାଇଁ । ତୁମ୍ଭମାନଙ୍କୁ ତୁମ୍ଭର ରାଜା, ଅର୍ଥାତ୍ ଭଗବାନଙ୍କ ଦୋହାଇ, ତୁମକୁ ଜାପାନର ଦୋହାଇ, ତୁମକୁ ଜାତିର ଦୋହାଇ, ତୁମକୁ ତୁମ ସମାଜର ଦୋହାଇ ।"

ଏତିକି କହିବା ମାତ୍ରେ, ସାତଜଣ ସିପାହୀ ଆଗକୁ ପାଦେ ଆସି ମୁଣ୍ଡ ନୁଆଇଁ ଠିଆ ହେଲେ । ତା'ପରେ ହେଲା ତାଙ୍କୁ ମାଡ଼, ଖାଲି ଗାଲରେ । ଗୁପୁଡ଼ା—ପାପୁଲି ପଟ୍ଟପଟ ଗୁପୁଡ଼ା, କଷ୍ଟ ହୁଏ ଭୀଷଣ ।

ସେମାନେ ମାଡ଼ ଖାଇ ତଳେ ପଡ଼ି ଯାଉଥାନ୍ତି ଏବଂ ହଠାତ୍ ଉଠି କମାଣ୍ଡରଙ୍କୁ ସାଲ୍ୟୁଟ୍ କରୁଥାନ୍ତି । ଏହିପରି ମାଡ଼ ଖାଇ ଖାଇ ଗାଲ ଫାଟିଗଲା ଏବଂ ରକ୍ତ ବାହାରିଲା । ଶେଷରେ ସେମାନଙ୍କୁ ୭ଦିନ ଲାଗି ମିଲିଟାରୀ ଜେଲ୍ ଦିଆ ହେଲା ।

ସେମାନେ ମୁଣ୍ଡ ନୁଆଁଇ କହିଲେ—

"ମାତୃଭୂମି, ଜାତି ଓ ଜାତିର ଗୌରବ ପାଇଁ ଏ ଦଣ୍ଡ ଆମକୁ କଷ୍ଟ ନୁହେଁ । ଏ ଦଣ୍ଡ ପାଇଲେ ମାତୃଭୂମି ଓ ଜାତିର ଟେକ ରହିବ ।"

ରେଙ୍ଗୁନରେ ଥରେ ଗୋଟିଏ ସିନେମା ହାଉସ୍‌କୁ ଯାଇଥିଲି—ନାଁ 'କେରେଣ୍ଟିଆନ୍' । ମୋର ପାଖ ସିଟ୍‌ରେ ଝିଅଟିଏ ବସିଥିଲା । ଇଂରାଜୀ ଛବି ଦେଖା ହେଉଥିଲା, ସୁତରାଂ ଦେଖଣାହାରୀ ପ୍ରାୟ ସମସ୍ତେ ଇଂରାଜୀ ଜାଣନ୍ତି । ହାଫ୍ ଟାଇମ୍‌ରେ ସେ ଝିଅଟି ମୋତେ ପଚାରିଲା (ଇଂରାଜୀରେ) ।

"ଭାରତର କେଉଁ ପ୍ରଦେଶରେ ଆପଣଙ୍କ ଘର" ?

'ଓଡ଼ିଶାରେ' ବୋଲି କହିବାରୁ, ସେ ହଠାତ୍ ମୋତେ ଓଡ଼ିଆରେ କହିଲେ—

"ନମସ୍କାର, ଆପଣ ତେବେ ଓଡ଼ିଆ—ମୋ ବାପା ବି ଓଡ଼ିଆ ।"

ବିଦେଶରେ ଶୁଦ୍ଧ ଓଡ଼ିଆ ଶୁଣି ମୋତେ ଖୁବ୍ ଖୁସି ଲାଗିଲା । କୌତୁହଳ ହେଲା ତା' ବିଷୟରେ ଜାଣିବାକୁ । ଝିଅଟି ଜଲ୍‌ଦି ଜଲ୍‌ଦି ଓଡ଼ିଆ କହି ପାରୁ ନ ଥିଲା । ତେବେ ଜାଣିଲି ଯେ ତାର ବାପା ମିଃ ମହାନ୍ତି ଜଣେ ବଡ଼ ଧନୀ ଲୋକ ।

ସୋ ସରିବା ପରେ ଧନ୍ୟବାଦ ଜଣାଇ ମୋ ଠିକଣା ନେଇ ଚାଲିଗଲା । ତହିଁଆର ଦିନ ଆସି ମୋ ଅଫିସରେ ହାଜର ; ହାତରେ ଖଣ୍ଡେ ଦରଖାସ୍ତ, ଟାଇପିଷ୍ଟ ଚାକିରୀ ପାଇଁ । ମିଲିଟାରୀରେ ପ୍ରାୟ ପ୍ରତ୍ୟେକ ଯାଗାରେ ସ୍ଥାନୀୟ କ୍ଲର୍କ ଓ ଟାଇପିଷ୍ଟ ହିସାବରେ ସିଭିଲିଆନ-ମାନଙ୍କୁ ରଖା ହୋଇଥାଏ ।

ତାଙ୍କ ଘରକୁ ଯାଇ, ତାଙ୍କ ବାପାଙ୍କ ସହିତ କଥାବାର୍ତ୍ତା ପରେ ମିଲିଟାରୀ ଅଫିସରେ ଚାକିରୀ କରିବାକୁ କହିଲି ।

ସନ୍ଧ୍ୟାରେ ତାଙ୍କ ଘରକୁ ଗଲି । ମିଃ ମହାନ୍ତିଙ୍କ ଘର ଗଞ୍ଜାମ ଜିଲ୍ଲାରେ । ସେ ସେଠାରେ ଗୋଟିଏ ବର୍ମୀଜ ସ୍ତ୍ରୀ ବିବାହ କରି ବସ

ବାସ କରି ଅଛନ୍ତି । ତାଙ୍କର ଦୁଇ ଖଣ୍ଡୋଟି ପ୍ରାଇଭେଟ୍ ବସ୍ ଓ ଦୁଇ ଖଣ୍ଡୋଟି ଟ୍ୟାକ୍ସି ସେତେବେଳେ ଚାଲୁଥିଲା । ସେ ବହୁତ ପଇସାର ମାଲିକ୍ ଥିଲେ । ସେ ମୋତେ ଖୁବ୍ ଆଦର ଯତ୍ନ କଲେ । କିନ୍ତୁ ତାଙ୍କର ଘର କିମ୍ବା ବଂଶାନୁବଳୀ ବିଷୟ ବିଶେଷ କିଛି କହିଲେ ନାହିଁ ।

ବହୁତ ପଚାରିବା ପରେ ଭଦ୍ରଲୋକଙ୍କ ଆଖି ଛଳ ଛଳ ହୋଇ ଉଠିଲା । ସୁତରାଂ ମୁଁ ଆଉ ବିଶେଷ ଅଗ୍ରସର ନ ହୋଇ ତାଙ୍କ ଝିଅର ଚାକିରି କଥା ପଚାରିଲି । ତାଙ୍କ ଝିଅ ହଠାତ୍ ବାଧାଦେଇ କହିଲା—

"ମୋ ବାପା ସିନା ରୋଜଗାର କରୁଛନ୍ତି, ତାଙ୍କର ସିନା ବହୁତ କିଛି ପଇସା ଅଛି, କିନ୍ତୁ ମୁଁ ତ ଖାଲି ମାଟ୍ରିକ୍ ପାସ୍ କରି ବସିଛି । ମୋର ଭବିଷ୍ୟତ ମୋତେ ହିଁ ଗଢ଼ିବାକୁ ପଡ଼ିବ, ସୁତରାଂ ମୁଁ ଚାକିରି କରିବି ।"

ଉତ୍ତର ନିଶ୍ଚୟ ସନ୍ତୋଷ ଜନକ ଏବଂ ବିଦେଶରେ ହେଲେବି ଜଣେ ଓଡ଼ିଆ ଝିଅର ମନୋବୃତ୍ତିକୁ ପ୍ରଶଂସା ନ କରି ରହି ପାରିଲି ନାହିଁ । କିନ୍ତୁ ଯୁଦ୍ଧରେ ଜୟ କରିବା ପରେ ବ୍ରିଟିଶ ଲୋକଙ୍କର ଇଚ୍ଛା ଉଚ୍ଛୃଙ୍ଖଳତା ଏତେ ବଢ଼ି ଯାଇଥାଏ ଯେ ସେମାନେ ବର୍ମା, ସିଙ୍ଗାପୁର ପ୍ରଭୃତି ଦକ୍ଷିଣ-ପୂର୍ବ ଏସିଆର ପ୍ରତ୍ୟେକ ସହର ଗୁଡ଼ିକରେ ସନ୍ଧ୍ୟା ପରେ ଘରେ ରାସ୍ତା କଡ଼ ଗୁଡ଼ିକ ବି "କାବାରେଟ୍ ହଲ୍"ରେ ପରିଣତ କରି ପକାଉଥାନ୍ତି । ମଦ୍ୟପାନ ଓ ପାଶବିକ ଅତ୍ୟାଚାର ଚରମ ସୀମାରେ ପହଞ୍ଚିଥାଏ । କେହି ତାଙ୍କୁ କିଛି କହିଲେ Victory ନାଁରେ ଗାଳି ଫିଙ୍ଗାଇବାକୁ କୁଣ୍ଠାବୋଧ କରନ୍ତି ନାହିଁ । ବିଶେଷ ଭାବରେ ଆମେ ଭାରତୀୟମାନେ ଖୁବ୍ ଡରି ଚଳୁଥାଉ । ଆମେ ତାଙ୍କର 'V' for Victory ନ କହି "For Vanduish" କହୁଥାଉ । ଏ ସବୁ କହିବା ପରେ ମିସ ମହାନ୍ତି ଆଉ ମିଲିଟାରୀ ଅଫିସରେ ଚାକିରି କରିବାକୁ ମନ ବଳାଇଲେ ନାହିଁ ।

ବର୍ମାର **Water festival** ଖୁବ୍ ପ୍ରସିଦ୍ଧ । ଠିକ୍ ଆମର ହୋଲି ପରି ; କିନ୍ତୁ ରଙ୍ଗ ବଦଳରେ ସେଠାରେ ଖାଲି ପାଣି ଖେଳ ହୁଏ । ପାଣିରେ ବୁଡ଼ାଇଦିଅନ୍ତି ।

ରେଙ୍ଗୁନ୍‌ରେ ଏ ଉତ୍ସବ ଖୁବ୍ ଜାକ୍ ଜମକରେ ପାଳନ ହୁଏ । ମୁଁ ଶୁଣିଥାଏ ଏ ପର୍ବ କଥା । ରେଙ୍ଗୁନ୍‌ରେ ମୋର ଗୋଟେ ବର୍ମୀଜ ପରିବାର ସହିତ ଖୁବ୍ ଘନିଷ୍ଠତା ଥାଏ ଏବଂ ପ୍ରତିଦିନ ମୁଁ ତାଙ୍କ ଘରକୁ ଯାଏ କିଛିଟେଲ ଚଟେଲ । ଆମ କ୍ୟାମ୍ପ ପାଖରୁ ତାଙ୍କ ଘର ମୋଟେ ପାଞ୍ଚଶହ ଗଜ ଦୂର ହେବ । ବାପ ଜଣେ କେମେଷ୍ଟ୍ରି ଲେକ୍‌ଚରର ଏବଂ ଯୁଦ୍ଧ ପୂର୍ବରୁ ଅବସର ନେଇଥାନ୍ତି । ମା’ ବୁଢ଼ୀ, ଅନ୍ଧୁଣୀ । ଗୋଟିଏ ପୁଅ ମେଡିକାଲ୍‌ରେ ଲେକ୍‌ଚରର ଓ ଜଣେ D. F. O. । ପାଞ୍ଚୋଟି ଝିଅ । ଡୋରଥି ସାପ୍ପେଟ, ଫୁଁ କ୍ଲାଏ ଓ ସିନ୍ ସିନ୍—ସମସ୍ତେ ନିଜ ନିଜର କାମରେ ବ୍ୟସ୍ତ । ଝିଅମାନେ ସମସ୍ତେ କନ୍‌ଭେଣ୍ଟରେ ପଢ଼ି ଯୁନିଭର୍ସିଟିର ମ୍ୟାଟ୍ରିକ୍ ପାଶ୍ କରିଥାନ୍ତି । ସମସ୍ତଙ୍କ ଅପେକ୍ଷା ମୋର ଡୋରଥି ସଙ୍ଗେ ବିଶେଷ ଘନିଷ୍ଠତା ଥିଲା ।

ମୁଁ ସେଦିନ ତାଙ୍କ ଘରକୁ ସକାଳେ ଯାଇ ଥିଲି ଏବଂ ସମସ୍ତେ ମୋତେ ସେଦିନ ଶୂନ୍ୟେ ଶୂନ୍ୟେ ନେଇ ଗୋଟିଏ ଡ୍ରମ ଭିତରେ ପୁରାଇ ଦେଇ ମୋ ଉପରେ ପ୍ରାୟ ଦୁଇ ଡ୍ରମ ପାଣି ଢାଳିଲେ । ତାପରେ ତାଙ୍କ ଜିପ୍‌ଟରେ ଟାଉନ ସାରା ବୁଲି ଖେଳିଲେ । ସେଦିନ ତାଙ୍କ ଘରେ ଡିନର ଖାଇ ପର୍ବ ଶେଷ କଲୁ । ବର୍ମୀଜମାନେ ମାଛ ମାଂସ ସବୁ ଖାଆନ୍ତି, କିନ୍ତୁ ନିଜେ ମାରି ଖାଇବାକୁ “ପାପ” ବୋଲି ଧରି ନେଇ ଥାନ୍ତି । କାରଣ ସେମାନଙ୍କ ଭିତରେ ପ୍ରାୟ ଶତକଡ଼ା ନବେଜଣ ବୌଦ୍ଧ ଧର୍ମାବଲମ୍ବୀ । ଅବଶ୍ୟ ଶିକ୍ଷାର ପ୍ରସାର ସଙ୍ଗେ ସଙ୍ଗେ ଏହି ଧର୍ମ ବିଶ୍ୱାସ ଆସ୍ତେ ଆସ୍ତେ ତୁଟି ଯାଇଛି । କିନ୍ତୁ ପୁରୁଣା କାଳିଆ ଲୋକମାନେ ଏହାକୁ ଖୁବ୍ ମାନନ୍ତି । ସେଥିପାଇଁ ବର୍ମୀଜ ମୁସଲମାନ ଚୀନିଜ ଓ ଭାରତୀୟ ମୁସଲମାନ (ବିଶେଷଭାବେ ଦକ୍ଷିଣ ଭାରତୀୟ) ମାନଙ୍କର ମାଂସ ମାର୍କେଟରେ ଏକ ଚାଟିଆ କାରବାର ।

ବର୍ମୀଜ ପରିବାରର (ବିଶେଷ କରି ପ୍ରାପ୍ତ ବୟସ୍କ ଲୋକ) କେହି ମଲେ, ଶବ ସଂସ୍କାର କରିବା ପୂର୍ବରୁ ଗୋଟିଏ ପ୍ରଥା ଅଛି ଯେ, ମୁର୍ଦାରକୁ ବାଲି ଏବଂ ଅଙ୍ଗାର ଉପରେ ତେଲ ଦେଇ ଶୁଖାଇ ଦିଅନ୍ତି । ଦୀପ ସବୁବେଳେ ଜଳୁଥାଏ । ଏମାନେ ଖୁବ୍ ଭୋଜି ଭାତ ଖାଇ ମୁର୍ଦାର ପାଖରେ ଜୁଆ ଖେଳନ୍ତି । ଏମାନଙ୍କର ବିଶ୍ୱାସ ଏଠାରେ ଜୁଆ

ଖେଳରେ ଯେ ଜିତବ ତାର ଭବିଷ୍ୟତ ଖୁବ୍ ଭଲ ହେବ ଏବଂ ଯେଉଁ କୁଟୁମ୍ବରେ ମୁର୍ଦ୍ଦାର ଏହାପରଷ୍ଟବରେ ବେଶି ଦିନ ପଡ ରହେ ସେ ସେମାନଙ୍କ ବଡ଼ଲୋକ ବୋଲି ଗଣା ଯାଇଥାଏ । ଏହିପରି ବି ଦୁଇ ତିନି ମାସ ଧରି ଏହା ଚାଲୁ ରହିଥାଏ । କଫିନ୍ ଭିତରେ ବି ମୁର୍ଦ୍ଦାରକୁ ତେଲ ଦେଇ ରଖିଥାନ୍ତି । ଦୁଃଖ ସଙ୍ଗେ ସଙ୍ଗେ ଏ ସବୁ ଖାନା ପିନାର ବି ଧୂମ୍ ଛୁଟିଥାଏ । ସାଧାରଣତଃ ଶିକ୍ଷିତ ବର୍ମୀଙ୍କମାନେ ଶୋକ ପାଳନ ପାଇଁ ହାତରେ କଳାକନା ଭିଡ଼ିଥା'ନ୍ତି ।

ମିଲିଟାରି ଶାସନ ସମୟରେ କିପରି ପ୍ରାଣଦଣ୍ଡ ଦିଆ ହେଉ ଥିଲ (ବ୍ରିଟିଶ୍ ପଦ୍ଧତିରେ) ମୁଁ ପ୍ରଥମେ ତାହା ରେଙ୍ଗୁନ୍‌ରେ ଦେଖିଲି । କୌଣସି ଗୁପ୍ତ ପ୍ରଣୟ ବ୍ୟାପାର ନେଇ ଗୋଟିଏ ଗ୍ରାମର ବାପ ପୁଅ ମିଶି ତାଙ୍କର ବୋହୂ ଓ ଗୁପ୍ତ ପ୍ରଣୟୀଙ୍କୁ ହତ୍ୟା କଲେ ଏବଂ ଏହି Case ଟି ପ୍ରମାଣିତ ହେବା ଫଳରେ ହତ୍ୟାକାରୀ ଦୁଇଜଣଙ୍କୁ ପ୍ରାଣଦଣ୍ଡ ଆଦେଶ ହେଲା । ଫାଶି ନ ହୋଇ ଅର୍ଡର ହୋଇଥାଏ **'Shot to death'** କିପରି କ'ଣ ହେଉଛି ଦେଖିବାର ପ୍ରବଳ ଇଚ୍ଛା ହେଲା ଏବଂ ମୁଁ ଅନୁମତି ପାଇଲି ଦେଖିବା ପାଇଁ । ଓଃ, ସେ ଦିନର ଦୃଶ୍ୟ ଆଜି ଲେଖିଲା ବେଳକୁ ବି ମନେ ପଡ଼ି ଦେହ ଶିହରି ଉଠୁଛି ।

ପ୍ରଥମେ ସେ ଦୁଇଜଣଙ୍କୁ ରାୟ ଶୁଣାଇ ଦିଆଗଲା । ଯେଉଁଦିନ ଦଣ୍ଡ ଦିଆଗଲା, ସେଦିନ ସକାଳୁ ସେମାନେ ଯେଉଁ ଜେଲ୍‌ରେ ଥିଲେ ସେଠାକୁ ଆଠ ଜଣ ଗୋରା ସିପାହୀ, ଜଣେ ମେଜର୍ ପ୍ୟାରେଡ୍ କରି ଗଲେ । ସମସ୍ତଙ୍କ ହାତରେ 'ବନ୍ଧୁକ' ରାଇଫଲ । "ମେଜରଙ୍କ ହାତରେ ଗୋଟିଏ ଷ୍ଟେନ୍‌ଗନ୍ !"

ଡାକ୍ତରଙ୍କ ପରୀକ୍ଷା ପରେ ମାଜିଷ୍ଟ୍ରେଟ ସାରାଂଶରେ ସବୁ ପଢ଼ି ଶୁଣାଇ ଦେଲେ । ତା'ପରେ ଆଖିରେ କଳାକନା ଭିଡ଼ା ହୋଇ ସେ ଦୁଇଜଣଙ୍କୁ ନିଆଗଲା । ଜେଲ୍ ହତା ଭିତର ପଡ଼ିଆରେ ଦୁଇଟି ଚଉକି ପଡ଼ିଲା । ଚଉକିର ପଛ ପଟେ ତାଙ୍କର ଦେହ ଓ ହାତ ଖୁବ୍ ଜୋର୍‌ରେ ବାନ୍ଧି ଦିଆଗଲା । ଠିକ୍ ବୁକ ଉପରେ ଗୋଟିଏ ଚାରିକୋଣିଆ କଳାଚକ୍କା ଦେଇ ଠିକ୍ ମଝିରେ ଗୋଟିଏ ପ୍ରାୟ ୪ଇଞ୍ଚ ବ୍ୟାସର ଗୋଲାକାର କଳାଚକ୍କା ଥିବା ରୁମାଲ ବାନ୍ଧି ଦିଆଗଲା । ଗୋଡ଼

ଦୁଇଟି ବ ବାନ୍ଧ ଦିଆ ଗଲା, ଯେମିତି କି ସେମାନେ ହଲ୍‌ଚଲ୍ ହୋଇ ପାରିବେ ନାହିଁ ।

ପ୍ରାୟ ୨୦ ଗଜ ଦୂରରେ ପ୍ରଥମେ ୬ଜଣ ସିପାହୀ ଶୋଇ ରହି (Lying Position) ବନ୍ଧୁକ ସଙ୍ଗାଡ଼ି ମଡ଼ି ରହିଲେ । ଆଉ ୬ଜଣ ଆଣ୍ଠୁ ମାଡ଼ି (Kneeling Position) ବନ୍ଧୁକ ଧରିଲେ । ଆଉ ପାଞ୍ଚଜଣ ଠିଆହୋଇ ଲକ୍ଷ୍ୟ କଲେ । ସମସ୍ତଙ୍କର ଲକ୍ଷ୍ୟ ସେ ଗୁଡ଼ି ଉପର କଳା ଦାଗକୁ । ଏହିପରି ଗୋଟିଏ ଲୋକ ପାଇଁ ୧୬ଜଣ ରହିଲେ ସେ ଦୁଇଜଣଙ୍କ ସାମ୍‌ନାରେ । ଏପରି ସଜା ହେବା ପରେ ଠିକ୍ ସମୟ ଦେଖି ମାଜିଷ୍ଟ୍ରେଟ ଧଳା ରୁମାଲ ଉଠାଇଲେ । ମେଜର କହିଲେ "ଫାୟାର"— ଗୁଡ଼ୁମ୍ ଗୁଡ଼ୁମ୍ ହୋଇ ୩୦ଟି ଫାୟାର ହେଲା । ସଙ୍ଗେ ସଙ୍ଗେ ମେଜର ଯାଇ ଗୋଟିଏ ଲୋକର ସେହି ଛାତି ଉପରେ ୩୨ଟି କରି ଷ୍ଟେନ୍‌ଗନ ଫାୟାର କଲେ ।

ରକ୍ତର ସୁଅ ଛୁଟିଥାଏ, ଚୌକୀ ଉପରକୁ ନେଇ ବସାଇବା ପରେ ବୃଦ୍ଧର ହୃତ୍‌ପିଣ୍ଡ ପ୍ରାୟ ବନ୍ଦ ହୋଇ ସାରିଥିବା ପରି ଆମକୁ ଜଣା ଯାଉଥାଏ । ଏ ସବୁ ପରେ ସମସ୍ତେ କଳାକନା ଖଣ୍ଡେ ଖଣ୍ଡେ ବାହୁରେ ବାନ୍ଧିଲେ । ମେଜର୍ ପଛକୁ ପାଦେ ଆସି "ଆଟେନ୍‌ସନ୍" ଅବସ୍ଥାରେ ମୁଣ୍ଡ ଟୋପି ଉଠାଇ ନଇଁ ସାଲ୍ୟୁଟ୍ ଦେଲେ । ମିଲିଟାରୀ ଡ୍ରମ ବଜା ଉଠିଲାବେଳକୁ ଆମେ ପାର୍ । ସେ ଦିନଯାକ ମୁଁ ଖାଇ ପାରି ନାହିଁକି ରାତିରେ ଶୋଇ ପାରି ନାହିଁ ।

ରେଙ୍ଗୁନରେ ଥିବାବେଳେ ସପ୍ଲାଇ ବ୍ରାଞ୍ଚରୁ ଟ୍ରାନ୍‌ସପୋର୍ଟ ବ୍ରାଞ୍ଚକୁ ବଦଳି ହେଲି । ମୋର କମ୍ପାନୀର ନାମ ୯୦୧ ନଂ G. P. T. (ଜେନେରାଲ ପରଟେସନାଲ ଟ୍ରାନସ୍‌ପୋର୍ଟ) ଜି: ପି: ଟି: ର କାମ ସପ୍ଲାଇ ଜିନିଷ ଓ ମଣିଷ ମାନଙ୍କୁ ବୋହିବା ।

ଆମ କମ୍ପାନୀରେ ୭୦୦ ଖଣ୍ଡ ଟ୍ରକ । ୩ ଟନ୍ ୫ ଟନ୍ ଲରୀ ସବୁ ଏହି କମ୍ପାନୀ ଭିତରେ ସମସ୍ତେ ମୁସଲମାନ, କେବଳ ଆଠଜଣ ହିନ୍ଦୁଙ୍କ ମଧ୍ୟରୁ ମୁଁ ଜଣେ । ସେଥିରୁ ପ୍ରାୟ ୧।୩ ଭାଗ ବଙ୍ଗାଳୀ ମୁସଲମାନ, ବିଶେଷ କରି ନୂଆଖାଲି କୁମିଲା, ସିଲ୍‌ହଟ୍ ଓ ଚଟ୍ଟଗ୍ରାମ ପ୍ରଭୃତିର । ବଙ୍ଗଳା କଥା କହୁଥିବାରୁ ବଙ୍ଗାଳିମାନେ ସବୁ "ଦାଦା" କହି ମୋ ସଙ୍ଗେ

ବେଶୀ ସନ୍ନିଷ୍ଠତା ଜମାଇଥିଲେ । ବାକୀ ସବୁ ଉତ୍ତର ଭାରତୀୟ ମୁସଲମାନ । ଦୈବ କ୍ରମେ ସେହି କମ୍ପାନୀରେ ଗୋଟିଏ ଓଡ଼ିଆ ଭଣ୍ଡାରୀ ଥିଲା । ତାର ଘର ପିପିଲିରେ । କିଛିଦିନ ପରେ ମୋତେ ଯିବାକୁ ପଡ଼ିଲା ଲାହୋର । ଲାହୋରରୁ ଗଲି ପେଶ୍‌ୱାର । ପେଶ୍‌ୱାରରୁ ୧୫ ଦିନ ସକାଳେ ଗଲି ଲଣ୍ଡିକୋଟଲ ବାନୁ, କୋହାଟ୍ ଗିରି ସଙ୍କଟ (Pass) ଦେଇ ଯିବାକୁ ହୁଏ ।

ଏ ସବୁ ଯାଗାରେ ପ୍ରାୟ ସମସ୍ତେ ଇସ୍‌ଲାମ ଧର୍ମୀ । ଶେଖ୍, ସୟଦ୍, ମୋଗଲ ଓ ପଠାନ ଗୃହ ଜାତି ମୁସଲମାନଙ୍କ ମଧ୍ୟରୁ ଏମାନେ ହେଉଛନ୍ତି ସବୁ ପଠାନ (ସାଧାରଣତଃ ଓଡ଼ିଶାରେ ମୁସଲମାନ ମାନଙ୍କୁ ସମସ୍ତେ ପଠାଣ ବୋଲି କହୁଥାନ୍ତି) ମୁଣ୍ଡରେ ସମସ୍ତଙ୍କର କୁଲ ଓ ପଗଡ଼ି । ବାନୁ, କୋହାଟ୍ ପ୍ରଭୃତି ଅଞ୍ଚଳରେ ଇଂରାଜୀ ମାନଙ୍କୁ ପଗଡ଼ି ପିନ୍ଧିବାକୁ ବାଧ୍ୟ କରା ହୋଉଥାଏ । ନ ହେଲେ ମରଣ ନିଶ୍ଚିତ । ଇଂରେଜମାନଙ୍କ ପର ପଠାଣମାନେ ବି ଗୋରା ।

ଖାଁ ଅବଦୁଲ ଗଫର ଖାଁ (ସୀମାନ୍ତ ଗାନ୍ଧୀଙ୍କ) ଦେଶ ଉତ୍ତର ପଶ୍ଚିମ ସୀମାନ୍ତ ପ୍ରଦେଶ ଅବିଭକ୍ତ ଭାରତର ଗୋଟିଏ ପ୍ରଦେଶ ।

ଆପଣମାନେ ଓ୍ୱାଜିର ସ୍ଥାନ ଅପେରେସନ୍ କଥା ଶୁଣିଥିବେ । ଏଇଠାରୁ ଉପ ସୀମାନ୍ତ ପ୍ରଦେଶର ଆରମ୍ଭ । ଲଣ୍ଡିକୋଟଲ ଯିବାକୁ ହେଲେ ୫୦ ମାଇଲ ବାଟ ଏହି ଦୁର୍ଗମ ଗିରିପଥ ଦେଇ ଯିବାକୁ ହୁଏ ଏବଂ ପଠାନମାନେ ଇଂରେଜମାନଙ୍କୁ ମସ୍ତକ ମାଡ଼ ଦଅନ୍ତି । ବ୍ରିଟିଶ ସମସ୍ତଙ୍କୁ ଜୟ କଲେ, କିନ୍ତୁ ଓ୍ୱାଜିର୍ ମାନଙ୍କୁ ପାରିଲେ ନାହିଁ । ପାହାଡ଼ିଆ ମେଷ ପାଳକ ଏମାନେ—ପାଣିର ବିଶେଷ ଅଭାବ ଏଠାରେ । ଏମାନେ ଲୋକ ମାନଙ୍କୁ ଆକ୍ରମଣ କରି ଏବଂ ସମୟେ ସମୟେ କି ପେଶ୍‌ୱାରକୁ ମୈତ୍ରୀ କରି ଚାଲନ୍ତି । ବର୍ତ୍ତମାନ ବି ପାକିସ୍ଥାନ ସରକାରଙ୍କୁ ଏମାନେ ପାଣି ପିଆଉଛନ୍ତି । ଏମାନଙ୍କୁ ଜୟ କରିବା ବଡ଼ କଷ୍ଟ । ପ୍ରତ୍ୟେକ ପିଲା ହାତରେ ବନ୍ଧୁକ । କୌଣସି ଟୋପିଦିଆ ଲୋକ ସେମାନେ ଦେଖିଲେ ଗୁଳି ଚଳାନ୍ତି । ସେଥିପାଇଁ ବ୍ରିଟିଶ ଲୋକ ଏମାନଙ୍କୁ ଡରନ୍ତି ଏବଂ ପଗଡ଼ି ପିନ୍ଧି ଚାଲନ୍ତି ।

ସେତେବେଳର କୋହାଟ୍‌ର କଥା କହୁଛି—ପୂର୍ବ ଗୋଟିଏ ଜିଲ୍ଲାରେ ଜଣେ କେବଳ ଗ୍ରାଜୁଏଟ୍। ମୋର ଜଣେ ସାଙ୍ଗ ମ୍ୟାଟ୍ରିକୁଲେଟ୍। ଜଣେ ବଡ଼ ଜମିଦାର (ଆମ ଆଡ଼ର ସର୍ବରାହକାର ପରି)ର ପୁଅ। ଛଅଦିନ ଛୁଟି ନେଇ ମୋତେ ତାଙ୍କ ଗାଁକୁ ଯିବାକୁ ଡାକିଲା। ମୁଁ ଗଲି। ଗୋଟିଏ ହେଲେ ପୁରୁଷ ଦେଖି ନାହିଁ—ଯାହାର ଉଚ୍ଚତା ଛ ଫୁଟରୁ କମ୍। ଗୋଟିଏ ହେଲେ ସ୍ତ୍ରୀଲୋକ ଦେଖି ନାହିଁ—ଯେଉଁମାନେ ୫ ୧ ଫୁଟରୁ କମ୍ ଉଚ୍ଚ। ମୁଁ ସେମାନଙ୍କ ଆଗରେ ଠିକ୍ ବାମନ ପରି। ସ୍ତ୍ରୀ ଲୋକମାନେ ଖୁବ୍ ଗୋରା ଏବଂ ସୁନ୍ଦରୀ। ପ୍ରାୟ ସମସ୍ତେ ବୁର୍ଖା ପରିଧାନ କରନ୍ତି। ବୁର୍ଖାତଳେ ଛୁରୀ ରଖି ଚାଲବୁଲ କରନ୍ତି। ଅତର୍କିତ ଭାବରେ କେହି ଆକ୍ରମଣ କଲେ ତାର ସଦ୍‌ବ୍ୟବହାର କରନ୍ତି। ପୁରୁଷମାନେ ପ୍ରାୟ ସମସ୍ତେ ବନ୍ଧୁକ ବ୍ୟବହାର କରନ୍ତି। ଶୁଣିଲି ସେମାନଙ୍କର ଅନେକ ଗୁପ୍ତ ବନ୍ଧୁକ କାରଖାନା ଅଛି। ସେମାନେ ଭାରତୀୟ ବାହିନୀ ଥିବା ଛାଉଣୀମାନ ରାତିରେ ଚଢ଼ାଉ କରନ୍ତି ଓ ଛାଉଣୀ ମଧ୍ୟରେ ଯେଉଁ ଗୋଲା ବାରୁଦ ଓ ବନ୍ଧୁକ ପ୍ରଭୃତି ଥାଏ, ତାକୁ ନେଇ ପଳାନ୍ତି। ଦରକାର ପଡ଼ିଲେ କମାଣ୍ଡର ଓ ତାଙ୍କ ପିଲାଛୁଆଙ୍କୁ ବି ବନ୍ଦୀ କରି ନେଇଯାନ୍ତି।

ମୁଁ ଥିବା ସମୟରେ ଏପରି ୪ଟି ଘଟଣା ଘଟିଥିଲା।

ସେମାନେ ଖାସ୍ ଗୋରା ଲୋକଙ୍କୁ ଧରନ୍ତି। ଜଣେ ଇଂରେଜ ଲେଫ୍‌ଟେନାଣ୍ଟ କର୍ଣ୍ଣେଲଙ୍କ ସ୍ତ୍ରୀକୁ ନେଇଯାଇ ଆର୍ମି ହେଡ଼ କ୍ୱାର୍ଟରସ୍‌କୁ ଲେଖିଲେ—"ଦଶହଜାର ଟଙ୍କା ଅମୁକ ଜାଗାରେ ରଖିଦେଲେ ତୁମ ସ୍ତ୍ରୀକୁ ଫେରି ପାଇବ, ନଚେତ୍ ମାରିଦେବୁ।"

ଆଉ ଥରେ ଜଣେ କ୍ୟାପ୍‌ଟେନ୍ ଓ ତାଙ୍କ ପିଲାପିଲିଙ୍କୁ ବନ୍ଦୀ କରି ନେଇଗଲେ ଏବଂ ସରକାରଙ୍କୁ ଲେଖିଲେ ୪୦,୦୦୦ ଟଙ୍କା ଦେଲେ ଛାଡ଼ିଦେବୁ, ନଚେତ୍ ସମସ୍ତଙ୍କର ମୃତ ଦେହ ପଠାଇବୁ। ଏ ବେଶ୍ ଗୋଟିଏ ରୋଜଗାରର ପନ୍ଥା।

ଆଉ ଥରେ ମାତ୍ର ୪୦ ଜଣ ପଠାଣ ଅତର୍କିତ ଭାବେ ଆକ୍ରମଣ ଚଳାଇ ୨୦୦ ସୈନ୍ୟଙ୍କର ବନ୍ଧୁକ ଓ ଗୋଲା ବାରୁଦ ପ୍ରଭୃତି ନେଇ ପଳାଇଲେ।

ସେ ବନ୍ଧୁ ଜଣକ ସଙ୍ଗରେ ତାଙ୍କ ଗାଁରେ ମୋତେ ବହୁତ ଆଦର ଅଭ୍ୟର୍ଥନା କଲେ । ମୋର ସାଙ୍ଗ କହୁଥାଏ ଯେ "ତୁମକୁ ସେ ଯାହା ଦେବ, ତୁମେ ତାହା ଗ୍ରହଣ କରିବ ନ ହେଲେ ସେମାନେ ଖରାପ ଭାବିବେ ।"

ସେମାନେ ସବୁ "ପେସ୍ତୁ" ଭାଷା କହନ୍ତି । ଜଣେ ପଠାଣକୁ ଆପଣ ନମସ୍କାର କଲେ ସେ କହିବେ "ସ୍ତାଡା ମୋଷା" ସେ ଜବାବ ଦେବ 'ଦା ଖାସ୍ତାର ମୋଷା ।'

ତାଙ୍କ ଗାଁରେ ପହଞ୍ଚିବା ପରେ ଗାଁର ଜମିଦାରଙ୍କ ଘର ମୋର ରହିବା ଜାଗା ସ୍ଥିର ହେଲା । ଗାଁ ଯାକର ସମସ୍ତେ ମୋତେ ଦେଖିବାକୁ ଆସିଲେ । "ଏତେ ଛୋଟ ପିଲାଟି ପରି ଦିଶୁଛି—କିପରି ଏ ଲୋକ ଅଫିସର ହେଲା ।"

ପହଞ୍ଚିବା ପରେ ଜମିଦାରଙ୍କର ପୁଅ ଏବଂ ଜଣେ ଅତିଥି ହିସାବରେ ପ୍ରାୟ ଏକସେରିଆ ଗ୍ଲାସରେ ଖଣ୍ଡ (ଚିନିର ବ୍ୟବହାର ଏ ଅଞ୍ଚଳରେ ଖୁବ୍ କମ୍) ନେଇ ଦୁଧ ପିଇବାକୁ ଦେଲେ । ମୁଁ ତ ସହଜେ ଦୁଧପିଏ ନାହିଁ । ସେଥିରେ ପୁଣି ୧୨ ଗ୍ଲାସ ଦୁଧ ଏକାବେଳକେ । ମୁଁ ସବୁ ଦୁଧ ଗ୍ଲାସରେ ମୁହଁ ଲଗାଇ "ମେହେରବାନି" କହି କହି ରକ୍ଷା ପାଇଲି । ସେରେ ଅଟାରେ ଖଣ୍ଡେ ରୁଟି—ଜଉର ଭାରତର "ତନ୍ଦୁରି" ପରି ଏବଂ ଦୁମ୍ବା (ମେଷ ବିଶିଷ୍ଟ) ମାଂସ ପ୍ରାୟ ଏକସେରିଆ ପ୍ଲେଟ । ସେ ବେଳଟିରୁ ମୁଁ ଟିକିଏ ଖାଇ ପାରିଲି ନାହିଁ ।

ହସ ଖୁସି ମଧ୍ୟରେ ମୋର ସାଙ୍ଗର ବାପା କହିଲେ—

"ଏପରି ରୋଟି ୪ଖଣ୍ଡ ନିହାତି କମ୍‌ରେ ନ ଖାଇଲେ ତୁମେ କି ମଣିଷ ହେବ ? ସେଥିପାଇଁ ଏତେ ଦୁବଲା ପତଳା ତୁମର ଚେହେରା ।"

ତହିଁ ଆରଦିନ ମୋର ସାଙ୍ଗ ପଠାଣ ମାନଙ୍କର କେତେକ ବୈଶିଷ୍ଟ୍ୟ ଜିନିଷ ଦେଖାଇଲେ । ୧୨ ବର୍ଷର ପୁଅର ମୁଣ୍ଡ ଉପରେ ଖଣ୍ଡେ ଲେମ୍ବୁ କାଟି ରଖି ଦିଆଗଲା । ବାପ ବନ୍ଧୁକ ଲକ୍ଷ୍ୟ କରି ପୁଅ ମୁଣ୍ଡ ଉପରୁ ଲେମ୍ବୁକୁ ଉଡ଼ାଇ ଦେଲେ । ଘର ଉପରେ ରୋଟି ଖଣ୍ଡେ ବନ୍ଧା ଯାଏ । ତାକୁ ୧୦ ବର୍ଷର ପିଲାଟିଏ ବନ୍ଧୁକ ମାରି ତଳକୁ ଖସାଇଲେ, ମା' ମାନେ ତାକୁ ଖାଇବାକୁ ଦିଅନ୍ତି ।

ଗୋଟିଏ ଗାଁ ଅନ୍ୟ ଗାଁକୁ ଆକ୍ରମଣ କରିବା ଏକ ସାଧାରଣ କଥା । ଗଡ଼ରେ ଗାଁ ମୁଣ୍ଡର ଏକ ଘର ଉପରେ ଗାଁ ବାଲି ପାଳି କରି ପହରା ଦିଅନ୍ତି ଶତ୍ରୁ ଆକ୍ରମଣରୁ ରକ୍ଷା ପାଇବା ପାଇଁ । ଦିନବେଳେ ଗୋଟିଏ ଗାଁର ଲୋକେ ଅନ୍ୟ ଗାଁର ଲୋକଙ୍କ ସଙ୍ଗେ ଭଲ ବ୍ୟବହାର କରନ୍ତି । କିନ୍ତୁ ରାତି ହେଲେ ଯଦି ଦରକାର ପଡ଼େ ତେବେ ଗୋଟିଏ ଗାଁର ଲୋକେ ଅନ୍ୟ ଗାଁର ଲୋକଙ୍କ ଉପରେ ଆକ୍ରମଣ କରନ୍ତି ।

ଏମାନେ ଭାରତୀୟ ମାନଙ୍କୁ ଭଲ ଦୃଷ୍ଟିରେ ଦେଖନ୍ତି । କି ହିନ୍ଦୁ, କି ମୁସଲମାନ ସମସ୍ତଙ୍କୁ ଭାଇ ଦୃଷ୍ଟିରେ ଦେଖନ୍ତି ଓ ଭାଇ ବୋଲି ସମ୍ବୋଧନ କରନ୍ତି । କ୍ରମେ ମୁସଲମାନ ମାନଙ୍କର ହିନ୍ଦୁ ମାନଙ୍କ ପ୍ରତି ଘୃଣା ଭାବ ପ୍ରଚାରର ଫଳରେ ଏ ଅବସ୍ଥା ବଦଳି ଯାଉଛି । ତାଙ୍କ ଗାଁରେ ମୁଁ ତିନିଦିନ ରହି ଛୁଟି ଶେଷ କଲି । ଆସିଲାବେଳେ ସେମାନେ ମୋତେ ଗୋଟାଏ ଛୁରୀ ଉପହାର ଦେଇଥିଲେ ।

ମେଣ୍ଡୋୟାରରୁ ଲଣ୍ଡିକୋଟଲ ଆସିଥିଲୁ । ଆସିଲାବେଳେ ବାଟରେ ଆଗରେ ଦୁଇଟି ଓ ପଛରେ ଦୁଇଟି ଫାଇଟିଙ୍ଗ ପ୍ଲାଟୁନ ଗାଇବା ଜନିଷ ଓ ସୈନ୍ୟମାନଙ୍କୁ ଜଗି ଆସୁଥାନ୍ତି । ଏସବୁ ନ ହେଲେ ରାସ୍ତାରୁ ନିଶ୍ଚୟ ସବୁ ଚାଲିଯିବ ।

ଲଣ୍ଡିକୋଟଲର ଥଣ୍ଡା ମୁଁ ଜୀବନରେ କେବେହେଲେ ଅନୁଭବ କରି ନ ଥିଲି । ଆମକୁ ଦଶଟା କରି କମ୍ବଳ ଦିଆ ହୋଇଥାଏ । ଗରମ ପୋଷାକ ପିନ୍ଧି ତା ଉପରେ ବାରଟି କମ୍ବଳ ଘୋଡ଼ାଇ ହେବା ପରେ ଯେ କି ଶୀତ ହୁଏ, ତାହା ଯେ ଅନୁଭବ କରିଛି ସେ କେବଳ ଜାଣେ । ମୁଁ ହାତ ଦୁଇଟା ଖୋଲି ରଖିବାରୁ ତାହା ଫୁଲି ଫାଟି ଯାଇଥିଲା ।

କ୍ୟାମ୍ପରେ ଦିନବେଳେ କିଛି ନାହିଁ—ବାହାରକୁ ଗଲେ ବି କିଛି ଆଇଦା କଟକଣା ନାହିଁ । କିନ୍ତୁ ସନ୍ଧ୍ୟା ପରେ ବାହାରକୁ ବାହାରିବା ମନା । ସେଠାରେ ମିଲିଟାରି ଆଇନରେ ରାତି ଆଠଟା ପରେ ଏବଂ ସକାଳ ଆଠଟା ପୂର୍ବରୁ କେହି ପାଇଖାନାରେ ମଲେ ସରକାର ଦାୟୀ ନୁହନ୍ତି । ମୁଁ ଦେଖିନି । କିନ୍ତୁ ଶୁଣିଛି, ପାଇଖାନାରେ ବସି ସିଗାରେଟ୍ ଲଗାଇଲେ ହଠାତ୍ କେଉଁଆଡ଼ୁ ଗୁଳି ଆସି ତୁମ ସିଗାରେଟ୍ ଉଡ଼ାଇ

ନେବ । ଦିନବେଳେ ଯେଉଁମାନେ ଉପରେ କୁଲି କାମ କରନ୍ତି ସେମାନେ ହ ରାତରେ ଆକ୍ରମଣ କରନ୍ତି ।

ଏମାନଙ୍କର ଗୃହବାସ ନାହିଁ କହିଲେ ଚଳେ । ମେଷପାଳନ, ଓଟ ଚରାଇବା ଫାଙ୍କରେ ଗୃହକର୍ମ କରିବା ଏବଂ ଖୁବ୍ କମ୍ ଜାଗାରେ ପାଣି ଦେଖି ଗୃହ କରିବା ଏମାନଙ୍କର ପ୍ରଧାନ ଭରଣ ପୋଷଣର ଉପାୟ । ଏଠାରେ ସାଧାରଣତଃ "ପେଟ ପୋଷ ନାହିଁ ଦୋଷ" ନୀତି ବଲମ୍ବନ କରିଥାନ୍ତି ।

ବ୍ରିଟିଶ ଶାସନ ଚାଲିଲା ଦିନୁ ଓ୍ୟାଜିର ସ୍ଥାନ ଅପରେସନ୍ ଭାରତରେ ଚାଲିଛି—କିନ୍ତୁ ଗୋରାମାନେ ଓ୍ୟାଜିର ଦାନଙ୍କୁ ଜବଦ କରି ପାରି ନାହାନ୍ତି ।

ଇପିର ଫକୀରଙ୍କ କଥା ସମସ୍ତେ ଜାଣିଥିବେ । ବର୍ତ୍ତମାନ ପାକିସ୍ଥାନ ସରକାରଙ୍କ ସଙ୍ଗରେ ସେମାନଙ୍କର ଲଢ଼ାଇ ।

ଲଣ୍ଡିକୋଟାଲରେ ମୋର ବେଶୀ ଦିନ ରହିବା ହେଲ ନାହିଁ । ମୁଁ ପୁଣି ଫିରୋଜପୁରକୁ ଫେରି ଆସିଲି । ସେଠାରୁ ସିଙ୍ଗାପୁର ଆସିବାକୁ ଅର୍ଡର ପାଇଲି । କଲିକତାରୁ ଜାହାଜରେ ସିଙ୍ଗାପୁର ଆସିଲି ।

ପନ୍ଦର ଦିନ ପରେ ପ୍ରଥମେ ସିଙ୍ଗାପୁର ବନ୍ଦରରେ ଓହ୍ଲାଇବା ମାତ୍ରେ ଲରୀରେ ବସି କେଉଁଠି ଚାଲିଲୁ । ଗୋଟିଏ ବଡ଼ ଦୁଇ ମହଲା କୋଠାରେ ଆମର ଅଫିସ ଓ ରହିବାର ଜାଗା ହେଲା । ସନ୍ଧ୍ୟାବେଳ ବଧ୍ୟସ୍ତ ବଜାର ଆଡ଼େ ବୁଲି ବାହାରିଲୁ ମୁଁ ଓ ଆଉଜଣେ କେରଳ ବନ୍ଧୁ । ବାଟରେ ଯେତେ ସିଭିଲ୍ୟାନ ଭାରତୀୟ ଦେଖୁଥାଉ ସେମାନଙ୍କ ସଙ୍ଗରେ କଥାବାର୍ତ୍ତା ହେବାପୂର୍ବରୁ ସେମାନେ ଆମକୁ "ଜୟହିନ୍ଦ୍" କହୁଥାନ୍ତି ଓ ଛି, ଛି, ଥୁ, ଥୁ କରୁଥାନ୍ତି କହନ୍ତି, "ବ୍ରିଟିଶ୍‌କା କୁତ୍ତା ।"

ଭୀଷଣ ପରିସ୍ଥିତି—ଭାରତୀୟ ଆବାଳ ବୃଦ୍ଧ ବନିତା ବ୍ରିଟିଶ ଭାରତୀୟ ସୈନ୍ୟମାନଙ୍କୁ ସେହି ଭାଷାରେ କହୁଥାନ୍ତି । I. N. A.ର ପତନ ଏବଂ ବ୍ରିଟିଶ ଯୁଦ୍ଧରେ ଜିତିବାରୁ ଆମପ୍ରତି ଏମାନଙ୍କର ଘୃଣା ବଢ଼ିଗଲା । ବିଶେଷ କିଛି କହିବା ଆଗରୁ I. N. A. ଓ ନେତାଜୀଙ୍କ ବିଷୟ କିଛି କହେ ।

୧୯୪୦ ଜୁଲାଇ ୨ ତାରିଖରେ ସୁଭାଷଚନ୍ଦ୍ର ବୋଷ କଲିକତାରେ "ଅନ୍ଧକୂପ ହତ୍ୟାର" ସ୍ମୃତିସ୍ତମ୍ଭ ଉଠାଇଦେବା ଆନ୍ଦୋଳନ ଯୋଗୁଁ ବନ୍ଦୀ ହେଲେ । ତାପରେ ସେ ଜେଲ୍ ଭିତରେ ଥାଇ ଅନଶନ କଲେ । କର୍ତ୍ତୃପକ୍ଷ ଜବରଦସ୍ତି କରି ଖୁଆଇ ପାରିଲେ ନାହିଁ । ଅନଶନ କରିବାର ଛଅଦିନ ପରେ ତାଙ୍କୁ ଜେଲ୍‌ରୁ ମୁକ୍ତ ଦିଆଗଲା ଏବଂ ସେ ତାଙ୍କ କଲିକତା ଘରେ ରହିବା ପାଇଁ ଅନୁମତି ପାଇଲେ ।

୧୯୪୧ଜାନୁୟାରୀ ୨୬ତାରିଖକୁ ତାଙ୍କ ବିରୁଦ୍ଧରେ ଥିବା ସବୁ ଅଭିଯୋଗ ବିଗୃର ହେବାର ଥିଲା । ତାଙ୍କ ଘରେ ଥିବା ସମୟରେ, ସେ କାହାରିକୁ ଦେଖା ଦେବାକୁ ମନାକଲେ ଏପରିକି ଜାନୁୟାରୀ ୧ ତାରିଖରେ କେହି କେହି ବନ୍ଧୁ ତାଙ୍କୁ ଦାଢ଼ି ରଖିଥିବାର ଦେଖିଥିଲେ ।

୧୭ତାରିଖ ଜାନୁୟାରିରେ ତାଙ୍କଘର ପାଖକୁ ଖଣ୍ଡେ ମୋଟର ଗଲା । ଘରର ଗୋଟିଏ ବାଟରୁ ମୌଲବୀ ଜିଆଉଦ୍ଦିନ ନାମଧାରୀ ଜଣେ ବାହାରି ମୋଟରରେ ବସିଲେ । ସଙ୍ଗରେ ତାଙ୍କର ଜଣେ ପୁତୁରା ଶିଶିର କୁମାର ବୋଷ ଥିଲେ । କାଳେ କଲିକତାରେ ଗାଡ଼ି ଚଢ଼ିଲେ ଧରାପଡ଼ିଯିବେ, ଏହି ଭୟରେ କଲିକତାଠାରୁ ୨୧୦ମାଇଲରେ ଥିବା "ଗମୋ" ଷ୍ଟେସନରେ ପେଶବାରକୁ ଟିକେଟ କାଟିଲେ । ପେଶବାରରେ ଜଣେ ଭଗତରାମ ତାଙ୍କୁ କାବୁଲ ପର୍ଯ୍ୟନ୍ତ ନେଇ ଛାଡ଼ି ଦେବାର ଭାର ନେଲେ ।

ଭଗତରାମ ପଠାଣ ବେଶରେ ନିଜକୁ ରହମତ ଖାଁ ବୋଲି ପରିଚୟ ଦେଲେ ଏବଂ ସୁଭାଷଚନ୍ଦ୍ର ବୋଷ କାଲ ଓ ମୂକ ସାଜିଲେ । ଅତଏବ ଭାଷା ବୁଝି ପାରୁ ନାହାନ୍ତି ବୋଲି ତାଙ୍କୁ କେହି ଆଉ ସନ୍ଦେହ

କଲେ ନାହିଁ । ପେଶବାର ଠାରୁ ଖଣ୍ଡେ କାର୍‌ରେ କାବୁଲ ରାସ୍ତାରେ ଗଲେ ।

ବାଟରେ ଜାମରୁଦ୍‌ ଠାରେ ଖାଇବର ପାସ୍‌କୁ ଯିବାକୁ ବନ୍ଦୋବସ୍ତ ହୋଇଅଛି । ସୁତରାଂ ତା ପୂର୍ବରୁ ସେ ପାହାଡ଼ିଆ ରାସ୍ତା ଧରିଲେ ଯେତେବେଳେ ଆମ ମୋଟର ଚଳାଇ ନ ହେବା ସମୟରେ ଗୋଟିଏ ପଠାନ୍ ଗାଁରେ ରହି, ତେଣିକି ପାଦରେ ଆଗ୍ରା ଧରିଲେ । ତାଙ୍କ ସଙ୍ଗରେ ଦୁଇଜଣ ସଶସ୍ତ୍ର ପଠାଣ ଯୁବକ ଜଗୁଆଳି ରୂପେ ଗଲେ ଆଫଗାନ୍ ସୀମାନ୍ତରେ ପହଞ୍ଚିଲେ ।

ଦ୍ୱିତୀୟ ଦିନ ବାଟ ଚାଲିବାରେ କାବୁଲ ନଦୀ ପାରହୋଇ "ଆଦାଶରୀଫ" ନାମକ ଗୋଟିଏ ମସ୍‌ଜିଦ୍‌ରେ ରାତି କାଟିଲେ । ସେଠାରୁ ଯାଇ ପହଞ୍ଚିଲେ ଲାଲପୁରରେ ।

ଏହାପରେ ୪ର୍ଥ ଦିନ ପୁଣି ଆଉଥରେ କାବୁଲ ନଦୀ ପାରହୋଇ ଆଫ୍‌ଗାନସ୍ଥାନ ଭିତରେ ଗଲେ । ନଦୀ ପାଖରୁ ପଠାନ ବନ୍ଧୁ ଦୁଇଜଣ ବିଦାୟ ନେଲେ । ସୁଭାଷବୋଷଙ୍କୁ ବହୁତ ବାଧିଲା ଏବଂ ସେ ରାସ୍ତା କଡ଼ରେ ଶୋଇ ପଡ଼ିଲେ । ଭଗତରାମ ଓରଫ୍ ରହମନ ଖାଁ ଗୋଟିଏ ମଟର ଗାଡ଼ି ଖୋଜିବାକୁ ଲାଗିଲେ । ଶେଷରେ ଗୋଟିଏ ଖୋଲା ଲରୀରେ ସେମାନେ ସ୍ଥାନ ପାଇଲେ ଏବଂ ସନ୍ଧ୍ୟାରେ ସେ ଲରୀରେ ବସି ଥଣ୍ଡାରେ ଅଧା ବରଫ ପାଲଟି କୌଣସି ମତେ କାବୁଲରେ ପହଞ୍ଚି ରାତି କଟାଇବାକୁ ଜାଗା ଖଣ୍ଡେ ପାଇଲେ ନାହିଁ । ବଡ଼ କଷ୍ଟରେ ଶେଷରେ ଜଣେ ବଡ଼ ଲରୀ ଡ୍ରାଇଭରର କୁଡ଼ିଆରେ ଆଶ୍ରୟ ପାଇଲେ ।

ଭଗତରାମ ବଜାରରୁ କିଛି ଶୁଖିଲା ରୋଟି ଓ କବାବ (ମାଂସ ବିଶେଷ) କିଣି ଆଣିଲେ ଏବଂ ଆଲୁଅ ପାଇଁ ଗୋଟିଏ ମହମବତୀ ଆଣିଲେ । ଶୁଖିଲା ରୋଟି ସେପରି ଖାଇ ନ ପାରି କପେ ଚା' ଅଣାଇ ସେଥିରେ ବୁଡ଼ାଇ ଖାଇ ରାତି କଟାଇଲେ ।

ସେଠାରେ ୩ଦିନ ରହି ରୁଷ ଦୂତାବାସ ସଙ୍ଗେ ସମ୍ବନ୍ଧ ସ୍ଥାପନ କରିବା ପାଇଁ ଚେଷ୍ଟା ଚଳାଇଲେ, କିନ୍ତୁ ବୃଥା ହେଲା । କାବୁଲରେ ତାଙ୍କର କେହି ସାଥୀ କି ବନ୍ଧୁ ନ ଥିଲେ । ତା ଛଡ଼ା ଭଗତରାମଙ୍କ ପୋଷାକପତ୍ର ତାଙ୍କୁ ବିଶେଷ ସାହାଯ୍ୟ କରି ପାରିଲା ନାହିଁ । କାରଣ

ସେଠାରେ ପଶୀକ୍ଷା ଚଳେ । ମଟରଗଡ଼ୁ ଆସି କାନ୍ତାରରେ ପଡ଼ିବା କଥା । ପଶ୍ଚୟ ପାଇଗଲେ ସର୍ବନାଶ । ଯୁଦ୍ଧ ସମୟରେ କିଏ ଏଠାରେ ବ୍ରିଟିଶ ଏଜେଣ୍ଟ ତ କିଏ ସି: ଆଇ: ଡି: ଥାଇପାରେ ।

ବରଫ ପଡୁଥିବା ଯୋଗୁଁ ଅତ୍ୟନ୍ତ ଥଣ୍ଡା ହେଉଥାଏ । କାଲି ଓ ମୂକର ଅଭିନୟ କରୁଥାନ୍ତି । ଏସବୁ ତାଙ୍କ ମନରେ ନୈରାଶ୍ୟଭାବ ଆଣିବା ସଙ୍ଗେ ସଙ୍ଗେ ଦୃଢ଼ତା ବି ଆଣିଦେଲା । ଶେଷରେ ସେ ଭଗବତ ବମ୍‌ଙ୍କୁ ଇଟାଲୀୟ ଦୂତାବାସକୁ ପଠାଇଲେ । ସେତେବେଳକୁ ପାଞ୍ଚଦିନ ହୋଇ ଗଲାଣି—କିନ୍ତୁ ତାଙ୍କର କାମ ସଫଳ ହେଲା ।

ଇଟାଲୀୟ ଦୂତାବାସର ଲୋକେ ପାଶପୋର୍ଟ ଦେବାକୁ ହଁ କଲେ ଏବଂ ତାଙ୍କୁ ବନ୍ଧୁଭାବେ ଆଦର ଅଭ୍ୟର୍ଥନା କଲେ ।

କାବୁଲରୁ ରୋମ କିମ୍ବା ବର୍ଲିନ ଯିବାକୁ ହେଲେ ମସ୍କୋଦେଇ ଯିବାକୁ ପଡେ । ମସ୍କୋରେ ପହଞ୍ଚିବା ତାଙ୍କର ଲକ୍ଷ୍ୟ ଥିଲା । କିନ୍ତୁ ସେତେବେଳେ ଯୁଦ୍ଧର ଗତି ଅଲଗା, ସୁତରାଂ ତାଙ୍କୁ ଇଚ୍ଛା ବିରୁଦ୍ଧରେ କାମ କରିବାକୁ ପଡ଼ିଲା ।

ଜାନୁୟାରୀ ୨୬ ତାରିଖରେ ଏଣେ କଲିକତାରେ ବୋଷଙ୍କ ଅନ୍ତର୍ଦ୍ଧାନ ଖବର ପ୍ରଚାରିତ ହେଲା । କାବୁଲରେ ଆଫଗାନ ପୋଲିସ୍ ଦୁଇଜଣ ଯାତ୍ରୀ ଲିସ୍ତବାଲାର ଆଶ୍ରୟସ୍ଥଳରେ ରହୁଥିବା ଖବର ପାଇ ଖୋଜି ବସିଲେ । ଲୁଚି ଲୁଚି ଶେଷରେ ଫେବୃୟାରୀ ୨ନା ତାରିଖରେ ସେଠାରେ ଜଣେ ଭାରତୀୟ ଶ୍ରୀ ଉତ୍ତମଚାନ୍ଦ ସବୁଜାଣି ତାଙ୍କୁ ନିଜ ଘରେ ଆଶ୍ରୟ ଦେଲେ ।

ଧରାପଡ଼ିବାର ଭୟ ଗଲା । ସେଠାରେ ସେ ତିନି ସପ୍ତାହ ରହିଲେ । ତଥାପି ସେ ରୁଷମାନଙ୍କ ସହିତ ସମ୍ବନ୍ଧ ସ୍ଥାପନ କରିବାପାଇଁ ଚେଷ୍ଟା ଚଳାଇ ଥାନ୍ତି । ଏଣେ ଇଟାଲୀୟମାନଙ୍କ ବିଳମ୍ବତା ବୋଷଙ୍କୁ ଅସ୍ଥିର କରି ପକାଉଥାଏ । ତେବେ ଯାହାହେଉ ୧୮ ତାରିଖ ମାର୍ଚ୍ଚରେ "ଅଲାଣ୍ଡୋ ମାସୋଟା" ନାମରେ ତାଙ୍କୁ ଖଣ୍ଡେ ପାଶପୋର୍ଟ ମିଳିଲା ଏବଂ କେତେଜଣ ଚରଙ୍କ ସଙ୍ଗେ ତାଙ୍କୁ ରୁଷିଆର ସୀମାନ୍ତ ଦେଶକୁ ଯିବାକୁ ହେଲା ।

କାବୁଲରୁ ବୋଖରା, ହିନ୍ଦୁକୁଶ ଓ ପସକୁଗାନର ସଙ୍କୁଳମୟ ପଥ । ଆଫଗାନିସ୍ଥାନର ଷ୍ଟେପି ପ୍ରଦେଶ, ମଜାର ଇ-ଶରିଫ, ଅକ୍ସସର ଭୟାବହ ଜଙ୍ଗଲ, ପରେ କେଶରର ଦୁର୍ଗମ ଗିରିନଦୀ ପଥ ଏବଂ ସମରକନ୍ଦ ଦେଇ ଶେଷରେ ରେଲ ଯୋଗେ ମସ୍କୋରେ ପହଞ୍ଚିଲେ ଏବଂ ୧୯୪୧ ମାର୍ଚ୍ଚ ତା୨୮ ରିଖରେ ମସ୍କୋରୁ ବର୍ଲିନକୁ ଉଡ଼ାଜାହାଜ ଯୋଗେ ଯାଇ ପହଞ୍ଚିଲେ । ରୁଷିଆ ଯିବାର ଆଉ ହେଲ ନାହିଁ ।

କାବୁଲରେ ଥିଲାବେଳେ ତାଙ୍କ ସଙ୍ଗରେ ବହୁତ ବିଦେଶୀଙ୍କର ଭାରତର ସ୍ୱାଧୀନତା ବିଷୟରେ ଆଲୋଚନା ହୋଇଥିଲା ଏବଂ ସେତେବେଳେ ତାଙ୍କୁ ପ୍ରଶ୍ନ କରା ଯାଇଥିଲା—

"ଯଦି ଭାରତ ସ୍ୱାଧୀନତା ପାଏ, ତାହେଲେ ବର୍ତ୍ତମାନ ଭାରତରେ ଥିବା ଜାତିଭେଦ, ସାମ୍ପ୍ରଦାୟିକ ଓ ପ୍ରାଦେଶିକ ଭେଦଭାବ ମଧ୍ୟରେ ସ୍ୱାଧୀନତାକୁ ବଞ୍ଚାଇ ପାରିବ ?"

ତାର ଉତ୍ତରରେ ସେ ଭାରତର ଭବିଷ୍ୟତ ସମ୍ପର୍କରେ ଏକ ଐତିହାସିକ ବକ୍ତୃତା ଦେଇଥିଲେ । ଆଜିର ପରିସ୍ଥିତି ଦୃଷ୍ଟିରୁ ସେ ବକ୍ତୃତାର ଉଲ୍ଲେଖ ଏଠାରେ କରୁନାହିଁ ।

ତେବେ ସେ ସବୁ ପଢ଼ିଲାବେଳେ ଆମେ ମିଳିଥାସିବାଲା ଖୁସି ହେଉଥାଉ ଏବଂ ଭାବୁଥାଉ ବୋଷ କିମ୍ବା ନେହେରୁ ହିଁ ସେ ଜନାଷ କରି ପାରିବେ । ସୁଭାଷ ବୋଷ ଯାହା ଭାବିଥିଲେ ସେ ସବୁ ଠିକ୍ ଠିକ୍ ଫଳି ଗଲାଣି, ସେହିଥିରୁ ତାଙ୍କର ବିଶେଷତ୍ୱ ଓ ବ୍ୟକ୍ତିତ୍ୱର ପ୍ରକାଶ । ବର୍ଲିନରେ ପହଞ୍ଚି "ଅସ୍ଥାୟୀ ଜାତୀୟ ସରକାର କଥା" ଉଠାଇଲେ । କାରଣ ତା ନହେଲେ ସ୍ୱାଧୀନତା ପାଇଁ ଲଢ଼ିବାର କୌଣସି ପନ୍ଥା ତାଙ୍କ ଆଗରେ ନଥିଲା ।

୧୯୪୧ ମସିହା ଡିସେମ୍ବର ଶୀତଦିନ । ଉତ୍ତର ମାଲୟରେ କେତେଜଣ ବ୍ରିଟିଶ ଭାରତୀୟ ସୈନ୍ୟ ଖାଇବାକୁ ନପାଇ, ଅର୍ଦ୍ଧମୃତ ଓ ଛିନ୍ନବସ୍ତ୍ର ହୋଇ ବର୍ଷାମାଡ଼ ଖାଇ ପଡ଼ି ଥାଆନ୍ତି । ତାଙ୍କର ଜଣେ ଯୁବକ ଅଫିସର କ୍ୟାପଟେନ୍ ମୋହନ ସିଂହ ଏକ ପଞ୍ଜାବ ରେଜିମେଣ୍ଟରୁ ଏମାନଙ୍କୁ ଧରି ଜାପାନୀ ମାନଙ୍କ ହାତରେ ବନ୍ଦୀ ନହୋଇ ଘୁରି

ବୁଲୁଥିଲେ, କିପରି ଜାପାନୀମାନଙ୍କ କବଳରୁ ମୁକ୍ତି ପାଇବେ ବୋଲି। କିନ୍ତୁ ସବୁ ବୃଥା।

ଜଙ୍ଗଲ ମଧ୍ୟରେ ଆଉ କିଛି ନପାଇ ମୋହନ ସିଂହ ଗୋଟିଏ ଗାଁକୁ ଯାଇ ବୁଝିଲେ ଯେ, ଜାପାନୀମାନେ ଆଗକୁ ଆହୁରି ଚାଲି ଚାଲେଣି ଏବଂ ତାଙ୍କର ସାଥିମାନେ ପଚିଶ ମାଇଲ ପଛରେ ଜାପାନୀମାନଙ୍କ ହାତରେ ବନ୍ଦୀ ହୋଇ ସାରିଲେଣି। ଅନ୍ୟ କିଛି ପନ୍ଥା ନଦେଖି ସେହି ରେଜିମେଣ୍ଟରେ ଜଣେ ଗୋରା ଅଫିସର ଓ ଦୁଇଜଣ ଭାରତୀୟ ଅଫିସର ସେମାନଙ୍କର ସିପାହୀ ମାନଙ୍କୁ ନେଇ ଗୋଟିଏ ଥାନାରେ ରିପୋର୍ଟ ଦେଲେ। ସେମାନଙ୍କୁ ଅର୍ଡର ହେଲା ଥାନାରୁ ବାର ମାଇଲ ଦୂର ଆଲୋରଷ୍ଟାର ନାମକ ଜାଗାରେ ଜାପାନୀମାନଙ୍କ ପାଖରେ ଆତ୍ମ ସମର୍ପଣ କରିବାକୁ।

ଏହି ଭାରତୀୟ ଦଳ ଭାବିଥିଲେ,କେହି ଜାପାନୀ ଅଫିସର ଆସି ସେମାନଙ୍କୁ ନେଇ ବନ୍ଦୀ କରି ରଖିବେ। କିନ୍ତୁ ତାଙ୍କର ବିସ୍ମୟର ସୀମା ରହିଲା ନାହିଁ। ଯେତେବେଳେ ସେମାନେ ଦେଖିଲେ ଜଣେ ଶିଖ୍ ଭଦ୍ରଲୋକ ତାଙ୍କ କାରରେ ଭାରତୀୟ ଜାତୀୟ ପତାକା ଉଡ଼ାଇ ସେମାନଙ୍କୁ ଆସି ଅଭିବାଦନ କଲେ ଏବଂ ତାଙ୍କର ପରିଚୟ ଦେଲେ ଯେ ସେ ହେଉଛନ୍ତି ଜ୍ଞାନୀ ପ୍ରୀତମ ସିଂହ।

ଠିକ୍ ତାଙ୍କ ପରେ ପରେ ଜଣେ ଜାପାନୀ ମେଜର ଫୁଜିଆରା ଆସି ବ୍ରିଟିଶ ଅଫିସର ଜଣଙ୍କୁ ଅଲଗା ପଠାଇ ଦେଲେ ଓ ଏମାନଙ୍କୁ କହିଲେ ତୁମେ ଭାରତୀୟ ଏବଂ ଏସିଆନ, ସୁତରାଂ ଆମର ବନ୍ଧୁ ଏବଂ ଆମ ଠାରୁ ବନ୍ଧୁତ୍ୱର ବ୍ୟବହାର ପାଇବା ଉଚିତ। ଯୁଦ୍ଧ ବନ୍ଦୀଭାବରେ ଆମେ ତୁମକୁ ଦେଖିବୁ ନାହିଁ ଏବଂ ଆମେ ଭାରତୀୟ ମାନଙ୍କ ଜାତୀୟ ସଂଗ୍ରାମରେ ଏକମତ ହୋଇ ଭାରତୀୟମାନଙ୍କୁ ବ୍ରିଟିଶ ଶାସନରୁ ମୁକ୍ତ କରିବାକୁ ଦୃଢ଼ ଚେଷ୍ଟା କର। ଏହା କହି ସାରିବା ପରେ ସମସ୍ତଙ୍କୁ ଆଲୋରଷ୍ଟାରକୁ ନିଆଗଲା। ଏବଂ ସେଠାରେ ପ୍ରୀତମସିଂହଙ୍କ ଦ୍ୱାରା ପରିଚାଳିତ "ଭାରତୀୟ ସ୍ୱାଧୀନ ବାହିନୀ ଅଫିସ୍"ରେ ସେମାନଙ୍କୁ ରଖାହେଲା।

ସେଠାରେ ଆତ୍ମଗୋପନ ଅନେକ ଭାରତୀୟ ଥାନ୍ତି । ସେଠାରେ ମେଜର ଫୁଜିଆର ମୋହନ ସିଂହ ଓ ଆଉ ଜଣେ ଭାରତୀୟ ଅଫିସରଙ୍କୁ ଡକାଇ ନେଇ ବ୍ରିଟିଶ ଅତ୍ୟାଚାର ଓ ଏସିଆନମାନଙ୍କ ଦୁଃଖ ଦୁର୍ଦ୍ଦଶା ବିଷୟ ଗାଇଲେ ଏବଂ ମୋହନ ସିଂହଙ୍କୁ କହିଲେ ଆପଣ ଏ ସୁଯୋଗ ନେଇ ଆମର ସହଯୋଗରେ ବ୍ରିଟିଶ ବିରୁଦ୍ଧରେ ଯୁଦ୍ଧ ଚଳାନ୍ତୁ ।

ପ୍ରଥମେ ମୋହନ ସିଂହ ସନ୍ଦେହ କଲେ । ବହୁତ ପ୍ରବର୍ତ୍ତନା ଫଳରେ ମୋହନସିଂହ ରାଜିହେଲେ । ବନ୍ଦୀ ଭାରତୀୟମାନଙ୍କ ସହଯୋଗ ଫଳେ ମୋହନ ସିଂହଙ୍କୁ ସେମାନଙ୍କ ନେତୃତ୍ୱ ନେବାକୁ ପଡ଼ିଲା । କିନ୍ତୁ ଏ ପ୍ରୀତମ ସିଂହ ପରି ରାଜନୀତିଜ୍ଞଙ୍କ ଦ୍ୱାରା ଏହା କାମ ହେବ ଭାବି ଫୁଜିଆରଙ୍କୁ କହିଲେ ସେ ଜାଣି ପାରନ୍ତି ବର୍ତ୍ତମାନ ସୁଭାଷଚନ୍ଦ୍ର ବୋଷ ଭାରତ ବାହାରେ ଅଛନ୍ତି ଏବଂ କେବଳ ତାଙ୍କର ନେତୃତ୍ୱ ପାଇଲେ ସେମାନେ ନିଶ୍ଚୟ ଆଗେଇ ଯିବେ ।

ପୂର୍ବରୁ ୧୯୧୨ ମସିହାରେ ଲେଡେଜଣ ବିପ୍ଳବ ପନ୍ଥୀ ଆମେରିକାର ପଶ୍ଚିମ ଉପକୂଳରେ ବସବାସ କରି ରହିଥିବା ଭାରତୀୟମାନଙ୍କ ସଙ୍ଗରେ ମିଶି ବ୍ରିଟିଶ ବିରୁଦ୍ଧରେ ଲଢ଼ିବାର ପ୍ରୟାସ କରୁଥିଲେ । ସାନ ଫ୍ରାନ୍‌ସିସକୋରୁ ସେମାନେ ଗୋଟିଏ—The Ghadr ବୋଲି କାଗଜ ସେ ସମୟରେ ପ୍ରକାଶ କରିଥିଲେ । ସେମାନେ ଅନେକ ଶିଖଙ୍କୁ ପ୍ରବର୍ତ୍ତାଇ ଭାରତ ଭିତରକୁ ପଠାଇ ଆନ୍ଦୋଳନ କରୁଥିଲେ । ଠିକ୍ ଏହି ସମୟରେ ପ୍ରଥମ ମହାସମର ଆରମ୍ଭ ହେଲା ଏବଂ ସେମାନେ ଜର୍ମାନ ମାନଙ୍କ ସାହାଯ୍ୟରେ ସେମାନଙ୍କର ଭାରତୀୟ ବିପ୍ଳବ ସମିତିମାନ ସାଙ୍ଘାଇ, ବାଟାଭିଆ ଏବଂ ଆମେରିକାରେ ସ୍ଥାପନ କଲେ ।

୧୯୧୨ ମସିହାରେ ଲର୍ଡ଼ହାର୍ଡ଼ିଞ୍ଜଙ୍କୁ ମାରିବା ପାଇଁ ଷଡ଼ଯନ୍ତ୍ରକାରୀ ବୋଲି ବ୍ରିଟିଶମାନେ ରାସ ବିହାରୀ ବସୁଙ୍କୁ ଧରିବାପାଇଁ ଚେଷ୍ଟାକଲେ । ସେ କିନ୍ତୁ କୌଶଳରେ ଖସି ଆସି ସାଙ୍ଘାଇରେ ପହଞ୍ଚି ବିପ୍ଳବ ସମିତିର ହାତଯୁଠା ଟାଣ କଲେ ଏବଂ ନେତୃତ୍ୱ ନେଲେ ।

୧୯୧୭ରେ ରାସ ବିହାରୀ ଜାପାନର ଜଣେ ମୁଖ୍ୟ ରାଜନୈତିକ ଦଳ Black Dragon Socicety ର ନେତା ତୋୟାମାଙ୍କ ର

ସାହଯ୍ୟ ନେଲେ ଏବଂ ତାଙ୍କର ଫୌଜକୁ ବଦାହ କରି ଜାପାନର ନାଗରିକତ୍ୱ ଗ୍ରହଣ କରି ଜାପାନରେ ପ୍ରଥମେ "ଭାରତୀୟ ସ୍ୱରାଜ ଦଳ" ସ୍ଥାପନ କଲେ ।

ଏହି ଦଳର ଉଚ୍ଚ ସଦସ୍ୟ ଥିଲେ ପ୍ରୀତମ ସିଂହ, ଏବଂ ସେ ବ୍ୟାଙ୍କୋକକୁ ଆସି ଜାପାନୀମାନଙ୍କ ସାହାଯ୍ୟରେ ଭାରତୀୟ ସ୍ୱାଧୀନତା ଆନ୍ଦୋଳନ ଚଳାଇବା ପାଇଁ ରାସବିହାରୀ ବାବୁଙ୍କ ଦ୍ୱାରା ପ୍ରେରିତ ହେଲେ ।

ପ୍ରଥମେ ଜାପାନୀମାନେ ଭାରତୀୟ ନେତୃବୃନ୍ଦଙ୍କର ଜାପାନ ଚୀନ ଆକ୍ରମଣର ପ୍ରତିବାଦକୁ ନିନ୍ଦା କରୁଥିବାରୁ, ସାହାଯ୍ୟ ଦେବାକୁ କୁଣ୍ଠାବୋଧ କରୁଥିଲେ କିନ୍ତୁ ମାଲୟ ଆକ୍ରମଣ ପରେ ଏବଂ ନେତାଜୀଙ୍କର ଭାରତ ଛାଡ଼ିବାପରେ ସେମାନେ ତାଙ୍କର ମତ ବଦଳାଇଲେ, ବୋଧହୁଏ ସେମାନେ ଭାବିଥିଲେ ନିଶ୍ଚୟ ସେମାନେ ଭାରତରୁ ବ୍ରିଟିଶଙ୍କୁ ବାହାର କରିଦେବେ ଏବଂ ସେମାନେ ନିଜେ ଭାରତର ଭାଗ୍ୟବିଧାତା ହୋଇ ପାରିବେ । କିନ୍ତୁ ଯୁଦ୍ଧର ଗତି ଅନ୍ୟ ଆଡ଼କୁ ଗଲା ଏବଂ ସଙ୍ଗେ ସଙ୍ଗେ ସେମାନଙ୍କର ଆଶା ପାଣି ଫୋଟକା ପରି ଉଭେଇ ଗଲା । ତେବେ ଯାହାହେଉ ଜାପାନ ପ୍ରକାଶ୍ୟରେ ଭାରତ ବାହାରେ ଭାରତ ସ୍ୱାଧୀନତା ଆନ୍ଦୋଳନକାରୀ ମାନଙ୍କୁ ସାହଯ୍ୟ କରୁଥିଲା ।

ଜ୍ଞାନୀ ପ୍ରୀତମ ସିଂହ ବ୍ୟାଙ୍କକରେ ଥିବା ଜାପାନୀ ଦୂତାବାସକୁ କହିଲେ—ଯଦି ଜାପାନୀମାନେ ଭାରତୀୟମାନଙ୍କୁ ସଂଗ୍ରାମରେ ସାହାଯ୍ୟ କରିବାକୁ ପ୍ରତିଶ୍ରୁତି ଦେଇ କାର୍ଯ୍ୟ କରିବେ, ତାହାହେଲେ ଦକ୍ଷିଣ ପୂର୍ବ ଏସିଆରେ ଥିବା ଆଠଲକ୍ଷ ଭାରତୀୟଙ୍କ ସାହଯ୍ୟ ନିଶ୍ଚୟ ସେ ପାଇ ପାରିବେ ।

ଜଣେ ଜାପାନୀ ଇଣ୍ଟେଲିଜେନ୍ସ ଅଫିସର ମେଜର ଫୁଜିଆରା ପ୍ରୀତମ୍ ସିଂହଙ୍କ କଥା ଅନୁଯାୟୀ ବ୍ୟାଙ୍କୋକ୍‌କୁ ଯାଇ ପ୍ରୀତମ ସିଂହଙ୍କ ଦ୍ୱାରା ବନ୍ଦୀ ହୋଇଥିବା ନଅ ଜଣ ଭାରତୀୟ ଅଫିସରଙ୍କ ସାଙ୍ଗରେ କଥାବାର୍ତ୍ତା ଚଳାଇଲେ । ଏହି ନଅ ଜଣଙ୍କୁ ନେଇ ଭାରତୀୟ ସ୍ୱରାଜ ବାହିନୀ ଗଠିତ ହେଲା ।

ସିଙ୍ଗାପୁର ଜାପାନୀମାନଙ୍କ ହାତ ମୁଠାରେ ପଡ଼ିଲାବେଳକୁ ପ୍ରାୟ ୪୫ ହଜାର ଭାରତୀୟ ସୈନ୍ୟ ବନ୍ଦୀ ହୋଇଥିଲେ ଏବଂ ସେ ସମସ୍ତଙ୍କୁ କ୍ୟାପ୍‌ଟେନ୍ ମୋହନ ସିଂହଙ୍କ ତତ୍ତ୍ୱାବଧାନରେ ରଖି ଦିଆଗଲା । ପ୍ରଥମେ ଏନ୍ଷ୍ଟଲିଗ୍‌ର ଚେୟାରମ୍ୟାନ ହିସାବରେ ରାସ ବିହାରୀ ବାବୁ ୧୯୪୨ ମସିହାରେ ଭାରତୀୟ ସ୍ୱାଧୀନତା ସଂଗ୍ରାମ ନେଇ ଟୋକିଓରେ କଥାବାର୍ତ୍ତା ଚଳାଇଲେ । ଶେଷରେ ଫୁଜିୱାରାଙ୍କ ନିର୍ଦ୍ଦେଶ ମତେ ଟୋକିଓ ସୁଭାଷ ବୋଷଙ୍କୁ ଜର୍ମାନୀ ଛାଡ଼ି ସୁଦୂର ପୂର୍ବ ଏସିଆକୁ ଆସିବାକୁ ନିମନ୍ତ୍ରଣ ଜଣାଇଲେ ।

ପୂର୍ବ ଏବଂ ଦକ୍ଷିଣ ପୂର୍ବ ଏସିଆର ପ୍ରତ୍ୟେକ ଯାଗାରେ ଭାରତୀୟ ସ୍ୱାଧୀନତା ଆନ୍ଦୋଳନ ଜାଗି ଉଠିଲା । ସୁଭାଷ ଚନ୍ଦ୍ର ବୋଷ ନିଜଦ୍ୱାରା ଭାରତ ସ୍ୱାଧୀନତା ପାଇଁ ଏକ ଚକ୍ର ଗଢ଼ିଲେ । ଯାହାଦ୍ୱାରା ସେ ସବୁ ଜତ୍ତ୍ୱ କରିପାରିବେ ଏବଂ ସ୍ୱାଧୀନ ଭାରତ ବାହିନୀର ସର୍ବୋଚ୍ଚ କର୍ତ୍ତାରୂପେ ତାଙ୍କୁ ସେମାନେ ମାନିଲେ । ତାଙ୍କ କଥା ଅନୁଯାୟୀ ଭାରତୀୟମାନଙ୍କର ଭବିଷ୍ୟତ ପନ୍ଥା ନିର୍ଦ୍ଧାରିତ ହୋଇ ପାରିବ । ଏଥିରେ ପ୍ରଥମେ ମୁସଲମାନ ହିଁ ଭରିଲେ, କିନ୍ତୁ ହିଟ୍‌ଲର କୌଣସିମତେ ରାଜି ହେଲେ ନାହିଁ । ଏଣେ ବ୍ୟାଂକୋକ୍ କନଫରେନ୍‌ସରେ ସ୍ଥିର ହେଲା ଯେ ଭାରତୀୟ ଜାତୀୟ କଂଗ୍ରେସର ନୀତି ଅନୁଯାୟୀ ସେମାନେ ଚଳିବେ । ତାଠାରୁ ଅଧିକ କାର୍ଯ୍ୟ କରିବାକୁ ହେଲେ, କେବଳ ଯଦି ସୁଭାଷ ଚନ୍ଦ୍ର ବୋଷ ଦାୟିତ୍ୱ ନେବେ, ତାହା କାର୍ଯ୍ୟକାରୀ କରାଯିବ ।

ରାସବିହାରୀ ବାବୁ ରେଡ଼ିଓ ଟେଲିଫୋନ ଯୋଗେ ସୁଭାଷ ଚନ୍ଦ୍ର ବୋଷଙ୍କୁ ସବୁ କଥା ଜଣାଇଲେ ଏବଂ ସେ ସଙ୍ଗେ ସଙ୍ଗେ ଏଥିରେ ସମ୍ମତ ହୋଇ ଦକ୍ଷିଣ ପୂର୍ବ ଏସିଆକୁ ଆସିବାକୁ ଗୃହିଲେ । କିନ୍ତୁ ଆସୁ ଆସୁ ବର୍ଷେ ବିତିଗଲା ।

"କାଉନ୍‌ସିଲ ଅଫ୍ ଆକ୍‌ସନ" ଗଢ଼ାଗଲା ପାଞ୍ଚ ଜଣଙ୍କୁ ନେଇ । ରାସବିହାରୀ ବାବୁଙ୍କ ସଭାପତିତ୍ୱରେ ଏକ କାର୍ଯ୍ୟକାରୀ କମିଟି ଗଢ଼ାଗଲା । ଜାପାନ ଏହାକୁ ସ୍ୱୀକାର କଲା ଏବଂ ଗୋଟିଏ ଭାରତୀୟ ଜାତୀୟ ବାହିନୀ ଗଢ଼ାଯିବାର ସ୍ଥିର ହେଲା ଏବଂ ପାଞ୍ଚଗୋଟି ସର୍ତ୍ତ ଜାପାନ ସରକାରଙ୍କୁ ମାନିବାପାଇଁ ବାଧ୍ୟ କରାଗଲା ।

୫ ଜଣିଆ କମିଟିରେ ସ୍ଥାନ ପାଇଲେ—

୧—ଶ୍ରୀଯୁକ୍ତ ରାସବିହାରୀ ବୋଷ (ସଭାପତି)

୨—ଶ୍ରୀ ଏନ୍ ରାଘବନ୍ (ମେମ୍ବର)

୩—କ୍ୟାପ୍‌ଟେନ୍ ମୋହନ ସିଂହ (ମେମ୍ବର)

୪—ଶ୍ରୀ କେ: ପି: କେ: ମେନନ୍ (ମେମ୍ବର)

୫—କର୍ଣ୍ଣେଲ ଜ: କ୍ୟୁ: ଗିଲାନି (ମେମ୍ବର)

ନିମ୍ନଲିଖିତ ସ୍ଥାନମାନଙ୍କରେ ଆଞ୍ଚଳିକ କମିଟିମାନ ଗଠନ କରାଗଲା ।

ଜାପାନ ଏବଂ ମାଞ୍ଚୁକୋ, ଫିଲିପାଇନସ୍, ଥାଇଲଣ୍ଡ, ମାଲୟ, ବର୍ମା, ବୋର୍ଣ୍ଣିଓ, ସେଲିବସ୍, ହଙ୍ଗକଙ୍ଗ୍, କାଣ୍ଟନ ଏବଂ ମାକାଓ, ସାଂଘାଇ ଓ ଚୀନର ଅନ୍ୟାନ୍ୟ ସ୍ଥାନ—ଇଣ୍ଡୋ ଚୀନ, ଜାଭା, ସୁମାତ୍ରା, ଆଣ୍ଡାମାନ ଇତ୍ୟାଦି ।

ଏସବୁ ସତ୍ତ୍ୱେ ବି ଜାପାନୀମାନେ ତାଙ୍କର ଚାଲବାଜି ଛାଡ଼ିଲେ ନାହିଁ ଏବଂ ତାଙ୍କର ପ୍ରତିଜ୍ଞା ରକ୍ଷା କଲେ ନାହିଁ । ଜାତୀୟ ବାହିନୀ ଖୁବ୍ ଦକ୍ଷତାର ସହିତ ଲଢ଼ିଲେ ଏବଂ ଜାପାନୀମାନଙ୍କ ଜୟ ଯାହାରେ ବହୁତ ସାଫଲ୍ୟ ଲାଭ ହେଲା । ଏଣେ କିନ୍ତୁ ଜେନେରାଲ ମୋହନ ସିଂହ ଦ୍ୱିଗୁଣ ଉତ୍ସାହରେ ସୈନ୍ୟ ଅନୁଯାୟୀ ସବୁ ଚାହିଁଲେ । ସେତେବେଳକୁ ଜାପାନୀମାନେ ଲୁଚକା ପଞ୍ଝା ଖେଳ ବସିଲେ । ନେତାମାନଙ୍କର ମନର ବଳ ଭାଙ୍ଗିବାକୁ ଲାଗିଲା ।

ଏଣେ ରେମେଲ ଇଜପ୍‌ଟର ଦ୍ୱାର ଦେଶରେ ଥାଇ ସୁଭାଷ ବାବୁଙ୍କ ସ୍ୱେଚ୍ଛାସେବକ ବାହିନୀମାନଙ୍କୁ କୌଣସି ସୁବିଧା ଦେବାକୁ ମନା କରିଦେଲେ । ୧୯୪୨ରୁ ଶ୍ରୀଯୁକ୍ତ ଏନ୍, ଜି, ସ୍ୱାମୀ ଏବଂ ଆବିଦ୍ ହୋସାନ୍‌କୁ ଶ୍ରୀଯୁକ୍ତ ବୋଷ ଭାରତୀୟ ଯୁଦ୍ଧ ବନ୍ଦୀମାନଙ୍କୁ ବ୍ରିଟିଶ ବିରୁଦ୍ଧରେ ପ୍ରଚାର ଏବଂ ଗୁପ୍ତ କାର୍ଯ୍ୟ ଚଳାଇବା ପାଇଁ ବାଛୁଥିଲେ ଏବଂ କ୍ରମେ ସବୁ ଭାରତୀୟ ଯୁଦ୍ଧବନ୍ଦୀମାନଙ୍କୁ ଇଟାଲି ଓ ଜର୍ମାନୀରୁ ଆଣି ଠୁଳ କରାଇ ଏବଂ ଜର୍ମାନୀ ଭିତରେ ଟ୍ରେନିଂ ଦେଇ, ୟୁରୋପରୁ ଭାରତ ସ୍ୱାଧୀନତା ଆନ୍ଦୋଳନକୁ ଚଳାଇବା ପାଇଁ ଚେଷ୍ଟିତ ଥିଲେ ସୁଦ୍ଧା,

ହିଟଲର ବିଶେଷ କିଛି ସାହାଯ୍ୟ କଲେ ନାହିଁ । ତେଣୁ ଶ୍ରୀଯୁକ୍ତ ବୋଷ ହତୋତ୍ସାହ ହୋଇ ପଡ଼ିଲେ ।

ଜର୍ମାନରେ ଏହି ସମୟରେ ଶ୍ରୀଯୁକ୍ତ ବୋଷଙ୍କର ନେତୃତ୍ୱରେ ଭାରତୀୟ ସଂଗଠନ କ୍ରମାଗତ ଭାବେ ବଢ଼ିବାକୁ ଲାଗିଲା—ମିଲିଟାରୀ ଟ୍ରେନିଂ ଦିଆଗଲା । ଶ୍ରୀଯୁକ୍ତ ବୋଷ ନିଜର ହାତଖର୍ଚ୍ଚ ସମସ୍ତ ପଇସା ସୈନିକମାନଙ୍କର ନୈତିକ ମାନଦଣ୍ଡ ବୃଦ୍ଧିପାଇଁ ଖର୍ଚ୍ଚକଲେ । ସେତେବେଳେ ଏଠାରେ ଭାରତୀୟ ବାହିନୀର ପତାକା ହେଲାଠିକ୍ ଆମର ଜାତୀୟ ପତାକା ରଙ୍ଗର ଏବଂ କଂଗ୍ରେସର ଚରଖା ଯାଗାରେ ଗୋଟିଏ ଡେଇଁଥିବା ମହାବଳ ବାଘର ଛବି । "ଜୟହିନ୍ଦ" ହେଲା ସାଧାରଣ ନମସ୍କାର ଏବଂ ସୁଭାଷ ଚନ୍ଦ୍ର ବୋଷଙ୍କୁ "ନେତାଜୀ" । ୧୯୪୨ ଜାନୁୟାରୀ ତା ୨୬ ରିଖ ସୁଦ୍ଧା ଏ ସବୁ ହୋଇଗଲା । ଶେଷରେ ପରିସ୍ଥିତି ନେତାଜୀଙ୍କୁ ଦକ୍ଷିଣ ପୂର୍ବ ଏସିଆକୁ ନେଲା ।

ଫେବୃୟାରୀ ତାରିଖ ୧୯୪୩ରେ ନେତାଜୀ ଏବଂ ଆବିଦ୍ ହୋସେନ୍, କିଏଲ ଠାରୁ ଗୋଟିଏ ଜର୍ମାନ ଇଉ ବୋଟରେ ଆଟଲାଣ୍ଟିକ୍ ମହାସାଗରରେ ଚାଲିଲେ । ସଙ୍ଗରେ ଭାରତୀୟ ଯାତ୍ରୀ ଆଉ କେହି ନଥିଲେ । ଉତ୍ତମାଶା ଅନ୍ତରୀପ ଆଗକୁ ଚାଲିଲେ । ମାଡ଼ାଗାସ୍କାର ପାଖରେ ଏପ୍ରେଲ ତା ୨୮ରିଖରେ ଗୋଟିଏ ରବର୍ ଡଙ୍ଗାରେ ଜାପାନୀ ସବ୍‌ମାରିନ୍‌ରେ ଚଢ଼ି, ଭାରତ ମହାସାଗର ପାରହୋଇ ସାବାଙ୍ଗ (ସୁମାତ୍ରାରେ) ଆସିଲେ । ସେଠାରୁ ଉଡ଼ାଜାହାଜ ଯୋଗେ ଜୁନ୍ ତା ୧୩ରିଖରେ ଆସି ଟୋକିଓରେ ପହଞ୍ଚିଲେ । ତା'ପରେ ଆସିଲେ ସିଙ୍ଗାପୁର । ଜଳି ଉଠିଲା I. N. A.ର ସମର ସଜ୍ଜା । ଭାରତୀୟ ସୈନ୍ୟ ଲକ୍ଷ ଦ୍ୱାବରେ ତାଙ୍କ ପ୍ରିୟ ନେତାଜୀଙ୍କର ହାତମୁଠା ଟାଣ କଲେ । ଛୁଟିଲା ଟଙ୍କା, ସୁନା, ଧନ ଓ ଜୀବନର ସ୍ରୋତ । I. N. A. ପାଇଁ ଆଗେଇ ଚାଲିଲେ ଭାରତୀୟ ସୈନ୍ୟ । କ୍ଷେତ୍ର ବିଶେଷରେ ଜାପାନୀମାନେ ପଛରେ ପଡ଼ିଗଲେ ।

'ଚଲୋ ଦିଲ୍ଲୀ' ନାଦରେ ପୂରି ଉଠିଲା ଗଗନ ପବନ । ବାଳକ ସେନା ଗଢ଼ ଉଠିଲେ । ଗଢ଼ ଉଠିଲା 'ସୁଭାଷ ରେଜିମେଣ୍ଟ'—ଭାରତୀୟ ଲଳନା 'ରାଣୀ ଝାନ୍‌ସି ରେଜିମେଣ୍ଟ' ତଳେ ବନ୍ଧୁକ ଚାଳନା କଲେ ।

ଅକ୍ଟୋବର ତା୨୧ରିଖ, ୧୯୪୩ରେ Provisional Govtର Free India'ର ପତାକା ଉଡ଼ିଲା । ଆଜାଦ୍ ହିନ୍ଦ୍ ସରକାର ଗଠିତ ହେଲା । ଏହାକୁ ଜାପାନ, ବର୍ମା, ଜର୍ମାନ, ଫିଲିପାଇନ୍ସ, ନାନକିଙ୍ଗ, ମଞ୍ଚୁକୋ ଓ ଶ୍ୟାମ ପ୍ରଭୃତି ସ୍ୱୀକାର କଲେ । ସିଙ୍ଗାପୁରର କାଥେ ସିନେମା ହଲରେ ଏକ ଉତ୍ସବ ଅନୁଷ୍ଠିତ ହେଲା । ନେତାଜୀ ପ୍ରଥମେ ସେଠାରେ ଶପଥ ପାଠକଲେ—

In the name of God, I take this sacred oath to liberate India and thirty eight crores of my country, I Subhas Chandra Bose, will continue the sacred war of freedom, till the last breath of my life. I shall remain always a servant of India and to look after the wel-fare of thirty crores of Indian brothers and sisters shall be for me my highest duty.

Even after winning freedom, I will always be prepared to shed even the last drop of my blood for the preservation of India's freedom.

( on to Delhi'ରୁ ଉଦ୍ଧୃତ )

ଶ୍ରୀ ଏସ୍ ଏ ଆୟାର୍ 'Un to him witness' ରେ କହୁଛନ୍ତି—ତା୨୦ରିଖ ଅକ୍ଟୋବର ୧୯୪୩ ସକାଳ ସୁଦ୍ଧା ଆଜାଦ୍ ହିନ୍ଦ୍ ସରକାରଙ୍କ ପ୍ରୋକ୍ଲାମେସନ ଲେଖା ସରିଗଲା ଏକ ରାତିକେ । ନେତାଜୀ ଖଣ୍ଡେ ପେନ୍‌ସିଲ୍ ଓ ପୁଳାଏ ସାଦା କାଗଜ ଧରି ଲେଖି ବସିଲେ । ପଦ୍ଧ ପଦ୍ଧ ଲେଖା ସରୁଥାଏ—ନେତାଜୀ ଅନବରତ ଲେଖି ଚାଲିଥାନ୍ତି । ଟାଇପ୍ ମଧ୍ୟ ସାଥି ସାଥି ଚାଲିଥାଏ । ସନ୍ଧ୍ୟାରୁ ସକାଳ ୬ଟା ଭିତରେ ଲେଖା ସରିଗଲା । ରାତି ମଧ୍ୟରେ ନେତାଜୀଙ୍କର କପେ କପେ କଲି କଫ ପଛକୁ ଅସଂଖ୍ୟ ସିଗାରେଟ୍ ପୋଡ଼ା ପାଉଁଶ ହେଉଥାଏ । ରାତି ଶେଷ ବେଳକୁ ଲେଖା ଶେଷ ହେବା ସଙ୍ଗେ ସଙ୍ଗେ ଟାଇପ୍ ବି ମଧ୍ୟ ଶେଷ ହୋଇଥିଲା । ଏପରିକି ଗୋଟିଏ ହେଲେ କମା କି ପୂର୍ଣ୍ଣଚ୍ଛେଦ ମଧ୍ୟ ଅଦଳ ବଦଳ ହୋଇ ନଥିଲା ।

ସବୁବେଳେ ନେତାଜୀଙ୍କର ଖୁବ୍ କମ୍ ଜିନିଷ ଥାଏ। କିନ୍ତୁ ତା ମଧ୍ୟରେ ଗୋଟିଏ ରୁଦ୍ରାକ୍ଷ ମାଳ, ଖଣ୍ଡିଏ ଗୀତା ଓ ତାଙ୍କ ଚଷମାଟି ନିଶ୍ଚୟ ଥିବ।

ସିଙ୍ଗାପୁରରେ ଥିଲାବେଳେ ପ୍ରାୟ ରାମକୃଷ୍ଣ ମିସନକୁ ଯାଇ ଦୁଇ ଘଣ୍ଟା କାଟକାଟି ଫେରନ୍ତି। ଜୀବଜନ୍ତୁ ପୋଷିବାକୁ ସେ ଖୁବ୍ ଭଲ ପାଆନ୍ତି। ରେଙ୍ଗୁନ୍‌ରେ ଥିଲାବେଳେ ସେ ପୋଷିଥିଲେ ମାଙ୍କଡ଼, ଛେଳି, ଠେକୁଆ, ରାଜହଂସ ଓ ଗୋଟିଏ ଟାଟୁ ଘୋଡ଼ା। କେବଳ ସେ ବିରାଡ଼ିକୁ ଭଲ ପାଉନ ଥିଲେ। ଗୁ'ଖିଆ, ପାନ ଖିଆ ଓ ବ୍ୟାଡ଼ମିଣ୍ଟନ ଖେଳ ଥିଲା ତାଙ୍କର ପ୍ରଧାନ ଅଭ୍ୟାସ।

ଆଜାଦ୍ ହିନ୍ଦ୍ ସରକାର ପ୍ରଥମେ ୪ଜଣ ମନ୍ତ୍ରୀଙ୍କୁ ନେଇ ଗଠନ କରାଗଲା। ନେତାଜୀ ନିଜେ ହେଲେ ରାଷ୍ଟ୍ରପତି (Head of the state) ଜଣେ ପ୍ରଧାନ ମନ୍ତ୍ରୀ, ଜଣେ ଯୁଦ୍ଧ ମନ୍ତ୍ରୀ (Minister for war) ଓ ଜଣେ ବୈଦେଶିକ ବ୍ୟାପାର ମନ୍ତ୍ରୀ ହେଲେ।

ମାଡ଼ ଖାଇଲେ ସୈନ୍ୟ ଦଳ ଇଂଫାଲ ଆଡ଼େ। ଇଂଫାଲ ଦୁଇମାସ ପାଇଁ ଅବରୋଧ କଲେ ( ସେତେବେଳେ ମୁଁ ଇଂଫାଲରେ ଥାଏ )। ପୁଣି ଭାଗ୍ୟର ବାମଦୃଷ୍ଟି ଏଠାରେ ହେଲା। ଟୋକିଓ ଥରିଗଲେ। ଜାପାନର ଦକ୍ଷିଣ ପୂର୍ବ ଏସିଆର ଫିଲ୍ଡ ମାର୍ଶାଲ କାଉଣ୍ଟ ଟେରୁଚି Field Marsal Count Te-rauchi I. N. A. ଆଉ ଆଗକୁ ନ ଯାଉ ବୋଲି ଜିଦ୍ ଧରିଲେ। ଟୋକିଓରୁ ସେଇ ସ୍ୱର ଆସିଲା। I.N.A. ମାନଙ୍କୁ ଖାଦ୍ୟ ଯୋଗାଇ ଦିଆ ଗଲାନି। ଜାପାନୀ ମାନେ ସେତେବେଳେ ଶ୍ରାନ୍ତ ଓ କ୍ଳାନ୍ତ। ହିଟ୍‌ଲର ଓ ମୁସୋଲିନୀ ଶେଷ। ତା'ପରେ ହିରୋସୀମା ଓ ନାଗାସାକି ଉପରେ ଆଟମ୍-ବମ୍‌ର ଧ୍ୱଂସ ଲୀଳା।

ଏଇଠି ଯବନିକା ପଡ଼ିଗଲା ମହାନ୍ ଭାରତୀୟ ନେତା ନେତାଜୀଙ୍କର।

ନେତାଜୀ ସିନା ଇହ ଜଗତରୁ ଗ୍ଭଲିଗଲେ କିନ୍ତୁ ଦେଇଗଲେ ଭାରତ ବାସୀଙ୍କୁ ଗୋଟିଏ ମହାମନ୍ତ୍ର, ତାର ନାମ 'ଜୟହିନ୍ଦ୍'। ଯାହାକୁ କି ପ୍ରତ୍ୟେକ ଭାରତବାସୀ ବୁଝି ପାରିଲେ। କେବଳ ଏହି ଗୋଟିଏ ଶବ୍ଦରେ ସେ ମାତୃଭୂମି ପ୍ରୀତି ବୁଝାଇ ଦେଇ ଗଲେ, ଯାହା କି ବଡ଼ ବଡ଼ କବି, ଲେଖକ ଓ ଐତିହାସିକ ମାନେ ବି କରି ପାରି ନାହାନ୍ତି।

ସିଙ୍ଗାପୁର ସହର ବି ଧ୍ୱସ୍ତ-ବିଧ୍ୱସ୍ତ। ମାଲୟୀ, ଚୀଇନା ଓ ଭାରତୀୟ ଏବଂ ଆଉ ଗୋଟିଏ ଜାତି 'ୟୁରେସିୟାନ'ମାନେ ଏହାର ସାଧାରଣ ଅଧିବାସୀ। ଏ ସମସ୍ତଙ୍କ ମଧ୍ୟରେ ଚୀଇନାମାନେ ଥିଲେ ସବୁଠାରୁ ଧୂର୍ତ୍ତ ଏବଂ କଳାବଜାରୀ। ସେମାନେ ସବୁକିଛି ଘୃଣ୍ୟ କାମ କରି ପାରନ୍ତି ଏବଂ ମୁଁ ନିଜେ କିପରି ସେମାନଙ୍କର ଶୀକାର ହୋଇଥିଲି ଥରେ ଶୁଣନ୍ତୁ—

ସିଙ୍ଗାପୁରରେ ପ୍ରଥମେ ପହଞ୍ଚିବାର ୭/୮ ଦିନ ପରେ ମୁଁ ଚେଷ୍ଟା କଲି କେତେଜଣ ଓଡ଼ିଆ ଅଛନ୍ତି ଜାଣିବା ପାଇଁ। ସିଙ୍ଗାପୁର ବମ୍ବେ ପରି ବଡ଼ ସହର କିନ୍ତୁ ଯୁଦ୍ଧ ପରେ ତା'ର ଝଲକ ନଥାଏ। ସିଙ୍ଗାପୁର ମାଲୟର ରାଜଧାନୀ ଏବଂ ସେଠିକାର ଲୋକ ସଂଖ୍ୟା ସେତେବେଳେ ୭୦ ଭାଗ ଚୀନା।

ଆମର କ୍ୟାମ୍ପ ପାଖରେ ଗୋଟିଏ ଚୀଇନା ରେସ୍ତୋରାଁ ଥାଏ। ସେଠାରେ ଦିନେ ଚୀ' ପିଇ ପିଇ ରେସ୍ତୋରାଁ ମାଲିକ ମୋର ଘର କେଉଁଠି ବୋଲି ପଚାରିଲା। ମୋ ଠାରୁ ଉତ୍ତର ଶୁଣି କହିଲା—

"ସିଙ୍ଗାପୁରରେ ବହୁତ ଓଡ଼ିଆ ଅଛନ୍ତି। ମୁଁ ତ ସହଜେ ଓଡ଼ିଆ ମାନଙ୍କୁ ଖୋଜୁଥିଲି, ସୁତରାଂ ତାକୁ କହିଲି ମୋତେ ଟିକିଏ ସେମାନଙ୍କ ଠିକଣା ଦେବାକୁ। ସେ କହିଲା ଠିକଣା କଣ ଦେବ ରବିବାର ଦିନ ତୁମର ଛୁଟିଥିଏ, ଆସିଲେ ସେଠାକୁ ନେଇଯିବ। ମନେ ମନେ ଭାରି

ଖୁସିଟାଏ ହୋଇ ମୁଁ ଟିକଏ ଛୁଟି ପାଇଲେ ରେସ୍ତୋରାଁକୁ ଯାଏ । ରବିବାର ଦିନ ହେଲା ।

ମୁଁ ସକାଳୁ ସଜବାଜ ହୋଇ ବାହାରିଲି ରେସ୍ତୋରାଁକୁ । ଯାଇ ଦୁଇଘଣ୍ଟା ବସିବା ପରେ ସେ ସୁଟ୍ ପିନ୍ଧି ବାହାରିଲା । ମୁଁ କହିଲି ରେକ୍ସାରେ ଯିବା । ସେ ମନା କଲା, କହିଲା ସିଙ୍ଗାପୁର ମସ୍ତବଡ଼ ସହର । ଯୁଦ୍ଧ ଏବେ କିଏ କେଉଁଠି ଅଛି କହି ହେବନି । ଟାକ୍ସିରେ ଯିବାର ଉଚିତ୍ ସବୁ ଟାକ୍ସୀରେ ଗଲୁ । ବାଟରେ ମୁଁ ଭଦ୍ରାମି ଖାତିରରେ ସିଗାରେଟ୍ ପ୍ରଭୃତି ଖୁଆଉଥାଏ । ଟାକ୍ସି ଚାଳକ ମାଳୟୀ । ସେ ତାକୁ ମାଲୟୀ ଭାଷାରେ କହୁଥାଏ । ଖଣ୍ଡିଆ ଖଣ୍ଡିଆ ଇଂରେଜୀରେ ମୁଁ ସେ ଚାଳକ ସଙ୍ଗେ କଥା ହେଉଥାଏ ।

ଘଣ୍ଟାଏ ପରେ ଗୋଟାଏ ବଡ଼ ହୋଟେଲ ସାମ୍ନାରେ ଗାଡ଼ି ରହିଲା ଏବଂ ସେ ପ୍ରସ୍ତାବ କଲା ଯେ ଖାଇପିଇ ନେବା ଓ ତା'ପରେ ଚାଲିବା ଏବଂ ପ୍ରାୟ ଦୁଇଜଣ ଓଡ଼ିଆଙ୍କୁ ନିଶ୍ଚୟ ପାଇବା ଏବଂ ସେମାନଙ୍କ ଠାରୁ ଅନ୍ୟମାନଙ୍କ ଖବର ପାଇଯିବା । ମନ୍ଦ ପ୍ରସ୍ତାବ ନୁହେଁ, ପେଟ ବରଗଦ କଲା ଖାଇବା । ଚୈନିକ ହୋଟେଲ । ସେତେବେଳେ Inflation (ମୁଦ୍ରାସ୍ଫୀତି) ସମୟ । ପଇସାର ମୂଲ୍ୟ ନାହିଁ । ଗୋଟିଏ ଚା' କପ୍‌ର ଦାମ୍ ୫ ଡଲାର ମାନେ ଭାରତୀୟ ସାଢ଼େଟଙ୍କା ତେରଅଣା । (ମାଳୟୀ ଏକଡଲାର ଭାରତୀୟ ଏକଟଙ୍କା ନଅଅଣା) । ନୋଟ ସବୁ ଜାପାନୀମାନଙ୍କ ଛାପା । ସେଥିରେ Promise ପ୍ରଭୃତି କିଛି ଲେଖା ନଥାଏ ଯଥା—(I Promise to pay the bearer on demand the sum of at any office of issue) ପଛରେ ଖାଲି କଦଳୀ ଗଛ ହେଣା ସହିତ ଛପାଥାଏ । ବ୍ରିଟିଶମାନେ ସେ ମୁଦ୍ରାକୁ ବନ୍ଦ କରି ନଥାନ୍ତି । ଅବଶ୍ୟ ମାସେ ପରେ ଏସବୁକୁ ବନ୍ଦ କରି ଦିଆହେଲା । ଭାରତୀୟ ତିନିଟଙ୍କାକୁ ମାଲୟୀ ଏକ ହଜାର ଡଲାର (ସେତେବେଳର) ସଙ୍ଗେ ସମାନ କରି ନିଆହେଲା ।

ଖିଆପିଆ ସରିଲା । ଦାମ୍ ଦେଲି ମୁଁ ଦୁଇଟି ମିଲ୍ ପାଇଁ ତିନିଶହ

ଡଲାରମାନେ ଭାରତୀୟ ମୁଦ୍ରାରେ ୫୪୭୮୍ୟ । ଆପଣମାନେ ପଚାରି ପାରନ୍ତି ଏତେ ଡଲାର ତୁମେ କେଉଁଠୁ ପାଇଲ ? ସେଗୁଡ଼ାକ ଆମେ ଯେଉଁ ଘରେ କ୍ୟାମ୍ପ କରି ରହୁଥିଲୁ ସେଇଠି ଥିଲା । ଜାପାନୀମାନେ ଆତ୍ମ ସମର୍ପଣ ପରେ ପରେ ସବୁ ଯାହା ଯେଉଁଠି ଥିଲା ସେହିପରି ଥାଏ । ସେମାନଙ୍କ ଅଫିସ ଆମ ଅଫିସ ହେଲା । ସେ ଅଫିସରେ ରହିଲାବେଳକୁ ପ୍ରାୟ ୫୦୦ ଖଣ୍ଡେ ଗ୍ରାମୋଫନ ଓ ପ୍ରାୟ ଦୁଇଟା ଘରେ ଗାଦା ମରା ହୋଇଥିବା ୧୦୦୦ ଖଣ୍ଡେ ବସ୍ତାରେ ନୋଟ ଥିଲା । ବ୍ରିଟିଶ ସରକାର ସେ ନୋଟକୁ ସ୍ୱୀକାର କରୁ ନଥିଲେ କିନ୍ତୁ ସିଙ୍ଗାପୁରରେ ଯୁଦ୍ଧ ପରେ ପରେ ଜାପାନୀମାନଙ୍କର ସବୁ ଚଳୁଥିଲା । ସିଙ୍ଗାପୁର ନାମ ଉଠାଇ ଦେଇ ସେମାନେ "ସୋନାନ୍" ନାମ ରଖିଥିଲେ । ପୁଣି ମୁଦ୍ରା ଷ୍ଟାମ୍ପ ଏବଂ ଅନ୍ୟାନ୍ୟ ଜିନିଷ ସଜାଡ଼ିବାକୁ ତ ସମୟ ଲାଗିବ । ସେଥିପାଇଁ ଏକମାସ ଲାଗିଗଲା । ଆମେ ସେହି ନୋଟରୁ ଦୁଇ ଚାରି ବସ୍ତା କରି ରଖି ଥାଉଁ ଏବଂ ଖର୍ଚ୍ଚ କରି ଥାଉଁ । ସୁତରାଂ ପଇସାର ଅଭାବ ନଥାଏ ।

ଷଆପିଆ ଯାଇବା ପରେ ସେ ଚୀନା ଓ ମୁଁ ପୁଣି ଟାକ୍ସିରେ ଉଠିଲୁ । ଗୋଟାଏ ମସ୍ତବଡ଼ କୋଠା ସାମ୍ନାରେ ଗାଡ଼ି ରହିଲା । ସେଠାରୁ ପ୍ରାୟ ୪।୫ ଜଣ ଚୀନା ଯୁବତୀ ବାହାରି ପଡ଼ିଲେ । ମୁଁ ଟାକ୍ସିରେ ବସିଥାଏ । ସେ ଚୀନା କହିଲେ ତୁମେ ବସିଥାଅ, ମୁଁ ଆସେ, ସେ ଓଡ଼ିଆ ଜଣକ ଉପର ମହଲରେ ରହୁଛି । ତାକୁ ମୁଁ ଡାକି ଆଣୁଛି । ସେ ଗଲା କିନ୍ତୁ ପ୍ରାୟ ଘଣ୍ଟାଏ କାଳ ହେବ ଫେରିଲା ନାହିଁ । ମୁଁ ଆଉ କେତେ ବସିବି । ରାସ୍ତା ତ ଜଣା ନଥାଏ ତା'ଛଡ଼ା ଏ ଗଳିରେ କୌଣସି ଭାରତୀୟଙ୍କୁ ବି ଦେଖୁ ନଥାଏ । ଖାଲି ଚୀନା ଓ ମାଳୟୀ । ବ୍ୟସ୍ତ ହୋଇ ସିଗାରେଟ୍ ଟାଣୁଥାଏ । ଘଣ୍ଟାଏ ପରେ ଦୁଇଟି ଚୀନା ଯୁବତୀ ଦୁଇ କାର୍ଟୁନ ସିଗାରେଟ ଧରି ଟାକ୍ସି ପାଖକୁ ଆସିଲେ । ସେ ଚୀନା ଜଣକ ବି ହସି ହସି ଆସୁଥାଏ । ସିଗାରେଟ ତାଙ୍କ ଠାରୁ ନେଇ ଟାକ୍ସିରେ ରଖିଲା ଏବଂ ମୋତେ କହିଲା—

"ମିଷ୍ଟର ସିଙ୍ଗ, ଭେରି ସରି, ଓରିଆ ଫ୍ରେଣ୍ଡ ଆବସେଣ୍ଟ । ତୁମୋରୁ କମ ଭେରି ସରି ଭେରି ସରି ନେକେଷ୍ଟ ପ୍ରେସ ମସ୍ତ ସି ।"

ମାନେ ଇଂରାଜୀରେ ହେବ Mister Singh very sorry, sorry, Oriya friend absent tomorrow come very. Very sorry. Next place must see.

ପୁଣି ଗାଡ଼ିରେ ଉଠିଲୁଁ ସେତେବେଳକୁ ୯ଟା ବାଜିଗଲାଣି । ପୁଣି ଗଳିପଥରେ ଗଳି ବୁଲି ଗୋଟିଏ ଫ୍ଲେଟଘର ସାମନାରେ ଗାଡ଼ି ରହିଲା । ପୁଣି ମୋତେ ଗାଡ଼ିରେ ବସାଇ ଦେଇଗଲା । ସେଠାରୁ ଫେରୁ ଫେରୁ ଦୁଇଘଣ୍ଟା । ମଦ ପିଇଛି, ମୁହଁ ଗନ୍ଧ ହେଉଛି, ହାତରେ ଧରିଛି ଗୁ’ ଦୁଇ ପ୍ୟାକେଟ । ଗୀତ ଗାଇ ଗାଇ ଆସି କାନ୍ଧରେ ହାତ ପକାଇ କହିଲା—

"ଓଃ ଭେରି ଭେରି ସରି ଅର୍ ସୋ ଦିସ୍ ଓଡ଼ିଆ ଫ୍ରେଣ୍ଡ୍ ଚେଞ୍ଜ ହାଉସ୍—ନଟ୍ ନୋ । ରେଟ୍ସ ଅସଟ୍ରାଇ ଭେରି ସରି ୟୁ ଲାଇକ୍ ଚାଇନିଜ ଡ୍ରିଙ୍କ ଓଃ ଭେରି ଗୁଡ୍" ।

"ମାନେ Oh, very very sorry also this Oriya friend change house not know letus try. Very sorry you like chinese drink 'oh' very good.

ମହା ହଇରାଣରେ ଚଳିଲା ରବିବାର ଦିନଟା । ଅନ୍ୟତଃ ଘରକୁ ଚିଠି ଲେଖିଥାନ୍ତି, ନଇଁର ହେଲେ କିଛି କାମ କରିଥାନ୍ତି; ପିକ୍ଚରଟି ଦେଖିଥାନ୍ତି, ଟାକ୍ସିବାଲାକୁ ୫୦୯ ଡଲାର ଗଣିଲିଣି ମୋର ଅବସ୍ଥା ଜାପାନୀ କଦଳୀ ଗଛ ନୋଟରୁ ଅଧବସ୍ତା ଶେଷ ଓଡ଼ିଆ ଖୋଜାରେ । କିଣ କରିବ ଆସିଛୁ ତ ।

ତାକୁ କହିଲି—ଚାଲ ଯିବା ସିନେମା ଦେଖି, ଆଉ ରବିବାରକୁ ପୁଣି ଖୋଜିବା । ସେ ଭାରି ଖୁସି । ଗଲୁଁ ଏବଂ କେରେଭିଆନ ହାଉସ ପାଖରେ ପହଞ୍ଚାଇଲୁଁ । ମୁଁ ଟିକେଟ କଲି ପ୍ରଥମ କ୍ଲାସ । ଟିକେଟର ମୂଲ୍ୟ ଖଣ୍ଡକୁ ୫୦ ଡଲାର । ଇଂରାଜୀ ଖେଳ । ସେଇଟା ତ କିଛି ବୁଝ-

ନ ଥାଏ ମଦରେ ମାତାଲ । ମୁଁ ଦେଖୁଛି ସେ ଉଠି ଘାଗ । ହାଫ୍
ଟାଇମରେ ମୁଁ ଆସି ଗୃ' ଖାଇବା ପୁଣି ସେ ଆସି ହାଜର । କହିଲ—

"ମିସ୍ତ୍ରର ସିଙ୍ଗ ଭେଲ ଗୁଡ୍ କମ୍ ପ୍ରିଜ ଉଆନ୍ ଓଡ଼ିଆ ଦ୍ୟାଟ୍ ହାଉସ୍'', କହି ସିନେମାହଲର ପାଖରେ ଗୋଟିଏ ଗଳିକୁ ଦେଖାଇଲ ।

ମୁଁ ଏକ ବୋକା । ମୋର ଓଡ଼ିଆ ଖୋକା ମଣା ଏମିତ ବଢ଼ି ଯାଇଥିଲ ସେ ସିନେମା ଦେଖା ଗୃଡ଼ିଗଲ । ଗୋଟିଏ ଗ୍ଲୋଟ ଘର ଦେଖାଇ ଦେଇ କହିଲ—

"ଦ୍ୟାଟ୍ ହାଉସ୍ ଇୟୁ କର୍ (That house you call) ଆଇ ଜଷ୍ଟ କମିଙ୍ଗ (I Just comming) କହି କୁଆଡ଼େ ଚର ଚରରେ ଗୃଲଲ ।

ମୁଁ ସେ କହିଥିବା ଘରକୁ ଗଲ । ଗ୍ଲୋଟ କାଠର ଘରଟିଏ । ପାହାଚ ପାଖକୁ ଯାଇ ଯାଉ ଗୋଟିଏ ପୃଥୁଳ ତନୁ ସ୍ତ୍ରୀ ଲୋକ ବୟସ ଆହାଇ ୩୨।୪୦ ଭିତରେ । ଗୃଇନା ପୋଷାକ ପିନ୍ଧି ଆସି କହିଲ—

ଗୁଡ୍ ନାଇଟ୍ ଇଉ ବେଙ୍ଗଲ ପ୍ରିଜ କମ୍ ଇନ୍ (Good nigh you Bengali please come in)

ମୁଁ ଭାବିଲ ବୋଧହୁଏ ଓଡ଼ିଆ ଲୋକ ଏଠାରେ ଘରଦ୍ୱାର କରିଚନ୍ତି ଏବଂ ଗୃଇନା ସ୍ତ୍ରୀ ବିବାହ କରି ସେ ବାସ କରିଅଛନ୍ତି । ସୁତରାଂ ଥ୍ୟାଙ୍କ କହି ଘର ଭିତରକୁ ଗଲ । ଯାହା ଦେଖିଲ ସେଥିରେ ମୋର ପିଲେହି ପାଣି । ମାତ୍ର ଦୁଇ ବଖରା ଘର । ଗୋଟିଏ କରେ ରନ୍ଧା ବଢ଼ା ହୁଏ ଓ ଆଉ ଗୋଟିକରେ ମସ୍ତବଡ଼ ଖଟ । ସବୁ ଲଙ୍ଗଲ ସ୍ତ୍ରୀ ଲୋକଙ୍କ ଫଟୋ ଝୁଲୁଚି ଏବଂ ମଦ ବୋତଲ ରଖା ହୋଇଚି । ମୋତେ ଆଉ ଅଛପା ରହିଲ ନାହିଁ, ଏଟା କି ଘର । ମୋତେ ଓଡ଼ିଆ ଖୋକା ବୁଦ୍ଧି କାହିଁକି ହେଲା ଭାବି ମନେ ମନେ ଅନୁତାପ କଲି । ତେବେ ଅନୁତାପ କରିବା କଥା ଲାଭ ନାହିଁ ତେଣୁ ମୁ କ୍ଷିର ଉପାୟ ଖୋଜି ବସିଲି । ଯେତେବେଳକୁ ସେ ସ୍ତ୍ରୀ ଲୋକ କବାଟ ବନ୍ଦ କରି

ମୋତେ ଜବରଦସ୍ତି ଟାଣି ଖଟରେ ବସାଇ ଆରମ୍ଭ କଲା ତାର ଇଂରାଜୀରେ ।

"ଇୟୁଇଜଆନ୍ ଭେରି ଗୁଡ୍ ଅର୍‌ମୀ । ପ୍ଲିଜ୍ ମି ଗିଭ୍ ସିଗାରେଟ୍ । ଓ ଥସ୍ଥିତ—ଆଦମନ । ଆଇ ଉମେନ୍ ଇସ୍କୋର ।

ମହା ମୁସ୍କିଲରେ ପଡ଼ିଲି, ଜାଣିଲି ଏ ଗୋଟିଏ ବେଶ୍ୟାଳୟ ସାହସ ବାନ୍ଧି କହିଲି ଓଃ ଭେରି ଗୁଡ୍ ଫ୍ରେଣ୍ଡ । ଆଇ ନ ୱ ଗୋ ବ୍ରଙ୍ଗ ଷ୍ଟ୍ରୁଟ—ଏତକ କହିଲି ବେଳକୁ ସେ କହୁଥାଏ, ଭେରି ଗୁଡ୍ ଭେରି ଗୁଡ୍ କହୁ ସେତେବେଳେ ଉଠେ ମୋ ହାତକୁ ଧରି, ଦେଲି ଏମିତ ଝିଙ୍କି ଯେ ମୁଁ ଡରିଗଲି ।

ମହାବିଲଗଣ, ଜଣ କରିବ । ହାତରେ ମୋଟେ ୫୦ ଡଲର ଥାଏ, କପର କ୍ୟାମ୍ପକୁ ଫିରିବ ଭାବୁଥାଏ । ତେବେ ଉପାୟ ନଦେଖି ତାକୁ ୩୦ ଡଲର ଦେଲି ଏବଂ କହିଲି "ନାଓ ଇୟୁ କଲ୍ ଥାଇ ବ୍ରଷ୍ଟୁଟ ବ୍ରଙ୍ଗ୍ ଆନ କମ୍" ପୁଣି ଗୁଡ୍ ଗୁଡ୍ ହୋଇ ବୁଢ଼ୀ ଏ କହିଲା ଏବଂ ଜବର ଦସ୍ତି ପକେଟରୁ ୨୦ଟି ଡଲାର ନେଇଗଲା ଏବଂ ଗାଲକୁ ଗୋଟାଏ ଛୁଦା ମାରି ହସିଦେଲା ଏବଂ କହିଲା 'ସିଓର କମ୍ ବ୍ରଙ୍ଗ ଷ୍ଟ୍ରୁଟ-ଇୟୁନର ଗୁଡ୍" ମୁଁ ସେ ମହାଶା ମଣିଷ କ ଜବରଦସ୍ତି ହସି ହସି ଗୁଡ୍ ନାଇଟ କହି ଦଉଡ଼ ଦଉଡ଼ ସିନେମା ହାଉସ ପାଖକୁ ଫେରିଆସିଲି ।

ସେ ସମୟରେ ଗୋଟିଏ ମିଲଟାରୀ ପୋଲିସର ମୋଟର ସାଇକଲକୁ ଅଟକାଇ ରାସ୍ତା ଭୁଲି ଯାଉଛି କହିବାରୁ ସେ ମୋତେ ମୋର କ୍ୟାମ୍ପ ପାଖରେ ଆଣି ଛାଡ଼ିଦେଇଗଲା । ସେଦିନ ବଞ୍ଚିଗଲି । ତହିଁ ଆରଦିନ ସେ ରେଷ୍ଟୋରାକୁ ଗଲି । ସେ ପୁଣି କହିଲା—

"ମିଷ୍ଟର ସିଙ୍ଗ୍ ଭେରି ସରି । ହ୍ୱେୟାର ୟୁ ଗୋ ଭେରି ଗୁଡ୍ ଏନ୍‌ଯଏମେଣ୍ଟ ଲାଷ୍ଟ ନାଇଟ ! **Mr Sing, Very sorry where you go very good enjoyment last night.**"

ମନେ ମନେ ହସିଲି ଏବଂ ଭାବିଲି ଓଡ଼ିଆରେ—ରହ ଦେଖା ହୋଇଛି ପାନେ ଦେବ, ବୁଦ୍ଧିରୁ ମିସ୍ତର ସିଙ୍ଗଙ୍କୁ । ଏ ଜାତିର ବନ୍ଧୁତାର ଏ ଗୋଟିଏ ନମୁନା । ହୃଦ, ଚମ୍ ଭାଇ ଭାଇ କହି ବନ୍ଧୁକୁ ଖାପ୍‌ଗୃହରେ ପକାଇ ପାରନ୍ତି । ଏମାନଙ୍କର ଭାରତ ଉପରେ ନଗ୍ନ ଆକ୍ରମଣ କରିବାଟା ବଡ଼ କଥା ନୁହେଁ । ଏମାନଙ୍କୁ ଭାରତୀୟ ଜବାନମାନେ ଉପଯୁକ୍ତ ଶିକ୍ଷା ଦେବେ । ଏମାନେ ଥିଲେ ଅଫିମଖୋର, ଜୁଆଡ଼ି ଓ କୁବୃତ୍ତି ଏମାନଙ୍କର ପେଷା । ଏମାନଙ୍କର ଶିକ୍ଷା ସଂସ୍କୃତି ଯାହା ଥାଉନା କାହିଁକି ଏମାନେ କିପରି "କୂପ ମଣ୍ଡୂକ" ପରି ବ୍ୟବହାର କରିଥାନ୍ତି ଏବଂ ଏମାନଙ୍କର ଶାସକ ତଥା ସମ୍ରାଟମାନେ କିପରି ତିମିର ଭିତରେ ରହି ଅତ୍ୟାଚାର କରିଥିଲେ ତାହା ବହୁ ଐତିହାସିକମାନେ ଲେଖି ଯାଇ ଅଛନ୍ତି । ତାହାକୁ ଭିତ୍ତି କରି କିପରି ଲକ୍ଷ ଲକ୍ଷ ଲୋକଙ୍କ ସମାଧି ସେମାନେ କରିଛନ୍ତି ତାହା ତାଙ୍କର ଶିକ୍ଷିତ ଭାଇମାନଙ୍କର ମୁହଁରୁ ନିଜେ ଶୁଣିବ—କହିବ କେବେ ।

ଯୁଦ୍ଧ ପରେ କ୍ଷତ ବିକ୍ଷତ ସିଙ୍ଗାପୁର କିନ୍ତୁ ତାର ମଉଜ ମଜଲିସ୍ ଭୁଲି ନ ଥାଏ । କାବାରେ-ହଲ, କ୍ଲବ୍‌ଭାଲ ସବୁ ମୁଣ୍ଡଟେକ ଥାନ୍ତି । ସିଙ୍ଗାପୁର କାହିଁକି ମାଲୟର ପେନାଙ୍ଗ, କୁଆଲା, ଲମ୍ପୁର ପ୍ରତ୍ୟେକ ଯାଗାରେ ଯେପରି ଭାରତୀୟ ସଂସ୍କୃତି ପୂରି ରହିଛି । ମୋତେ ଜଣାଗଲା ମାଲୟୀ ପରିବାର ସଙ୍ଗରେ ମୁଁ ଘନିଷ୍ଠ ଭାବରେ ମିଶିଚି, ଏପରିକି ସେମାନଙ୍କର 'ଲେରଙ୍ଗ' ନୃତ୍ୟରେ ମୁଁ ଭାଗ ନେଇଚି ।

ସେମାନେ ସବୁ ମୁସଲମାନ କିନ୍ତୁ ପରଦାପ୍ରଥା ନାହିଁ ଏବଂ ସେମାନଙ୍କର ସାମାଜିକ ଜୀବନ ତଥା ଆଦାନ ପ୍ରଦାନରେ ଯେପରି ହିନ୍ଦୁ ସଂସ୍କୃତି ପୂରି ରହିଛି । ସେଇଠି ମୋର ଜଣେ ଇଂରେଜ ବନ୍ଧୁ କହିଲେ । ସେ ବିଚରା ଶ୍ୟାମରୁ ଫେରିଥାଏ ଏବଂ ତାର ଅନୁଭୂତ କଥା କହୁ କହୁ ଶ୍ୟାମର Death Rail way କଥା କହିଲେ । ଜାପାନୀମାନେ ଶ୍ୟାମରୁ ଜାପାନକୁ ଗୋଟିଏ ରେଲ ଲାଇନ ନେବାର ପ୍ରସ୍ତାବ କରି ଗୋଟିଏ ଅସମ୍ଭବ ଜିନିଷରେ ହାତ ଦେଇଥିଲେ ଏବଂ

ସେହି ରେଲ ଲାଇନ୍ ତିଆରି ହେଉଥିଲା ଯୁଦ୍ଧବନ୍ଦୀ ମାନଙ୍କ ସାହାଯ୍ୟରେ । ବନ୍ଦୀମାନଙ୍କୁ ଖାଲି ଶୁଖା ମାଛ ଏବଂ ଚାଉଳ ଗଣ୍ଡେ ଯୋଗାଇ ଦିଆ ହେଉଥିଲା—କେଉଁଠି ବି ଖାଲି ଗଣ୍ଡେ ଚାଉଳ ଦିଆ ହେଉଥିଲା । ବିଶେଷଭାବେ ଇଂରାଜୀ, ଅଷ୍ଟ୍ରେଲିଆନ୍ ଆମେରିକାନ୍ ମାନେ ଚାଉଳକୁ ଭାତକରି କେଉଁପରିଭାବେ ଖାଇବେ ତାହା ସହଜରେ ଅନୁମେୟ । ସେଥିରେ ପୁଣି କାମ କରି କରି କ୍ଳାନ୍ତ ହୋଇ ବସିଗଲେ, ବସେ କୋରଡ଼ା । ଟିକିଏ ଜ୍ୱର କମ୍ପ ମୁଣ୍ଡ ବ୍ୟଥା ହେଲେ ଘୋଷରା ହୋଇ କାମକୁ ନିଆ ହୁଏ ।

ଏହି Death Railway କଥା ମୁଁ ପରେ ବିଶେଷଭାବେ କହିବି । ସେ ବନ୍ଧୁ ତାଙ୍କ ପିଠିର ମାଡ଼ ଚିହ୍ନ ସବୁ ଦେଖାଉଥାନ୍ତି ଏବଂ ତାଙ୍କର କରୁଣ କାହାଣୀ ଯେ ଶୁଣିବ, ତାର ମନରେ ଦୟା ଆସିବ । ସିଙ୍ଗାପୁର ସ୍ତ୍ରୀ ବହୁଳ ରାଜ୍ୟ । ପ୍ରାୟ ସବୁ ଯାଗାରେ ସ୍ତ୍ରୀମାନଙ୍କର କାରବାର । କଲିକତା, ବମ୍ବେରେ ଟ୍ରାମ ଚାଲିଲା ପରି ସେଠାରେ Omni Bus (ଓମ୍ନି ବସ୍) ଚାଲେ ।

ସିଙ୍ଗାପୁରରେ ଭାରତୀୟମାନଙ୍କୁ ଦୁଇ ଭାଗରେ ଡାକୁଥାନ୍ତି ଯଥା—ମାଡ୍ରାସି ଓ ବଙ୍ଗାଳୀ । ମୋର ଜଣେ ଇଯୁରେସିଆନ ବନ୍ଧୁ ମୋତେ ଦୁଇଜଣ ବଙ୍ଗାଳୀ ବନ୍ଧୁଙ୍କ ଘରକୁ ଡାକି ନେଇଥିଲେ । ସେଥିରୁ ଜଣେ ହେଲେ ଶିଖ୍ ଓ ଆଉଜଣେ ସିନ୍ଧି । ମାନେ ସବୁ ଉତ୍ତର ଭାରତୀୟଙ୍କୁ ବଙ୍ଗାଳୀ ବୋଲି କହୁଥାନ୍ତି ।

ସିଙ୍ଗାପୁରରେ ଛଅ ମାସ ଖୁବ୍ ଭଲରେ କଟିଗଲା । ସେଇଠି ନେତାଜୀଙ୍କର କାର୍ଯ୍ୟକଳାପ ଏବଂ କାଗଜପତ୍ର, ଫଟୋ ଓ ଦଲିଲ୍ ମୋତେ ମିଳିଲା । ସେଇଥିରୁ ଏବଂ ସ୍ଥାନୀୟ ଲୋକଙ୍କ ଠାରୁ ତାଙ୍କର ଅନୁଭୂତି ଶୁଣିଲି ।

ସିଙ୍ଗାପୁରରେ ଥିବା ସମୟରେ ଭାରତ ସ୍ୱାଧୀନ ହେଲା । ଲର୍ଡ ମାଉଣ୍ଟ ବାଟେନଙ୍କ ସଙ୍ଗେ ପଣ୍ଡିତ ନେହେରୁ ସିଙ୍ଗାପୁର ପରିଦର୍ଶନେ କରି ଗଲେ । ଆମ ମିଲଟାରୀ ବାଲଙ୍କୁ ବିଶେଷ ସୁଯୋଗ ଦିଆଗଲା ତାଙ୍କ ସଙ୍ଗେ ଦେଖା କରିବାକୁ । ସେ ଦିନର ସିଙ୍ଗାପୁରର ସାଜସଜ୍ଜା ଓ ଉନ୍ମାଦନା ମୁଁ କୌଣସିଠାରେ ଦେଖିନାହିଁ କି ସେପରି ଲୋକ ସମାଗମ କୌଣସିଠାରେ ଦେଖିନାହିଁ (କେବଳ ଗାନ୍ଧିଜୀଙ୍କ ଶବ ଦାହର ଲୋକ-ସମାଗମ ତୁଳନାରେ ଯାଇପାରେ) । ପ୍ରତ୍ୟେକ ଦେଶ ତାଙ୍କର ପତାକା ଧରି ଭାରତର ଜାତୀୟ ପତାକାକୁ ସମ୍ମାନ ଦେଖାଇ ଥିଲେ ।

ନେହେରୁଜୀ ଆଡ୍ଲେଲ୍ଫି ହୋଟେଲରେ ରହୁଥିଲେ । ସେଇଠି ସେ ବକ୍ତୃତାରେ କହୁଥିଲେ—

"ହେ ମୋର ହିନ୍ଦୁସ୍ଥାନର ଭାଇ ଓ ଭଉଣୀମାନେ ଆପଣମାନେ ଡିସିପ୍ଲିନ ଶିଖନ୍ତୁ, କାମ କରନ୍ତୁ ତାହାହେଲେ ଭାରତର ସ୍ୱାଧୀନତା ରକ୍ଷା ହୋଇ ପାରିବ । ବେଶି ଗଳ୍ପ ଓ ପାଟିତୁଣ୍ଡ କରନ୍ତୁ ନାହିଁ ।"

ଆଜ ଅଠର ବର୍ଷ ପରେ ବି ଆମେ ଖାଲି ସ୍ୱାଧୀନତା ନାମରେ ଯଥେଚ୍ଛାଚାରିତା ହୋଇ ଗଢ଼ କରୁଛୁ ।

ସିଙ୍ଗାପୁରରୁ ଛୁଟି ନେଇ ମୁଁ ଆସିଲି ଭାରତକୁ । ଭାରତ ଫେରିବାଙ୍କ ପୁରରେ ଇଣ୍ଡନ୍ କରି ପୁଣି ଚାଲିଲି ରେଙ୍ଗୁନ । ରେଙ୍ଗୁନ ରାସ୍ତାରେ କଲିକତାଠାରେ ଓହ୍ଲାଇଲା ବେଳେ ଷ୍ଟେସନ ଜନଶୂନ୍ୟ । ହିନ୍ଦୁ-ମୁସଲମାନ ଦଙ୍ଗା ଚାଲିଥାଏ । ଷ୍ଟେଟସମ୍ୟାନର ଗୋଟିଏ ଫାଳ କାଗଜ

ଦୁଇଟଙ୍କା ଦେଇ କାଣି ଖବର ପଠାଇଲା। ରେଙ୍ଗୁନ ଯିବା ରାସ୍ତାରେ ବାଧ୍ୟ ହୋଇ କଲିକତାରେ ପନ୍ଦର ଦିନ ରହିଲୁ। ତା ପୁଣି ଆମକୁ ରହିବାକୁ ଦେଲେ ଚିଡ଼ିଆଖାନା ଭିତରେ। ଯୁଦ୍ଧ ସମୟରେ ଚିଡ଼ିଆଖାନା ଖାଲି ପଡ଼ିଥାଏ। ଚିଡ଼ିଆଖାନାରେ ରହି ଦଶଦିନ ଝଣ୍ଡେ କଲିକତାର ଘରେ ଘରେ ଖାଦ୍ୟ ବାଣ୍ଟିଲୁ। ଆଗରେ ଗୋଟିଏ ଫୌଜ ବୁଢ଼ା ଜଣେ ଓ ପଛରେ ଗୋଟିଏ। ଯେଉଁ ଗଳିକୁ ଯାଉ ଥାଉଁ ଆଗ ଗୁଡ଼ାଏ ଗୁଳି ଉପରକୁ ମାରୁଥାଏ ତା ପରେ ଆମେ ଘର ଘର ବୁଲି ରାସନ ଦେଉ।

ରେଙ୍ଗୁନ ଯାଇ କିଛି ଦିନ ରହିଲାପରେ, ଯୁଦ୍ଧ ପରେ ଯେଉଁମାନେ ଇଚ୍ଛା କରିବେ ଯାଇ ପାରିବେ କହିବାରୁ ମୁଁ ଚାଲି ଆସିଲି।

